# ପାଠଚକ୍ର ପ୍ରବନ୍ଧାବଳୀ



ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବାଣୀବିହାର, ୧୯୭୯-୮୦

# ପାଠଚକ୍ର ପ୍ରବନ୍ଧାବଳୀ



ମୁଖ୍ୟ ସଂପାଦକ :

ପ୍ରଫେସର ବଂଶୀଧର ମହାନ୍ତି



ସଂପାଦକ ମଣ୍ଡଳୀ :

ଡକ୍ଟର କୃଷ୍ଣ ଚରଣ ସାହୁ

ଡକ୍ଟର ବାସୁଦେବ ସାହୁ

ଡକ୍ଟର ନିତ୍ୟାନନ୍ଦ ଶତପଥୀ

ଡକ୍ଟର ଆଶୁତୋଷ ପଟ୍ଟନାୟକ

ଡକ୍ଟର ବୈଷ୍ଣବ ଚରଣ ସାମଲ



ପରିଚାଳନା ସଂପାଦକ :

ଅଜୟ କୁମାର ମିଶ୍ର

# ପାଠଚକ୍ର ପ୍ରବନ୍ଧାବଳୀ

ପ୍ରକାଶକ : ସ୍ନାତକୋତ୍ତର ଓଡ଼ିଆ ବିଭାଗ, ବାଣୀବିହାର

୪ର୍ଥ ସଂଖ୍ୟା ୧୯୮୦

ମୁଦ୍ରଣ : ବର୍ଣ୍ଣାଳୀ,

ସି-୨୦, ମାର୍କେଟ ବିଲ୍ଡିଂ, ଭୁବନେଶ୍ୱର ।

ପ୍ରଚ୍ଛଦପଟ୍ଟ : ଶ୍ରୀ ପ୍ରସନ୍ନ ବରାଳ (ଓଡ଼ିଆ ବିଭାଗ)

**PATHACHARA PRABANDHABALI**

•

Publisher : P. G. DEPARTMENT OF ORIYA
Vani Vihar.

Vol. 4, 1980

Printer : BARNALI,
C-20, Market Building, Bhubaneswar.

Cover Design : PRASANNA BARAL
(Oriya Dept.)

# ଉପୋଦ୍‌ଘାତ

ଉତ୍କଳ ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଓଡ଼ିଆ ବିଭାଗର ସୃଷ୍ଟି (୧୯୭୧) ଏକ ଐତିହାସିକ ପଦକ୍ଷେପ । ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ପାଇଁ ଯେପରି ଉତ୍କଳ ବିଶ୍ୱବିଦ୍ୟାଳୟ ବହୁ ବୈପ୍ଳବିକ ଭୂମିକା ନେଇଅଛି ସେହିପରି ସ୍ନାତକୋତ୍ତର ଓଡ଼ିଆ ବିଭାଗ ମଧ୍ୟ ଭାଷା ଓ ସାହିତ୍ୟର ଗୁଣାତ୍ମକ ବିକାଶ ପାଇଁ ବହୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଅଛି । ଏହି ସ୍ନାତକୋତ୍ତର ଓଡ଼ିଆ ବିଭାଗର କେବଳ ଅଧ୍ୟାପନା ମୁଖ୍ୟ ଅଭିମୁଖ୍ୟ ନୁହେଁ । ତତ୍‌ସହିତ ଏହାର ଅନ୍ୟାନ୍ୟ ଅଭିମୁଖ୍ୟ ହେଲା ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧୀୟ ନାନା ତଥ୍ୟ ସଂଗ୍ରହ ଓ ଗବେଷଣା, ଓଡ଼ିଆ ଭାଷା ଓ ସାହିତ୍ୟର ପୂର୍ଣ୍ଣାଙ୍ଗ ଇତିହାସ ସଂକଳନ, ବିଭିନ୍ନ ଅପ୍ରକାଶିତ ପ୍ରାଚୀନ ଗ୍ରନ୍ଥର ସଂପାଦନା ଓ ପ୍ରକାଶନ, ତୁଳନାତ୍ମକ ବ୍ୟାକରଣ ଓ ଅଭିଧାନ ପ୍ରଣୟନ, ଓଡ଼ିଆ ପୁସ୍ତକମାନଙ୍କର ସୂଚୀଗ୍ରନ୍ଥ ସଂପାଦନ ଆଦି ନାନା ବିଷୟ । ଓଡ଼ିଆ ଶିକ୍ଷା ସହିତ ଗବେଷଣା ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରାଯାଇ ଏହି ଭାଷା ଓ ସାହିତ୍ୟର ଗୁଣାତ୍ମକମାନ ବୃଦ୍ଧି କରିବାକୁ ନିରବଚ୍ଛିନ୍ନ ଉଦ୍ୟମ ହୋଇ ଆସୁଅଛି ।

ଓଡ଼ିଆ ବିଭାଗର ଅନ୍ୟ ଏକ ଅଭିମୁଖ୍ୟ ହେଲା 'ପାଠଚକ୍ର' । ଏହି ପାଠଚକ୍ର ଏକ ଗତାନୁଗତିକ ଆଲୋଚନା ଚକ୍ର ନୁହେଁ ମାତ୍ର ଏହା ନୂତନ ଗବେଷଣା ଓ ସାହିତ୍ୟର ଗୁଣାତ୍ମକ ବିକାଶ ପାଇଁ ବାସ୍ତବିକ ଏକ ଅଭିନବ ପ୍ରେରଣା । ଅଧ୍ୟାପକ ଓ ଛାତ୍ର ଛାତ୍ରୀମାନଙ୍କ ମଧ୍ୟରେ ପଠନ ସ୍ପୃହା ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଗବେଷଣା ମନୋବୃତ୍ତିର ବିକାଶ କରିବା ଏହାର ଅନ୍ୟତମ ଲକ୍ଷ୍ୟ । ପ୍ରତ୍ୟେକ ସପ୍ତାହର ଶେଷ ଦିବସରେ ଏହି ପାଠଚକ୍ର ଅନୁଷ୍ଠିତ ହୁଏ ଏବଂ ସେଥିରେ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନେ ପ୍ରବନ୍ଧ ପାଠ କରନ୍ତି ଏବଂ ତତ୍‌ସଂକ୍ରାନ୍ତୀୟ ବିଭିନ୍ନ ଆଲୋଚନାରେ ଭାଗ ନିଅନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ଆର୍ଥିକ ଅନୁଦାନ ଫଳରେ ଅଧ୍ୟାପକ ଓ ଛାତ୍ରଛାତ୍ରୀମାନଙ୍କର ସାହିତ୍ୟିକ ପ୍ରବନ୍ଧଗୁଡ଼ିକ "ପାଠଚକ୍ର ପ୍ରବନ୍ଧାବଳୀ"ର ୪ର୍ଥ ଖଣ୍ଡରେ ପ୍ରକାଶିତ ହେଉଅଛି ।

ପାଠଚକ୍ର ପ୍ରବନ୍ଧାବଳୀର ୪ର୍ଥ ଖଣ୍ଡ ପ୍ରକାଶ ପାଇବା ଅବକାଶରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ମହେନ୍ଦ୍ର କୁମାର ରାଉତ ତାଙ୍କର ଶୁଭେଚ୍ଛା ପ୍ରଦାନ କରିଥିବାରୁ ମୁଁ ତାଙ୍କୁ କୃତଜ୍ଞତା ଜ୍ଞାପନ କରୁଅଛି । ପ୍ରବନ୍ଧଗୁଡ଼ିକର ସଂକଳନ ନିମିତ୍ତ ମୋତେ ବିଭାଗୀୟ ଅଧ୍ୟାପକମାନେ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଅଛି ।

ବଂଶୀଧର ମହାନ୍ତି

# ସୂଚୀପତ୍ର




# ଶୁଭେଚ୍ଛା



ଆମ-କୁଳପତି

ଓଡ଼ିଆ ବିଭାଗ ପାଠଚକ୍ର ପ୍ରବନ୍ଧାବଳୀର ଚତୁର୍ଥ ସଂଖ୍ୟା ଆଜି ପ୍ରକାଶ କରୁଥିବା ଅବକାଶରେ ମୁଁ ମୋର ଆନ୍ତରିକ ଶୁଭେଚ୍ଛା ଜ୍ଞାପନ କରୁଅଛି । ଏ ସଂଖ୍ୟାରେ ପ୍ରକାଶିତ ଉଚ୍ଚକୋଟୀର ଗବେଷଣାମୂଳକ ପ୍ରବନ୍ଧ ଗୁଡ଼ିକ ଯେ ଓଡ଼ିଆ ସମାଲୋଚନା ସାହିତ୍ୟକୁ ସମୃଦ୍ଧ ଓ ବଳିଷ୍ଠ କରିବ ଏଥିରେ ସଂଦେହ ନାହିଁ । ତରୁଣ ବିଦ୍ୟାର୍ଥୀମାନଙ୍କର ସୁପ୍ତ ସାହିତ୍ୟିକ ପ୍ରତିଭା ବିକଶିତ ହେବାରେ ଏପରି ଆଲୋଚନାତ୍ମକ ଏବଂ ଅନୁଶୀଳନାତ୍ମକ ସଂକଳନ ଯେ ନିତାନ୍ତ ସମୟୋପଯୋଗୀ ଏବଂ ଆବଶ୍ୟକ, ଏଥିରେ ସଂଦେହନାହିଁ ।

ମୋର ବିଶ୍ୱାସ, ଏହାର ସଂକଳନପାଇଁ ଆର୍ଥିକ ସାହାଯ୍ୟର ଅଭାବ ପଡ଼ିବ ନାହିଁ ।

ମହେନ୍ଦ୍ର କୁମାର ରାଉତ
ତା ୧୭ । ୯ । ୮୦
କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

# ଓଡ଼ିଆ ଚଉତିଶା ସାହିତ୍ୟ ଓ ବ୍ରହ୍ମଜ୍ଞାନ

● ପ୍ରଫେସର ଡକ୍‌ଟର ବଂଶୀଧର ମହାନ୍ତି

ପ୍ରାଚୀନ ଓଡ଼ିଆ ସାହିତ୍ୟରେ 'ବ୍ରହ୍ମଜ୍ଞାନ' ଚର୍ଚ୍ଚା ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଏହି ସାହିତ୍ୟ ଏତେ ବିରାଟ ଓ ବିସ୍ତୃତ ଯେ ସେ ସବୁର ଏ କ୍ଷୁଦ୍ର ପରିସରରେ ମୂଲ୍ୟାୟନ କରିବା ବିଶେଷ କଷ୍ଟକର । ବ୍ରହ୍ମଜ୍ଞାନ ମୂଳକ ଗ୍ରନ୍ଥ ବ୍ୟତୀତ ବହୁ କ୍ଷୁଦ୍ର ରଚନାରେ ବ୍ରହ୍ମଜ୍ଞାନ ସୁନ୍ଦର ଭାବରେ ରୂପାୟିତ ହୋଇଛି । ଆଲୋଚ୍ୟ ପ୍ରବନ୍ଧରେ କେତେକ ବିଶିଷ୍ଟ ଚଉତିଶାର ଆଲୋଚନା ହୋଇଛି ମାତ୍ର ।

ଉଦ୍ଧବ ଚଉତିଶା ଏକ ଜ୍ଞାନ ମୂଳକ ଚଉତିଶା ଯେଉଁଥିରେ ଉଦ୍ଧବ ଓ ଗୋପୀ ମାନଙ୍କ ମଧ୍ୟରେ ଜ୍ଞାନମାର୍ଗର ବିଚାର କରାଯାଇଛି । ଶ୍ରୀକୃଷ୍ଣଙ୍କର ମଥୁରାଗମନ ଓ ଅନ୍ୟାନ୍ୟ ବର୍ଣ୍ଣନା ଭିତରେ ଯୋଗମାର୍ଗର ଯେଉଁ ସୁନ୍ଦର ବର୍ଣ୍ଣନା ଦିଆଯାଇଛି ତାହା ଅତୀବ ମନୋରମ—

ନଦୀ ଯେବେ ଆସି ସିନ୍ଧୁଜଳେ ମିଶି ନିଜ ଗୁଣତାର ଗୁଡ଼ିଲା<br>
ନୀରଆଶ୍ରେ ମୀନ ଅଚରେ ଲୁଚିଲା ବକ ଯେନ୍ତେ ତାକୁ ଉଡ଼ିଲା । ଉଦ୍ଧବ ।<br>
ନିଶାରେ ସୂର୍ଯ୍ୟ ପ୍ରକାଶିଲା ।<br>
ନିଶା ନଦେଖି ପୂର୍ଣ୍ଣ କଳା ଚନ୍ଦ୍ରମା ରାହୁକୁ ଯାଇଣ ଗ୍ରାସିଲା । ୧୦ ।<br>
ଦେଉଳ ଭିତରେ ଦେବତା ନଥିଲେ ଦେଉଳକି ଶୋଭା ପାଇବ<br>
ଦେଉଳ ଗୁଡ଼ି ଦେବତା ଯିବବୋଲି ଏହାକଲା କିଏଁ ଦାଇବ । ଉଦ୍ଧବ ।<br>
ଦେଉଳ ଗଢ଼ିଲା କାହିଁକି ।<br>
ଦେଉଳ ଭିତରେ ଦେବତା ନଥିଲେ ଆଉ କିବା ଶୋଭା ପାଇବ ।

ପୁଣି ତ୍ରିବେଣୀ ଉପରେ ଗଙ୍ଗା ଓ ଯମୁନା ନଦୀ ପ୍ରଭୃତି ରୂପକରେ କୃଷ୍ଣ ଲୀଳା ମାଧ୍ୟମରେ ବର୍ଣ୍ଣନା କରାଯାଇଛି । କୃଷ୍ଣ ଲୀଳା ଯଥାର୍ଥରେ କଣ ଯୋଗ ଶାସ୍ତ୍ରର ବର୍ଣ୍ଣନା କି ? ଏହି ପରଂପରାର ଧାରା ଓଡ଼ିଆ ଜ୍ଞାନ ମାର୍ଗ ସାହିତ୍ୟରେ ରହିଛି ଯେପରି :—

'ଫଲଲୋଭେ ଆମ୍ଭେ ଫୁଲ ତୋଳିଧାଇ ଫଳ ବାସନାରେ ପଡ଼ିଲୁ
ଫୁଲ ନଦେଖି ଫଳ ଗ୍ରୁଡ଼ି ଭ୍ରମର ବାସନାରେ ବନ୍ଦୀ ହୋଇଲୁ । ଉଦ୍ଧବ ।
ଫଳ ପାଚି ଫୁଲ ଝଡ଼ିଲା ।
ଫୁଲ ନନେଇ ଫଳ ଗ୍ରୁଡ଼ି ଭ୍ରମର ବାସନାକୁ ଘେନ ଝଡ଼ିଲା । ୨୨ ।
ବଟପୁଟେ ବସି ଧ୍ୱନିକରେ ବଂଶୀ ଜଗିଥାଇ ଗୋପ ତରୁଣୀ
ବହୁଥାଇ ନଦୀ ଯମୁନା କାଳିନ୍ଦୀ ସଙ୍ଗତେ ମିଶିଣ ତ୍ରିବେଣୀ । ଉଦ୍ଧବ ।
ବେଢି ଥାଉ ଚନ୍ଦ୍ରପାଶରେ ।
ବୁଡ଼ାଇ ଆମ୍ଭକୁ ଗ୍ରୁଡ଼ିଗଲେ ଏବେ କଣ ହୋଇଲା ଦବସରେ ।

ରଚନାଟିର ଭାଷାରୁ ଜଣାଯାଏ ଯେ ଏହି ଚଉତିଶାଟି ଖ୍ରୀ ୧୮ଶ ଶତାବ୍ଦୀରୁ ରଚନା—ଏହାର କବି ହେଉଛନ୍ତି ଉଦ୍ଧବ ଦାସ । ଓଡ଼ିଆରେ ଅନ୍ୟାନ୍ୟ ଜ୍ଞାନ ମୂଳକ ଚଉତିଶା ମଧ୍ୟରେ ଜଗନ୍ନାଥ ଦାସଙ୍କର ଅର୍ଥ କୋଇଲି—ଦ୍ୱାରକା ଦାସଙ୍କର 'ବାଲ-ବୋଲି ଚଉତିଶା' (୨) 'ମରୁଆ ଫୁଲ ଚଉତିଶା' ପ୍ରଧାନ । ଦ୍ୱାରକା ଦାସଙ୍କର ଅନେକ ଚଉତିଶା ରହିଛି ଯେଉଁଥିରେ କଠିନ ବ୍ରହ୍ମଜ୍ଞାନକୁ ଅତି ସରଳ ଭାଷାରେ ବର୍ଣ୍ଣନା କରାଯାଇଛି । ଏ ଗୁଡ଼ିକ ଓଡ଼ିଆ ଗ୍ରାମ୍ୟଗୀତ ପରି ଅତି ସରଳ ଓ ଲୋକ ମୁଖରେ ଅଦ୍ୟାପି ଗୀତ ହେଉଛି—ଚଉତିଶାର କେତେକ ପଦ ହେଉଛି ।

"କହୁ ଅଛି ମନଶୁଣ । ଷୀଣ ନାଳେ ପଶି କର ଦର୍ଶନଲୋ । ମରୁଆ ଫୁଲ
ଗୁପତ ଗଂଗାରେ ସ୍ନାନ ଲୋ । ମରୁଆ ଫୁଲ ।
ନିରଞ୍ଜନ ନିଜ ଦେହି । ଟେରା ବାହାରେ କି ଦେବତା ରହିଲେ ।—
ଝଡ଼ି ପଡ଼ିବ ତୋ ଦେହିଲେ । ମରୁଆ ଫୁଲ

---

(୧) ପ୍ରେମଭକ୍ତି ମୂଳକ ଚଉତିଶା 'ଉଦ୍ଧବ ଚଉତିଶା'—ବନାଇ ଦାସ ବା ଶ୍ରୀନନ୍ଦନ।

(୨) 'ନାମ ଭଜନ କର ନିତି । କନେଇ ପାରେ ଜନ୍ମପତି । ଠାବେରୁ ଦେଖ ଠୁଳେ ଅଛି । ଠାକୁର ବ୍ରହ୍ମାଣ୍ଡେ ସ୍ଥିରଛି । ଅନନ୍ତ କୋଟି ବ୍ରହ୍ମାଣ୍ଡରେ । ଅରୂପାନନ୍ଦ ସେ ବହିରେ' —ଦ୍ୱାରକା ଦାସ ।

ଉମ୍ପଫ୍ଟି ଛୁଆ ଗଲ । ତାଙ୍କ୍ରଣୀ ଏକାନ୍ତେ ପଡ଼ିରହିଲଲେ—
ଅଣାକାରେ ମିଶିଗଲ ।—
ମଲ ମଲ ବୋଲୁ ଅଛୁ । ଜଗତକୁ ମଲ ଯିବ ଯାଇଛୁ ଲେ—
ରୁମଡାର ନୃଚ୍ଚଲୁଛୁଲେ—
ଲେଭମଲ ମାସ୍ଥା ମଲ । ବହିନ୍ତା ପୁରୁଷ ଶୂନେ୍ୟ ରହିଲ ଲେ—
ଶୂନ୍ୟରେଶୂନ୍ୟ ମିଶିଲ୍ଲେ ।—
ଶୂନେ୍ୟ ଶୂନେ୍ୟ କର ବାସ । ଶୂନ୍ୟରେ ବଳସେ ଶୂନ୍ୟ ପୁରୁଷ ଲେ—
ଶୂନ୍ୟରେ ଅବନା ହଂସ ଲେ । ମରୁଆ ଫୁଲ ।

ଜନୈକ ଜଗନ୍ନାଥ ରଚିତ । 'କମଲ କେଶର ଚଉତିଶା'ରେ ମଧ୍ୟ ସେହି ଜ୍ଞାନମାର୍ଗର, ଶୂନ୍ୟବାଦର ପରିକଳ୍ପନା କରାଯାଇଛି 'ସହସ୍ର ଦଳ କମଳ' ଭିତରେ ଏହି ଶୂନ୍ୟ ଅଲେଖ ଓ ବୌଦ୍ଧ ଶୂନ୍ୟ ଭାବରେ କୁହାଯାଇଛି—

'କମଲ କେଶରରେ କମଲାବର । ଖସି ପଡ଼ୁଛି ଗଂଗା ତ୍ରିବେଣୀଧାର ହୋ
ତାଲ ସୁମନ । ଘଟଣ ଜ୍ୟୋତିପରେ ଅଲେଖ ବ୍ରହ୍ମହୋ ।
ବସି ସରକମଲେ ବଉଦମିଶା । ସୁଆଙ୍ଗଘରେ ଦେଖ ପରମହଂସା ହୋ
ଛନ୍ଦ ତ୍ରିପାଦ । ଗ୍ରୁର ଅଧମ ଜଗା ନପାଏ ଭେଦ ହୋ । ୮ ।'

'ବାଳକବି' ବିରଚିତ ଭଗବତୀ ଜଣାଣ ଚଉତିଶାରେ ଓ ଅନ୍ୟାନ୍ୟ ବହୁ ଦେବୀ ଜଣାଣରେ ବ୍ରହ୍ମଜ୍ଞାନର ବର୍ଣ୍ଣନା ରହିଛି । ଯୋଗ ଶାସ୍ତ୍ର କେବଳ ବୈଷ୍ଣବ ଧର୍ମରେ ନୁହେଁ, ବୌଦ୍ଧ, ଶୈବ, ଓ ଶାକ୍ତ ଧର୍ମରେ ମଧ୍ୟ ତାହି ଗୃହୀତ ହୋଇଥିଲ । ଯେପରି 'ଭଗବତୀଜଣାଣ ଚଉତିଶା'ରେ ଯୋଗତନ୍ତ୍ରର ପ୍ରସଙ୍ଗରେ କୁହାଯାଇଛି—

ଓଁକାର ଉଚ୍ଚାରଣ ଅର୍ଦ୍ଧମାତ୍ରାରେ ମନ ନୟନ ନାସ୍ତେ ରଖିଲି
ଉଦେଗିର ଶିଖରେ ଉଆଁସ ଜଣି ମୁଁ ଯେ ଅଧେ ଧର୍ମକୁ ଉପେକ୍ଷିଲି ଗୋ ।
ଭଗବତି । ଉଦସ୍ଥ ନୋହିଲେ ତୋହର । ଉମା ନାମ ହେବ ଅସାର ।'

ଶୈବ-ଶାକ୍ତ ଧର୍ମରେ ତନ୍ତ୍ର ଓ ଯୋଗର ଗୁରୁତ୍ୱ ପରେ ବୈଷ୍ଣବଧର୍ମକୁ ଆସିଯାଇଛି । 'ହରିଦାସ' ରଚିତ ଅନ୍ୟଏକ ଚଉତିଶା ହେଉଛି 'ଗୋପୀଜ୍ଞାନ ଚଉତିଶା' ଏଥିରେ କବି ଜ୍ୟୋତିସ୍ୱନନ୍ଦଙ୍କର ବର୍ଣ୍ଣନା କରିଛନ୍ତି ସେ ହେଉଛନ୍ତି,ଜୀବ, ଶିବ ଓ ଶୂନ୍ୟରୂପୀ । ଯେମପରି—

'ଜୀବସ୍ୱରୂପୀ ହେ ଶିବସ୍ୱରୂପୀ ହେ ଶୂନ୍ୟ ସ୍ୱରୂପୀ ହେ ନାଥ
ଜ୍ୟୋତିରୂପରେ ଜଗତେ ବ୍ୟାପିଅଛୁ ବୋଲାଅ ଜଗତ ନାଥ ହୋ ।
ତୁମ୍ଭେ ଯାଉଅଛ ଯହିଁ । ଜୀବ ସ୍ୱରୂପ ବୋଲାଅ ତହିଁ ହୋ ।'

ଓ ସୃଷ୍ଟି ପ୍ରକ୍ରିୟାର ବର୍ଣ୍ଣନା କରାଯାଇଅଛି:—

ନିତ୍ୟମହାଶୂନ୍ୟ ଶୂନ୍ୟ ଯହିଁ ଲୀନ ଶୂନ୍ୟର ପ୍ରଭେ ହୋଇ
ନଷ୍ଟେ ପ୍ରଣବରୁ ଓଁକାର କ୍ଷରୁଛି ଓଁକାର ଶବଦ କହି ଗୋ ।
ଆଗୋ ନିରଜ ନୟନା । ନଷ୍ଟେ ଶବଦରୁ ବେଦ ସିନା ଗୋ ।'

ଅନ୍ୟ ଏକ ଜ୍ଞାନମୂଳକ ଚଉତିଶା ହେଉଛି 'ନନ୍ଦା ଅରକ୍ଷିତ'ଙ୍କର 'ରସବ୍ରହ୍ମଚଉତିଶା' । ଏହି ନନ୍ଦାଅରକ୍ଷିତ ପୁଣି ନନ୍ଦାବାଇ ଭାବରେ ପରିଚିତ । ଯାହାଙ୍କର ନନ୍ଦାବାଇ ଚଉତିଶା ମଧ୍ୟ ଅନ୍ୟ ଏକ ଲୋକପ୍ରିୟ ପ୍ରାଚୀନ ଚଉତିଶା ଅଟେ । ଅନ୍ତ-ରଂଗା ଓ ବହିରଂଗା ଅର୍ଥନେଇ ଯୋଗତତ୍ତ୍ୱ ସମ୍ବଳିତ ପଦାବଳୀରେ ଏହି ଚଉତିଶା ପରିପୂର୍ଣ୍ଣ ହୋଇଛି । ଯେପରି—

'ଦେଉଳ ବାହାରେ ଦେବତା ଦେଖ । ଭିତରେ ରହିଅଛି ଦେଉଳ ଶିଖ ।'

ପୁଣି— ପଦ୍ମ ଫୁଟିଅଛି ସଚରାଚରେ । ପୂର୍ବେ ନେଉଛାଣି ପଶ୍ଚିମ ଦ୍ୱାରେ ସେ ।
ପାଇବୁ ପରମ ଗତିଯେ । ପୁଷ୍ପବେଢ଼ିମଧୁକର ଲୀଳାକରେ ଯହିଁ ନାହିଁ ଦିବାରାତିଯେ ।୨୧

ଫୁଟିଛି ଫୁଲବୃକ୍ଷ ମୂଳେ ରହି । ଫଳବିନା ଫୁଲ ରହିଛି ସହି ।
ଫୁଲ ଲାଗିନାହିଁ ଫଳ ଅଂଗରେ । ଫୁଲ ବଢ଼ିଲେ ଫଳ ଗୋଟିଏହିଁ ସେ ।
ଫୁଲ ଫଳ ଏକ ଦେହୀ ଯେ ।
ଫୁଲକୁ ଚିହ୍ନିଲେ ଫଳରୁ ପାଇବୁ କହିଲି ସଂଶୟ ନାହିଁ ଗୋ ।

ଓଡ଼ିଆ ସାହିତ୍ୟରେ ନାଥିଆଙ୍କର 'ଜ୍ଞାନୋଦୟ' କୋଇଲି ଯଥାର୍ଥରେ ଜ୍ଞାନ ଉଦୟ କରିଥାଏ ଓ ସେ ଜ୍ଞାନ ହେଉଛି ବ୍ରହ୍ମଜ୍ଞାନ । ଏହି କୋଇଲି ଚଉତିଶାଟି 'ହରିଲୋଚନ ଦାସଙ୍କର ଶିଷ୍ୟ ନାଥିଆ ବୋଲି ଭଣିଛି ଅଛି । ସନ୍ଥ ହରିଲୋଚନ ହେଉ-ଛନ୍ତି ପଞ୍ଚସଖା ପୂର୍ବବର୍ତ୍ତୀ ଓଡ଼ିଶା ବିଶିଷ୍ଟ ବ୍ରହ୍ମଜ୍ଞାନୀ ସାଧକ ଯାହାଙ୍କର ବହୁ ରଚନା ଏଥିରେ ଆଲୋଚନା କରାଯାଇଛି । ଏହିରଚନାର ସମୟ ଆନୁମାନିକ ଖ୍ରୀ ୧୬ଶ ଶତାବ୍ଦୀର ପ୍ରଥମଭାଗ ଅଟେ । ଚଉତିଶାର ୩୪ଟିଯାକ ପଦ ଯୋଗତତ୍ତ୍ୱରେ ପରିପୂର୍ଣ୍ଣ । ପୁଣି ସୁନ୍ଦର ସରଳ ବୈରାଗ୍ୟ ଭାବ ଦ୍ୟୋତକ ପଦାବଳୀ ଚଉତିଶାକୁ କରିଛି ରମଣୀୟ ।

ଘେନକୁ ବନ୍ଧୁ ସୋଦର ଘ୍ୟାଇଲେ ହେବ ପର ।
ଘଡ଼ିଏ ତୋତେ ନ ଦେଖାଇ ଘର ଦେବ ଯିବେ ଶ୍ମଶାନ ଭୂଇଁଲେ ।
ଘୋଷରୁ ଶୁଣ ଶବ୍ଦ । ଘୁଞ୍ଚିଯିବ ତୋର ପାପ ପ୍ରମାଦଲୋ । କୋଇଲି ।
ନୟନେ ଦେଖୁଛୁ ଯେତେ । ନଯିବେ ଜେହ୍ନ ସଂଗତେ ।
ନହଁନ୍ତି କାହାରି କେହ୍ନ । ନବା ଆଣିବାକୁ କହୁହିଁ ନାହିଁଲେ ।
ନାହିଁଟି ଆଉ ଆନରେଗତ । ନାମ ଆଶ୍ରେକଲେ ହେବୁମୁକତଲୋ ।କୋଇଲି ।’

ଅନ୍ୟତ୍ର ଦାର୍ଶନିକ ତଥ୍ୟର ଆଲୋଚନାରେ—

ଠୁଳ ଶୂନ୍ୟ ପରେ ବାସ । ଠାକୁଛୁ ପରମ ହଂସ
ଠାବ ନ ପାଆନ୍ତି କେହ୍ନ । ଠିକେ ଗୁରୁ ସେବା କଲେ ତା ପାଇଲୋ ।
ଠା ଠିକେ ତ୍ରିଲୋଚନ କହ୍ନିଲେ । ଠିକେନାଥିଆକୁ ବୁଝାଇଦେଲେଲୋ । କୋଇଲି
ନଗ୍ରକାର ଖେଳ ଦେଖ । ନଦୀ୍ୟ ତ୍ରିବେଣୀ ଶିଖ
ନଳକଳ୍ପ ବଟମୂଳ । ନତ୍ୟଖେଳେ ହଂସ ଯମୁନାଜଲେଲେ ।
ଲେଉଟି ହଂସ ପିଉଛୁ ପାଣି । ଲକ୍ଷ୍ତରେ ଅଣ୍ଟା ଦେଇଛୁ ହାଣିଲେ ।
ନବ୍ରକାର ଶୂନ୍ୟ ଦେଖ । ଲୁଚଛୁ ଶୂନ୍ୟରେ ସେହ୍ନ ।
ନଦଶଇ ତାରକାସ୍ତ । ନରେଖି ଗୃହଁ । ଦଣ୍ଡ ଅଛୁ ଗ୍ରୁସ୍ତାଲେ ।
ନୟନ ପ୍ରାଣେ କରୁଛୁ ଲୀଳା । ନାଁ ପରସ୍ପେ ଜଳୁଅଛୁ ହୁଲାଲୋ ।

ଲୋଇ ନାଥିଆଙ୍କର ଜ୍ଞାନୋଦୟ କୋଇଲି ଏକ ବହୁ ପ୍ରାଚୀନ ରଚନା ଓ ବ୍ରହ୍ମଜ୍ଞାନ ସାହିତ୍ୟମଧ୍ୟରେ ଏହାର ମୂଲ୍ୟ ଅକଳନୀୟ ବୋଲି ମନେ ହୋଇଥାଏ ।

ଏହାଛଡ଼ା ସନ୍ଥ କବି ପଶୁରାମ ଦାସଙ୍କର ‘ କହୁ ଅଛୁ ମୁଁ ଯେ ମନକୁ’, ‘ବୀର ନୃସିଂହ ଚଉତିଶା’ (ବୀରସିଂହଙ୍କ ପ୍ରସଂଗରେ ଆଲୋଚିତ), ଧିବର ନାଥିଅଙ୍କର ‘କନ୍ଦର୍ପ କୌପିନମାଣ ଚଉତିଶା’, ହରିଦାସଙ୍କର ‘ କହିଲି ଯେତେ ନବୁଝିଲୁ ମନ’, ‘କହନ୍ତି ଦୂତୀ ରାଧା ଶ୍ରୀମତୀ ଗୃହଂ’ ଚଉତିଶା, ଶ୍ୟାମଘନଙ୍କର ‘ଓଲଟ ହଂସ ଚଉତିଶା’ ପ୍ରଭୃତି ଶତାଧିକ ଚଉତିଶାରେ ବ୍ରହ୍ମଜ୍ଞାନର ଯେଉଁ ବାଖ୍ୟା ରହିଛି ତାହା ଅମ ଓଡ଼ିଆ ପ୍ରାଚୀନ ସଂସ୍କୃତିର ଯଥାର୍ଥ ପରିଚୟ ଦେଇଥାଏ । ଏହି ସବୁ ଚଉତିଶାର ସାହିତ୍ୟ ଏପର୍ଯ୍ୟନ୍ତ ପୁରାଣ ପେଡ଼ି ହୋଇ ରହିଛି ଓ ଯଥାର୍ଥ ଗବେଷଣା ଏବିଷୟରେ ଆଦୌ ହୋଇ ନାହିଁ ।

ପର୍ଶୁରାମଦାସ—

ନିର୍ବିକାର ସେ ଯେ ଅଚିନ୍ତ୍ୟ ସବୁ ନିର୍ଣ୍ଣୟେ ଯହିଂ
ନିମଗ୍ନ ଭଜିଲେ ନିର୍ବାଣ ଗତି ପ୍ରକାଶ ହୋଇଁ ।
ଛନ୍ଦାନ୍ଦେ ଚିଟାଉ ଲେଖୁଛୁ ଜୀବ ପରମ ପାଇଁ
ଗୁରୁ ପର୍ଶୁରାମଦାସର ମନ ହୋଇଲା ତୋଷ । ୩୪ ।
(କହୁଅଛୁ ମୁଁ ଯେ ମନକୁ ଚଉତିଶା)

ଧୀବର ନାଥିଆ —

'ଗ୍ରଶବେଦ କଲାଥାଳ । ଚଉଖାନ୍ଧ କଲା ରୁଦ୍ରାକ୍ଷ ମାଳ ।
ନିଷ୍ଠରେ ଛେଦିଲା କାଳ ଯେ ।
ପାଶେ ଜଳୁଅଛି ଜ୍ୟୋତି । ପ୍ରକୃତି ପୋଡ଼ିଣ କଲା ବିଭୂତି ।
ପୂର୍ଣ୍ଣାନନ୍ଦ ବ୍ରହ୍ମଜ୍ୟୋତି ଯେ ।
(କନ୍ଦର୍ପ କୌପିନ ମାର ଚଉତିଶା)

କହନ୍ତି ଦୂତୀ ରାଧା ଶ୍ରୀମତୀ ରହିଂ
କଦମ୍ବ ମୂଳେ ବଜେ କଳାକହ୍ନାଇ ଗୋ ।

'ଶୂନ୍ୟ ଶୂନ୍ୟରେ ମିଶି ବାଣ ନୋହିଲା
ଶୂନ୍ୟ ସ୍ୱରୂପ ରୂପସେ ନିନ୍ଦିବଲା ଗୋ ।
ଶୂନ୍ୟକୁ ଧ୍ୟାଇ ; ଶିଷ୍ୟ ମୂନାରେ ରାଧାଲୟ ଲଗାଇ ଗୋ । ୩୦ ।
ଶୂନ୍ୟ ଶବଦ ସଖୀ ଶୂନ୍ୟେ ଫୁରୁଛୁ
ଶୂନ୍ୟେ ସ୍ୱରୂପ ରୂପ ଦେଖିବ ଦୂତୀ ଗୋ ।
ଶୂନ୍ୟ ଉପରେ । ଲୀଳା କରୁଛି ହଂସ ରହି ଶୂନ୍ୟରେ ଗୋ ।'

କୃଷ୍ଣ ଦାସଙ୍କ ରଚିତ ଅନ୍ୟ ଏକ ଚଉତିଶା ରହିଛି- 'କହନ୍ତି ପ୍ରଭୁ ପଦ୍ମ ପାଣି । ଉଦ୍ଧବ ଶୁଣ ତତ୍ତ୍ୱବାଣୀ । ଖଣ୍ଡିଭୂମନ ଚଇତନ । ଖେଦ କଲୁଷ ନିବାରଣ'—ଏସବୁ ପଦ ଭିତରେ ରହିଛି ବ୍ରହ୍ମ ଜ୍ଞାନ ତତ୍ତ୍ୱ । ନିଜ ଭିତରେ ଅଛନ୍ତି ଜ୍ୟୋତିରାନନ୍ଦ ରୂପୀ ଭଗବାନ ଏବଂ ସଦ୍‌ଗୁରୁ ଆଶ୍ରୟରେ ସାଧକ ତାଙ୍କୁ ଦେଖି ପାରିବ । ଏହି ବିଷୟକୁ ଲକ୍ଷ୍ୟ କରି

ସାଧକ କବି ଲେଖିଛନ୍ତି—

ନୟନ ଢ଼ୋଲା ନେଇଂଟାଇ । ନାଗୁ ସମାଧି ମୋହଠାଇଁ ।
ପରମ ପରଚେ ତୁ ପାଅ । ପାଇବୁ ପୂର୍ବ ହେବୁ ଦେହ ।
ଫୁଟି ତୁ ଭିତରେ ନମର । ଫୁଟିବ କମଳ କେଶର ।
ବନ୍ଦି ପଡ଼ିଛୁ କାହିଁ ପାଇଁ । କି ଅର୍ଥେ ହସୁଅଛୁ ଦେଖା ।
ଭୁଲି ତୁ ଭିତରେ ନମର । ଭବ ଜଳଧି ହେବୁ ପାର ।
ମହିମାଧ୍ୱନି ଶିଖେ ରହି । ମନ ନିଶ୍ଚଳ କରି ତୁହି ।

ସାଧକ କୃଷ୍ଣଦାସ ଏହି ଭାବରେ ଆତ୍ମଦର୍ଶୀ ହୋଇ ଦେଖିଛନ୍ତି ହରିମୟ ସଂସାର ଏବଂ ସଂସାର ମୟ ହରି । ସେ ଏହି ଦିବ୍ୟ ଆନନ୍ଦରେ ଅଭିଭୂତ ହୋଇ ପଡ଼ିଛନ୍ତି ।—

ହରି ବୋଇଲେ ହରେ ଦୁଃଖ । ହରି ଆନନ୍ଦ ମହା ସୁଖ ।
କ୍ଷେମା ସାଗର ହୃଷିକେଶ । କ୍ଷମନ୍ତୁ ଭଣେ କୃଷ୍ଣ ଦାସ !’

ସନ୍ଥଭୂମି ଓଡ଼ିଶାର ଶତ ଶତ ସାଧକ ଏହି ଭାବରେ ଅନୁପ୍ରାଣିତ ହୋଇ ଏକ ମହାନ ଦାର୍ଶନିକ ଆଦର୍ଶରେ ଯୁଗ ଯୁଗ ଧରି ଚାଲିଛନ୍ତି ଅସୀମର ସନ୍ଧାନରେ । ଦିବ୍ୟାନନ୍ଦ ଲାଭ ନିମିତ୍ତ ଓଡ଼ିଶାର କୋଟି କୋଟି ଜନତା ଦୁଃଖ ଦାରିଦ୍ର୍ୟକୁ ଭ୍ରୁକ୍ଷେପ ନକରି ସେମାନଙ୍କର ପ୍ରତ୍ୟେକ ବାଣୀରେ ଚିରନ୍ତନ ସତ୍ୟକୁହିଁ ରୂପାୟିତ କରିଛନ୍ତି । ଦେଶର ଲକ୍ଷ ଲକ୍ଷ ଦରିଦ୍ର ଜନତାଙ୍କୁ ଯେଉଁମାନେ ଦରିଦ୍ର ଜାତି ବୋଲି ଘୃଣା ଚକ୍ଷୁରେ ଦେଖନ୍ତି, ସେମାନେହିଁ ନିତ୍ୟଅଶାନ୍ତ ଓ କାମନା ବାସନା ଜାଲରେ ନିପୀଡ଼ିତ । କିନ୍ତୁ ମହାନ ଆଦର୍ଶପ୍ରେମୀ ଜାତି ସେ ତାର ସକଳ ଦୁଃଖ ଭାର ଲାଘବ କରିଥାଏ ଆଧ୍ୟାତ୍ମ୍ୟ ଚିନ୍ତନରେ— ଏହି ଆଧ୍ୟାତ୍ମ୍ୟ ଚିନ୍ତନରେ ସେ ପାଇଥାଏ ନିତ୍ୟ ଆନନ୍ଦ ।



ଅପାରେ କାବ୍ୟ-ସଂସାରେ କବିରେକଃ ପ୍ରଜାପତିଃ ।
ଯଥାଽସ୍ମୈ ରୋଚତେ ବିଶ୍ୱଂ ତଥୈବଂ ପରିବର୍ତ୍ତତେ ।

(ଧ୍ୱନ୍ୟାଲୋକ-ଆନନ୍ଦ ବର୍ଦ୍ଧନ)

# ରୁଦ୍ରସୁଧାନିଧିର ଆଧାରଭୂମି ଓ ଶିବକଥା

❀ ଡ଼ଃ କୃଷ୍ଣ ଚରଣ ସାହୁ

---

ରୁଦ୍ର ସୁଧାନିଧି ଧର୍ମ ବା ଦର୍ଶନ ଗ୍ରନ୍ଥ ନୁହେଁ, ଏକ କଥାଗ୍ରନ୍ଥ । ଏହି କଥାର ମୂଳ ସୂତ୍ର ହେଉଛି ରୁଦ୍ର ସୁଧାନିଧି ଓ ମୃତ୍ୟୁସଞ୍ଜୀବନୀ କରଣୀର ମିଳନ ବା ବିବାହ, କିନ୍ତୁ ରୁଦ୍ର ସୁଧାନିଧିର ମୁଖ୍ୟ ବର୍ଣ୍ଣ୍ୟ-ବିଷୟକୁ ଅନୁଶୀଳନ କଲେ ଜଣାଯାଏ ଯେ ଏହା ଲେଖକଙ୍କର ମୂଳ ଲକ୍ଷ୍ୟ ନୁହେଁ । ରୁଦ୍ର ସୁଧାନିଧି ରାଜପୁତ୍ର ହେଲେହେଁ ଭୋଗୀ ବା ବିଷୟୀ ନହୋଇ, ସେ ହୋଇଛି ଜଣେ ଦାର୍ଶନିକ । ଶୈବ ଓ ଶାକ୍ତ ଧର୍ମ-ବଲମ୍ବୀମାନଙ୍କୁ ଶାସ୍ତ୍ରଚର୍ଚ୍ଚା ଓ ବିନୟ ଗୁଣରେ ପରାସ୍ତ କରି ସେ ବୈଷ୍ଣବଧର୍ମର ବିଜୟ ଧ୍ୱଜା ଉଡ଼ାଇଛି ଓ ଦେଶରେ ବୈଷ୍ଣବ ଧର୍ମର ସଂସ୍ଥାପନାପାଇଁ ସେ ହୋଇଛି, ଶ୍ରୀକୃଷ୍ଣଙ୍କ ପରି ଏକ ଅବତାର । ନାୟକର ସ୍ୱାଭାବ-ସୁଲଭ ଗୁଣ ସବୁ ଅପେକ୍ଷା, ତା ଚରିତ୍ରରେ ଧର୍ମ କଥାହିଁ ବେଶୀ ସ୍ଥାନ ପାଇଛି । ବର୍ଣ୍ଣ୍ୟ-ବିଷୟକୁ ରୂପଦାନ କଲାବେଳେ ଲେଖକ ବାତାବରଣ ବା ପୃଷ୍ଠଭୂମିକୁ ମୁଖ୍ୟକରିଛନ୍ତି, ଏବଂ ଏହି ପୃଷ୍ଠଭୂମିରେ ଶିବ-କଥା, ଶୈବ ଧର୍ମ ଓ ଦର୍ଶନର ଆଦର୍ଶହିଁ ବିଶେଷ ଭାବେ ବ୍ୟବହୃତ ହୋଇଛି । ଏହି ଆଧାରଭୂମିକୁ ପରୀକ୍ଷା କରିବାକୁହିଁ ଏହି ପ୍ରବନ୍ଧର ଲକ୍ଷ୍ୟ ।

ରୁଦ୍ରସୁଧାନିଧିରେ ଶୈବଧର୍ମର ବିଶେଷ ବର୍ଣ୍ଣନା ଦେଲେ କେତେକ ଆଲୋଚକ ରୁଦ୍ରସୁଧାନିଧିକୁ ଏକ ଶୈବ ଗ୍ରନ୍ଥରୂପେ ଗ୍ରହଣ କରିଚନ୍ତି ଏହି ଧାରଣା ବହୁଦିନ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟିକମାନଙ୍କୁ ଆଲୋଡ଼ିତ କରିଥିଲା । ଏଥିରୁ ଆଉ ଗୋଟିଏ ମତ ଉପସ୍ଥାପିତ କରାଯାଇଥିଲା ଯେ ଯେଉଁ ସମୟରେ ଓଡ଼ିଶାରେ ଶୈବଧର୍ମ ପ୍ରାଧାନ୍ୟ ଲାଭ କରିଥିଲା, ସେହି ସମୟ ହେଉଛି ରୁଦ୍ରସୁଧାନିଧିର ରଚନା କାଳ । ରୁଦ୍ରସୁଧାନିଧିର ଅନୁଶୀଳନାତ୍ମକ ଆଲୋଚନା ପରେ ଏହିସବୁ ଧାରଣା ଭିତ୍ତିମୂଳକ ଥିବା ପ୍ରମାଣିତ ହେଲା ଏବଂ ଜଣାଗଲା ଯେ ରୁଦ୍ରସୁଧାନିଧି ଶୈବ ଗ୍ରନ୍ଥ ନୁହେଁ, ଏକବିନୟୀ ବୈଷ୍ଣବ ନାରାୟଣ ଦାସଙ୍କ ରଚିତ ଗ୍ରନ୍ଥ । ଓଡ଼ିଶାରେ ଶୈବଧର୍ମ ପ୍ରସାର ସହିତ ଏହାର କୌଣସି ସଂପର୍କ

ନାହିଁ । ଏଥିରେ ରୁଦ୍ର ସୁଧାନିଧି ଯେଉଁ ଧର୍ମସଂସ୍ଥାପନା କରିବା ପାଇଁ ଜନ୍ମ ଗ୍ରହଣ କରିଛି, ତାହା ଶୈବ ଧର୍ମ ନୁହେଁ-ବୈଷ୍ଣବଧର୍ମ । ଏଥିରେ ଅଧାରଭୂମିରୂପେ ବ୍ୟବହୃତ ହୋଇ ଥିବା ଶିବଙ୍କର ଦୁଇଟି ପ୍ରସିଦ୍ଧ ରୂପ ପ୍ରକାଶିତ ହୁଏ । ତାହା ହେଉଛି ତାଙ୍କର ଯୋଗୀ ଓ ଭୋଗୀରୂପ ।

ଶିବଙ୍କ ଏହି ରୂପର ବିସ୍ତୃତ ଆଲୋଚନା ହୋଇଛି, ଅଭିନବ ଚୈତନ୍ୟକୃତ ଶିବ ସ୍ତୁତିରେ । ଶିବଙ୍କୁ ଏଥିରେ 'ଯୋଗରୋପଣ', 'ଯୋଗପାରାୟଣ', 'ଯୋଗେଶ୍ୱର', 'ଯୋଗଗମ୍ୟ' 'ଯୋଗପ୍ରିୟ', 'ଯୋଗ.ଖନ୍ତ', 'ଯୋଗାତ୍ମା', 'ଯୋଗମୟ', 'ଯୋଗ ନିରତ', 'ଯୋଗାଲୟ', 'ଯୋଗାତ୍ମିକ', 'ଯୋଗାଶ୍ରୟ', 'ଯୋଗୀଗଣ ସେବିତ', 'ଯୋଗଗର୍ଭ', 'ଯୋଗାରୂଢ଼', 'ଯୋଗ ସ୍ୱରୂପ', 'ଯୋଗାନ୍ତକୃତ', 'ଯୋଗାଯୋଗ ବିବର୍ଜିତ', 'ଯୋଗ ପୁରୁଷ' ଭାବେ ଯେପରି ବନ୍ଦନା କରାଯାଇଛି, ସେହିପରି ତାଂକୁ ହିମାଚଳେନ୍ଦ୍ର ନନ୍ଦିନୀ ସ୍ତନଯୁଗ୍ମ ଆଲିଙ୍ଗନେ ଘୃଷିତ ନେହ ପଦ୍ମ' 'ଭୂଧର ନନ୍ଦିନୀ କୁଚକୁମ୍ଭ କୁଙ୍କୁମ ଲେପନ କର କମଳ କଳିତ', କାମିନୀ କଦମ୍ବ ବନ୍ଦିତ', 'ରତିପରାୟଣ', 'ରତିରହସ୍ୟବିଶେଷଣ' ଭାବେ ମଧ୍ୟ ସ୍ତୁତି କରାଯାଇଛି । ସ୍ତୁତି ବା ବନ୍ଦନାରେ ଶିବଙ୍କର ଏହି ଦୁଇଟି ରୂପ ଥିଲେହେଁ କଥାରେ କେବଳ ଗୋଟିଏ ରୂପ ମିଳେ । ତାହା ହେଉଛି, ତାଙ୍କର ସୁଖ-ସୌନ୍ଦର୍ଯ୍ୟ-ପୂର୍ଣ୍ଣ ପାରିବାରିକ ଜୀବନ ! ଜାୟା, ସୁତ, ବାହନ, ଓ ଗଣମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସେ ଶାନ୍ତିରେ କାଳାତିପାତ କରୁଛନ୍ତି । ଏଥିରେ ଶିବ କେବଳ ସୁଖରେ ନାହାନ୍ତି, ପାର୍ବତୀଙ୍କ ସହାୟତାରେ କଉତୁକ ଲୀଳା କରିବା ପାଇଁ ଚାହିଁଛନ୍ତି । ଫଳରେ ତାଙ୍କର ପାରଂପରିକ ଚରିତ୍ର ବା ସ୍ୱଭାବରେ ପରିବର୍ତ୍ତନ ଦେଖିବାକୁ ମିଳେ । ଶିବଙ୍କର ଏହି ଲୀଳା ରୂପକୁ ଦେଖିବାପାଇଁ ରୁଦ୍ର ସୁଧାନିଧିରେ ଥିବା ଶିବ କଥାକୁ ନିମ୍ନ ଭାବେ ବିଭାଗ କରାଯାଇପାରେ ।

୧- ରୁଦ୍ର ଗଣମାନଙ୍କ ସିଦ୍ଧି ପରୀକ୍ଷା
୨- ଶିବ ଓ ପାର୍ବତୀଙ୍କ ପାରିବାରିକ ସମ୍ପର୍କ
୩- ମାନସ ବା ମୋହିନୀ କନ୍ୟା ଜନ୍ମ
୪- କାମ ଦେବ ଓ ପାର୍ବତୀ

ସିଦ୍ଧ ବା ଋଷି ମାନଙ୍କର ପରୀକ୍ଷାକଥା ନୂଆନୁହେଁ । ପୁରାଣରେ ବିଶ୍ୱାମିତ୍ର, ବିଭାଣ୍ଡକ, ଋଷ୍ୟଶୃଙ୍ଗ ପ୍ରଭୃତି ଋଷି ଏପରିକି ଯୋଗୀଶ୍ରେଷ୍ଠ ଶିବଙ୍କୁ ମଧ୍ୟ ଏପରି ପରୀକ୍ଷାର ସମ୍ମୁଖୀନ

ହେବାକୁ ପଡ଼ିଛି । ଏସବୁ ପରୀକ୍ଷା ମୂଳରେ ଦୁଇଟି ତତ୍ତ୍ୱ ଅଛି । ଏକ ପକ୍ଷରେ ତପସ୍ୟା କଠୋରତା ଓ ଅନ୍ୟ ପକ୍ଷରେ ମୋହିନୀ କନ୍ୟାର ମାଦକତା । କେହି କେହି କୁହନ୍ତି, ଏହା ହେଉଛି ଭାରତୀୟ ଜଳବାୟୁର ପ୍ରଭାବ । ପ୍ରଚଣ୍ଡ ଗ୍ରୀଷ୍ମତାପପରେ ପ୍ରବଳ ବର୍ଷା ହେବା ଭାରତରେ ଯେତେ ସ୍ପଷ୍ଟ, ଅନ୍ୟ ସ୍ଥାନରେ ସେତେ ନୁହେଁ । ଏହି ଜଳବାୟୁର ପ୍ରଭାବ ମଣିଷ ମନ ଉପରେ ଯେଉଁ ପ୍ରତିକ୍ରିୟା ସୃଷ୍ଟି କଲା, ତାହାହିଁ ପୁରାଣ ସବୁରେ କଥା ଭାବେ ଆତ୍ମ ପ୍ରକାଶ କଲା । ସେଥି ପାଇଁ ମୁନି ଋଷି ମାନେ କଠୋର ତପସ୍ୟା କରିବାକ୍ଷଣି, ଅନ୍ୟ କୌଣସି ଦେବତା ନୁହନ୍ତି, ବର୍ଷାଧିପତି ଇନ୍ଦ୍ର ହିଁ ପ୍ରଥମେ ଥରି ଉଠନ୍ତି । ଏକଥା ସତ ଯେ ଇନ୍ଦ୍ର ଦେବତା ମାନଙ୍କର ରାଜା । ଆପଣପାଇଁ ତାଙ୍କର ଭାରି ଲୋଭ । ତେଣୁ ସବୁ ବେଳେ ସେ ତାଙ୍କ ନିରାପତ୍ତା ପାଇଁ ଚିନ୍ତିତ । ଇନ୍ଦ୍ର ପଦ ପ୍ରାପ୍ତି ପାଇଁ କୌଣସି ଋଷିଙ୍କ ତପସ୍ୟାକୁ ଇନ୍ଦ୍ର ଭାଙ୍ଗିବା ପାଇଁ ଚେଷ୍ଟା କଲେ, କିଛି କହିବାର ନାହିଁ । କିନ୍ତୁ ବିଶ୍ୱାମିତ୍ର ତ ବ୍ରହ୍ମର୍ଷି ହେବା ପାଇଁ ତପସ୍ୟା କରୁ ଥିଲେ । ଇନ୍ଦ୍ରଙ୍କର କୌଣସି ଅସୁବିଧା ନଥିଲା । ତେବେ ବା ସେ ପଠେଇଲେ ରମ୍ଭା ଓ ମେନକାକୁ । ବିଭାଣ୍ଡକ ମଧ୍ୟ ନିଜର ଆଧ୍ୟାତ୍ମିକ ତପୋବଳ ବୃଦ୍ଧି କରିବାପାଇଁ ତପସ୍ୟା କରୁଥିଲେ । ସେଠିକି ମଦନିକା ଅପ୍‌ସରାକୁ ପଠାଇ ତାଙ୍କର ତପସ୍ୟାରେ ବିଘ୍ନସୃଷ୍ଟି କରିବାରେ କିଛି ଆବଶ୍ୟକତା ନଥାଇମଧ, ଏସବୁ କରାଯାଇ ଥିଲା । ଏସବୁ କଥା ମୂଳରେ ସେଇ ଗୋଟିଏ କଥା । ଅତ୍ୟଧିକ ତପସ୍ୟା ଫଳରେ ଯେଉଁ ଉତ୍ତାପ ସୃଷ୍ଟି ହୁଏ, ବର୍ଷାଦ୍ୱାରା ବା ବୀର୍ଯ୍ୟ ପତନ ଦ୍ୱାରା ସେହି ଉତ୍ତପ୍ତତା ହ୍ରାସ ପାଏ । କାଳିକା ପୁରାଣ ରୁ ଏଥିପାଇଁ ଗୋଟିଏ ଗଳ୍ପ କୁହାଯାଇପାରେ ଥରେ ବ୍ରହ୍ମା ସତୀଙ୍କ ମୁଖକୁ ଚାହିଁବାକ୍ଷଣି କାମୋଦ୍ଦୀପ୍ତ ହୋଇଗଲେ । ରୁଦ୍ରବୁନ୍ଦା ବୀର୍ଯ୍ୟ ପୃଥିବୀ ଉପରେ ପଡ଼ି ବଜ୍ର ବାରିଦରେ ପରିଣତ ହୋଇ ସମସ୍ତ ଆକାଶକୁ ଆଚ୍ଛାଦିତ କରିଦେଲା ଓ ମୂଷଳ ଧାରାରେ ବର୍ଷା ହେବାକୁ ଲାଗିଲା । ଶିବ ମଧ ସତୀଙ୍କୁ ଦେଖି କାମ-ବିହ୍ୱଳ ହୋଇଗଲେ । କିନ୍ତୁ ସେ ତ୍ରିଶୂଳ ଧରି ବ୍ରହ୍ମାଙ୍କୁ ମାରିବା ପାଇଁ ଗୋଡ଼ାଇଲେ । ଶିବ ପୁରାଣରେ ଏହି କଥାର ବର୍ଦ୍ଧିତରୂପ ଦେଖିବାକୁ ମିଳେ । ଶିବଙ୍କ ବିବାହ ଦିନ ବ୍ରହ୍ମା ସତୀଙ୍କ ଓଢଣା ଉଠାଇ ତାଙ୍କୁ ଦେଖିବା କ୍ଷଣି କାମ ମୋହିତ ହୋଇଗଲେ ଓ ଚାରିବିନ୍ଦୁ ବୀର୍ଯ୍ୟ ତଳେ ଖସି ପଡ଼ିଲା । ବରଫ ମୁଣ୍ଡା ପରି ଦେଖାଯାଉଥିବା ସେହି ବର୍ଯ୍ୟକୁ ବ୍ରହ୍ମା ଗୋଡ଼ତଳେ ଚାପି ଧରିଲେ । ଶିବଙ୍କୁ ଏକଥା ଅଛପା ରହିଲା ନାହିଁ ସେ ରାଗରେ ତ୍ରିଶୂଳ ଧରି ବ୍ରହ୍ମାଙ୍କୁ ମାରିବାପାଇଁ ଉଦ୍ୟତ ହେବା ବେଳେ ବିଷ୍ଣୁ ମଧ୍ୟରେ ପଶି ଶିବଙ୍କୁ ଆଶ୍ୱସ୍ତ କଲେ । କଥା ସେଇଠି ଶେଷ ହେଲା ନାହିଁ । ଶିବଙ୍କ ଅଭିଶାପରେ ବ୍ରହ୍ମା ହେଲେ ମର୍ତ୍ତ୍ୟର ଏକ

ସାଧାରଣ ମଣିଷ ଓ ତାଙ୍କ ଠାରୁ ନିସୃତ ଗୃହବନ୍ଧ, ଗୃହ ମେଘରେ ପରିଣତ ହୋଇ ସମସ୍ତ ଆକାଶକୁ ଆଚ୍ଛନ୍ନ କରିଦେଲା ଓ ବର୍ଷା ହେବାକୁ ଲାଗିଲା ।

ଏହିଗଳ୍ପ ବିଭିନ୍ନ ଭାବେ ବିଭିନ୍ନରୂପେ ପୁରାଣ ସବୁରେ ଦେଖିବାକୁ ମିଳୁଥିଲେହେଁ; ଏହାର ମୂଳ ତତ୍ତ୍ୱ ହେଲା, ତପସ୍ୟାର ଶୁଷ୍କତା ଓ ତପସ୍ୟା ଭଂଗର କୋମଳତା । ଅନ୍ୟ ଭାଷାରେ କହିଲେ ତପସ୍ୟା ହେଉଛି, ପ୍ରଳୟ ଓ ପ୍ରଜନନର ମୂଳ କାରଣ । ରୁଦ୍ର ସୁଧାନିଧିରେ ଅଭିନବ ଗୌତମୀର ସିଦ୍ଧି-ପରୀକ୍ଷା ମୂଳରେ ଠିକ୍ ସେହି କଥାହିଁ ଦେଖିବାକୁ ମିଳେ । ପୁରୁଣା ସାଧନାର କଠୋରତା ସ୍ଥାନରେ ନୂଆ ଧର୍ମର ସରସତା ସ୍ଥାପନା କରିବା ପାଇଁ ଶିବଙ୍କର କଉତୁକଲୀଳା । ଏଥିରେ ସାହାଯ୍ୟ କାରିଣୀ ହେଲେ ତାଙ୍କର ପତ୍ନୀ ପାର୍ବତୀ ।

ଏହି କଥାବସ୍ତୁର ଦ୍ୱିତୀୟ ରୂପ ହେଲା, ଶିବ ଓ ପାର୍ବତୀଙ୍କ ପାରିବାରିକ ଜୀବନ । ଶିବ ଯୋଗୀ ଭାବେହିଁ ପ୍ରସିଦ୍ଧ । ସେ ଯୋଗୀ ଭାବେ ପ୍ରାୟ ସବୁବେଳେ ପାର୍ବତୀଙ୍କସହ କଳହ କରନ୍ତି ଓ ଭୋଗୀ ଭାବରେ ପାର୍ବତୀଙ୍କ ନିଜପାଖରୁ ମୁହୂର୍ତ୍ତେ ହେଲେ ଛାଡ଼ନ୍ତି ନାହିଁ । ବଙ୍ଗଳା ସାହିତ୍ୟରେ ପ୍ରସିଦ୍ଧିଲାଭ କରିଥିବା ଏବଂ ନିମ୍ନୋଦ୍ଧୃତ କୌଣସି ଅଜ୍ଞାତ ଓଡ଼ିଆ କବିକୃତ 'ଶିବ ପାର୍ବତୀ କଳହ'ର ସୂଚନା ପର୍ଯ୍ୟନ୍ତ ରୁଦ୍ର ସୁଧାନିଧିରେ ଦେଖିବାକୁମିଳେ ନାହିଁ । ଶିବଙ୍କର ବାସସ୍ଥାନ କୈଳାସ ଓ ଶ୍ମଶାନ ପାର୍ବତୀଙ୍କ ମନକୁ ପାଇନାହିଁ । ସେ ବିଷ୍ଣୁ, ବ୍ରହ୍ମା ଓ ଅନ୍ୟାନ୍ୟ ଦେବତାଙ୍କ ଶ୍ରୀ ଦେଖି ନପାରି ସ୍ୱାମୀହୋଇ ଶିବଙ୍କ ପ୍ରକୃତି ମହିମାରେ ସଂଦେହ ପ୍ରକାଶ କରିଛନ୍ତି । ଓଡ଼ିଆ ଭାଷାରେ ରଚିତ ଏକ ଅସଂପୂର୍ଣ୍ଣ କବିତାରେ ଏହି ମର୍ମସ୍ପର୍ଶୀ ଭାବ ଅତି ଜୀବନ୍ତ ଭାବେ ପ୍ରକାଶ ଲାଭ କରିଛି । କବି ଲେଖିଛନ୍ତି—

"ପାର୍ବତୀ ବୋଲନ୍ତି ହର      ଭଲସ୍ଥାନ ଦେଖି ନକଲ ଘର
ସିନ୍ଧୁକୂଳ କି ବାଲି ଉପର      କି ମୋ ଶିବହେ ।

କପିଳାସ କଲେ ଘର      ବ୍ୟାଘ୍ର ଭଲ୍ଲକ ବନସ୍ତ ଭିତରହେ
ଧୀରେ ଘରୁ କେ ହେବ ବାହାର      ମୋ ଶିବହେ ।

କ୍ଷୀରାବ୍ଧିରଙ୍କ ମଧ୍ୟରେ      ସ୍ଥାନ ନଥିଲା କି ତ୍ରିମୂର୍ତ୍ତି ଭିତରେ ହେ
କେଉଁ ଭଲ ଦେଖିଲକି ଏଠାରେ      ମୋ ଶିବହେ ।

ଦଇବରେ ଯୋଗୀ ଚିନା — ଭଲ କଲେ ଦେବ ମଣାନ୍ତି ଜନା
ତୁମ୍ଭେ କେଉଁ ପନ୍ଥରେ ଗଣନା — ମୋ ଶିବ ହେ ।

ପନ୍ଥକୁ ଯେବେ ଯୋଗାନ୍ତ — ପନ୍ଥ ସଂଗତରେ ଜଣେ ହୁଅନ୍ତ
ଗ୍ରାମ ବାହାରେ କଂପା ଛୁହନ୍ତ — ମୋ ଶିବ ହେ ।

ଭାଗ୍ୟବନ୍ତ ସେ କମଳା — ବର ପାଇଛନ୍ତି ପଙ୍କଜ ଡୋଳା
ନୀଳଗିର ବେହାରଲ — ମୋ ଶିବ ହେ ।

ସାବିତ୍ରୀଙ୍କ ଭାଗ୍ୟ ଦେଖ — ସେ ପାଇଛନ୍ତି ଚତୁର୍ଦ୍ଧାମୁଖ
ତୁମ୍ଭେ ମୋ କର୍ମେ ମାଗୁଛ — ମୋ ଶିବ ହେ ।

ପିତା ମୋର ବର ବର — ହେବ ପ୍ରାଣ ପାତ ମୁଁ ଜ୍ୟେଷ୍ଠ ନାରୀ
ପିତା ନାମେ ହୋଇଯିବ ପର — ମୋ ଶିବ ହେ ।

ଏହି କବିତାଟି ବୋଧହୁଏ ଊନବିଂଶ ଶତାବ୍ଦୀରେ ରଚିତ । ଯାହା ପୋଥିରୁ ଏହା ସଂଗୃହୀତ ହୋଇଥିବାରୁ ଏହା କୌଣସି ଯାତ୍ରାର ଅଂଶ-ବିଶେଷ ଭାବେ ଅଭିନୀତ ହେଉଥିବା ଅନୁମାନ କରାଯାଇ ପାରେ । ଓଡ଼ିଆ ସାହିତ୍ୟର ପ୍ରାଚୀନତମ ରଚନା କଳସା ଚଉତିଶାରେ ମଧ୍ୟ ଅସନ୍ତୁଷ୍ଟା ପାର୍ବତୀଙ୍କୁ ଦେଖି ହୁଏ । କିନ୍ତୁ ସେଥିରେ ତାହା ବିବାହ ପୂର୍ବବର୍ତ୍ତୀ ଜୀବନକଥା । ରୁଦ୍ର ସୁଧାନିଧିର କଥା ଏ ସବୁରୁ ସ୍ୱତନ୍ତ୍ର । ଏଥିରେ ତାଙ୍କର ଭୋଗୀ ରୂପହିଁ ବେଶୀ ସ୍ପଷ୍ଟ । ସେଥିପାଇଁ ସେ ଅତି ଆଦରରେ "ପାର୍ବତୀଙ୍କି ବିକାଶ କଉତୁକ ରସେ ପରିହାସ କରି ପଚାରି, କୋମଳ କରି କର୍ଣ୍ଣମୂଳରେ ଆଜ୍ଞା ଦେଲେ, ହେ ଭଦ୍ରେ ! କେ କଲ୍ୟାଣି ! ହେ ଶୁଭ୍ର ସୁକୁମାରି ! ହେ ଶାକମ୍ଭରୀ । (ପୃ-୩)କାମାନନ୍ଦ ଯୋଗୀର ଦୃଷ୍ଟିରେ ମଧ୍ୟ ଶିବ ଯୋଗୀ ନୁହନ୍ତି,ଭୋଗୀ । ସେଥିପାଇଁ ସେ କହୁଛି "ବିଷୟ ରସ ବ୍ୟସନକେ ଆନନ୍ଦ ଅବା ଅଛି କାହିଁ । ବିଷୟ ଆନନ୍ଦ ହିଁ ସେ ସୁଖ । ସୁଖ ହିଁ ସେ ଜ୍ଞାନ । ନୋହିଲେ କେମନ୍ତେ ଖଣ୍ଡେନ୍ଦୁ ଚୂଡ଼ାମଣି ଅର୍ଦ୍ଧାଙ୍ଗେ ଅଛନ୍ତି ହିମାଳୟ ନନ୍ଦିନୀ । ଆପଣେ ସୁଖ ପାଉଅଛୁ । ଜଗତକୁ ବିଡ଼ମ୍ବି ଭଣ୍ଡାଇବା ନିମିତ୍ତ ସ୍ତ୍ରୀ ବସ୍ତୁ ଅଜ୍ଞାନ ବୋଲି କହୁଅଛୁ । ପୃ-୧୧୯ । କନ୍ୟା ଖୋଜିବାକୁ ଯାଇଥିବା ଦୂତମାନଙ୍କ ମଧ୍ୟରୁ ହରିହରଗର ଦୂତ ଶଶଧ ମୁଖରେ ଶିବଙ୍କର ଓ

ପାର୍ବତୀଙ୍କର ଯେଉଁ ଚିତ୍ର ପ୍ରଦାନ କରାଯାଇଛି, ସେଥିରେ ମଧ୍ୟ ସେମାନଙ୍କ ପାରିବାରିକ ସୁଖ ହିଁ ପ୍ରତି ଫଳିତ । ଶିବ ଅତି ଶାନ୍ତିରେ ବୃଷଭକୁ ଅପସର କରି ବସିଛନ୍ତି । ସାଧାରଣତଃ ଯେଉଁ ସବୁ ଆଭରଣ ଶିବଙ୍କ ଯୋଗୀ ବେଶରେ ଅତି ଭୟଙ୍କର ଦେଖାଯାଆନ୍ତି, ସେ ସବୁ ଭୋଗୀ ପୁରୁଷର ସୁନ୍ଦର ଅଳଙ୍କାରରେ ପରିଣତ ହୋଇ ଯାଇଛନ୍ତି । ଯେପରି ତାଙ୍କ ଶରୀରକୁ ଆଶ୍ରୟ କରିଥିବା କର୍କୋଟକ ଇତ୍ୟାଦି ସାପ ସବୁ । ସେମାନେ 'ଚନ୍ଦ୍ରର ଅମୃତ ଧାରାମାନ ଆଶ୍ରେକରି ତପ୍ତ କାଞ୍ଚନ ନିର୍ଧୂମଅଗ୍ନି ସୂର୍ଯ୍ୟ ମାଣିକ୍ୟ ଓ ପଦ୍ମ କେଶର ପରି ଶୋଭା ପାଉଛନ୍ତି । ଶିବଙ୍କର ଜଟାରେ କ୍ରୀଡ଼ା କଲାବେଳେ ସେମାନଙ୍କ ଫଣାର ମଣି ସବୁ "ଆକାଶର ଅଗ୍ନି ଧାରାମାନପରି ଉଠି ବୃଷ୍ଟି କଲ ପ୍ରାୟେକ ଦିଶୁଅଛି । ଜଗତକୁ ଧ୍ୱଂସ କରିବାପାଇଁ ନୁହେଁ, ଆନନ୍ଦ ପ୍ରଦାନ କରିବା ପାଇଁ ଶିବଙ୍କର ଏ ପରିବର୍ତ୍ତନ ।

ସୂର୍ଯ୍ୟଙ୍କର ଯେଉଁ ତିନ ଆଖି ସୂର୍ଯ୍ୟ, ଚନ୍ଦ୍ର ଓ ବଡ଼ବାନଳ ପରି ପ୍ରଜ୍ଜ୍ୱଳିତ ହୋଇ ଉଠୁଥିଲା ଓ ଯେଉଁ ଚକ୍ଷୁର ତେଜରେ କାମଦେବ ଜଳି ପାଉଁଶ ହୋଇଯାଇଥିଲେ, ଯାହାର ତେଜ ଦେଖି ଦେବତାମାନେ ମଧ୍ୟ ଭୟ ଶଂକିତ ହୋଇ ଯାଉ ଥିଲେ, ସେହି ତିନ ଚକ୍ଷୁ ପାର୍ବତୀଙ୍କ ଅପୂର୍ବ ରମଣୀୟ ରୂପ ପାନରେ ଏତେ ତୃପ୍ତ ଯେ ସେ ସବୁର ପୂର୍ବ ଉଗ୍ରତା ଆଉ ନାହିଁ । ଶିବ ନିର୍ନିମେଷ ନୟନରେ ପାର୍ବତୀଙ୍କୁ ଚାହିଁ ରହିଛନ୍ତି । ଦୃତ ଶରଧ ଏହାକୁ ଠିକ୍ ଠଉରେଇ କରି କହିଛି ।"

"ତାହାର ମୁଖକୁ ଚାହିଁ ଚାହିଁ ସେ ସମାଧିମଗ୍ନେ ପୁରୁଷନନ୍ଦ ଚକ୍ଷୁଦେଇଅଛି, ମୋ କନ୍ୟା ତହିଁ । ସୂର୍ଯ୍ୟ ଚକ୍ଷୁ ଅଛି ଯୋଗଲଗ୍ନ ହୋଇ । ଅଗ୍ନି ଚକ୍ଷୁରେ କରି ଜଗତ ଯାକ ବ୍ୟାପିଅଛି ଅଚ୍ଛଦ ହୋଇ" (ପୃ-୧୧୩)

ଶିବଙ୍କ ପରିବାରର ଏହି ତୃପ୍ତ ପରିବେଶରୁ ମାନସକନ୍ୟା ବା ମୋହିନୀ କନ୍ୟାର ଜନ୍ମ । ଶିବ ଓ ପାର୍ବତୀଙ୍କର ସବୁ ସନ୍ତାନ ସ୍ୱାଭାବିକ ଭାବେ ପ୍ରସୂତ ହୋଇ ନାହାନ୍ତି । ଅପ୍ରାକୃତିକତା ହିଁ ସେମାନଙ୍କ ଜନ୍ମର ମୂଳକଥା । ପାର୍ବତୀଙ୍କ ଛେପରୁ ସ୍କନ୍ଦଙ୍କର ଜନ୍ମ । ଶିବଙ୍କସହ ସହବାସକରି ସ୍ନାନ କଲାବେଳେ ସେହି ଜଳରୁ ଗଣେଶଙ୍କର ସୃଷ୍ଟି । ପୁଣି ଅନ୍ୟ ପୁରାଣରେ ଶିବ ଓ ପାର୍ବତୀଙ୍କ ଶ୍ରମଘର୍ଷଣରୁ ଗଣେଶ ଜନ୍ମ ହେବା କୁହାଯାଇଛି । ଏମାନଙ୍କ ବ୍ୟତୀତ ଲୋକକଥାରେ ଶିବ ଓ ପାର୍ବତୀଙ୍କର ଆହୁରି ବହୁତ ସନ୍ତାନଥିବା କୁହାଯାଏ । ଶିବ ନଥିବା ବେଳେ ପାର୍ବତୀ ନିର୍ଜନତାର ବିଷାଦ ଦୂର କରିବା ପାଇଁ

ଏହିପରି ବହୁ ମାନସ କନ୍ୟା ସୃଷ୍ଟି କରି ସେମାନଙ୍କ ସହ ପଶା ଖେଳନ୍ତି ବା ସେମାନଙ୍କ ଦ୍ୱାରା ଅନ୍ୟ କୌଣସି କାମ କରାଇଥାଆନ୍ତି । ପୁରାଣ ସବୁରେ କିନ୍ତୁ ଏକଥା ନାହିଁ । ସାଧାରଣତଃ ଆଖିର ଲୁହ, ଦେହ ଝାଳ, ଲହୁ ଏପରିକି ଦେହର ମଳରୁ ଅପ୍ରାକୃତିକ ସନ୍ତାନ ସବୁ ଜାତ ହୋଇ ଦେବତାମାନଙ୍କର ଲୀଳା ଖେଳାରେ ସାହାଯ୍ୟ କରି-ଥାଆନ୍ତି । 'ବୃହଦ୍ଧର୍ମପୁରାଣ'ର 'ମାନସ କନ୍ୟା'ରେ ପୁରାଣର ପରଂପରା ଓ ଲୋକକଥାର ମିଶ୍ରିତ ରୂପଟିଏ ଦେଖିବାକୁ ମିଳେ । ପାର୍ବତୀଙ୍କ ସୃଷ୍ଟ ମାନସ କନ୍ୟା ପରେ ଲକ୍ଷ୍ମୀଙ୍କ ପାଳିତା କନ୍ୟାଭାବେ କୋଇଲାବତୀଙ୍କ ପୁରରେ ପ୍ରବେଶ କରେ ।

ଅଭିନବ ଚୈତନ୍ୟଙ୍କୁ ପରୀକ୍ଷା କରିବା ପାଇଁ ପାର୍ବତୀଙ୍କ ଦ୍ୱାରା ମୋହିନୀ କନ୍ୟାର ସୃଷ୍ଟି ହେବାପରେ କାମଦେବର ସହାୟତା କଥା କୁହାଯାଇଛି । ପୁରାଣରେ ଶିବ କାମ ଦେବର ସଂହାରକ, ଓ କାମର ଅନଙ୍ଗ ରୂପ ପ୍ରଦାୟକ ଭାବେ ବର୍ଣ୍ଣିତ ହୋଇ ଥିଲେ ହେଁ, ସବୁ ପୁରାଣରେ ଏକା କଥା କୁହାଯାଇ ନାହିଁ । ଶିବ-କାମଙ୍କୁ ଦଗ୍ଧ କରିଥିଲେହେଁ ତାଙ୍କ ମନ ଭିତରେ ଜାଗ୍ରତ ହୋଇଥିବା କାମଭାବକୁ ନିର୍ବାପିତ କରି ପାରି ନଥିଲେ । ବରଂ କାମକୁ ଦହନ କରିବା ଦ୍ୱାରା କାମ ଅଧିକ ଶକ୍ତିଶାଳୀ ହୋଇ ଯାଇ ପାର୍ବତୀଙ୍କ ଅଙ୍ଗ ପ୍ରତ୍ୟଙ୍ଗରେ (ବୃହଦ୍ଧର୍ମ ପୁରାଣ ପୃ-୬୩ – ୬୪) ଆଶ୍ରୟ ନେଇ ଥିଲା । ସେଥିପାଇଁ ଶିବ ପାର୍ବତୀଙ୍କୁ ଦେଖିବାକ୍ଷଣି ନିଜକୁ ଆଉ ସମ୍ଭାଳି ପାରି ନଥିଲେ ଓ ପାର୍ବତୀଙ୍କୁ ଉପଭୋଗ କରିବାପାଇଁ ଉତ୍କଣ୍ଠିତ ହୋଇଥିଲେ । ଶିବଙ୍କର ଏହି ଦୁର୍ଦଶା ଅଭିନବ ଚୈତନ୍ୟ ଚରିତରେ ରୂପାୟିତ । ଶିବ ଏକଥା ଭଲଭାବେ ଜାଣିଥିଲେ ଯେ କାମ ଦେବତା ଅମିତ ଶକ୍ତିଶାଳୀ । ତାଙ୍କ କବଳରୁ ସାଧାରଣ ମନୁଷ୍ୟଙ୍କ କଥା ଛାଡ, ବ୍ରହ୍ମା, ବିଷ୍ଣୁ, ଇନ୍ଦ୍ର ଅନ୍ୟାନ୍ୟ ଦେବତା ଏପରିକି ସେ ନିଜେ ମଧ୍ୟ ମୁକ୍ତି ପାଇ ନାହାନ୍ତି (ଶତରୁଦ୍ରସଂହିତା ୧୧ ୨) ଏକଥା ଜାଣି ମଧ୍ୟ ଅଭିନବ ଚୈତନ୍ୟଙ୍କୁ ପରୀକ୍ଷା କରିବାର ପ୍ରହସନ ଏକ ବିଡମ୍ବନା । ଶିବ ଏକଥା ମଧ୍ୟ ଥରେ ସ୍ୱୀକାର କରିଥିଲେ । ଶିବ ପୁରାଣ (୨, ୩, ୨୪)ରେ ଶିବ ଦେବତାମାନଙ୍କୁ ସମ୍ବୋଧନ କରି କହିଛନ୍ତି । ''ମୁଁ ଯଦି ବିଶ୍ୱର ସର୍ବଶ୍ରେଷ୍ଠ ସୁନ୍ଦରୀ ପାର୍ବତୀଙ୍କୁ ବିବାହ କରେ, ତା' ହେଲେ ସବୁ ଦେବତା ଓ ଋଷି କାମର ବଶୀଭୂତ ହୋଇ ଯିବେ ଓ ଧର୍ମ ପଥରୁ ବିଚ୍ୟୁତ ହେବେ । ଦେବୀଙ୍କୁ ବିବାହ କରିବା ପରେ ସେ ନିଶ୍ଚିତ ଭାବେ କାମଦେବତାଙ୍କୁ ପୁନର୍ଜୀବିତ କରିଦେବେ । ତେଣୁ ସମସ୍ତଙ୍କର ଉପକାର ପାଇଁ ମୁଁ କାମଦେବତାଙ୍କୁ ଦହନ କରି ଦେଇଛୁ । ତେବେବି ଯଦି ଆପଣମାନେ ଚାହୁଁଛନ୍ତି ତା' ହେଲେ ମୁଁ କାମନାର ବଶୀଭୂତ ନହୋଇ କେବଳ ସନ୍ତାନ ସୃଷ୍ଟି କରିବାପାଇଁ ହିଁ ପାର୍ବତୀଙ୍କୁ

ବିବାହ କରିବ ।" ଅଭିନବ ଚୈତନ୍ୟର ଚେତୋକ୍ତି ଶିବଙ୍କ ଏହି ଉକ୍ତିର ପ୍ରତିଧ୍ୱନି । ରୁଦ୍ର ସୁଧାନିଧିରେ ମଧ୍ୟ ସେ ରୂପସୀ ନାରୀର ସ୍ତନ କମଳକୁ 'ତ୍ର୍ୟମ୍ବକଙ୍କ' ନୀଳମୁଖ ବିଷ୍ଟ ଭାବେ ସ୍ତୁତି କଲାବେଳେ ଶଙ୍କର ରୂପେ ବର୍ଣ୍ଣନା କରନ୍ତି । ଅସମାପ୍ତ ଗ୍ରନ୍ଥର ବିସ୍ତୃତ ଭାଗରେ ରୁଦ୍ରସୁଧାନିଧିର ଦାର୍ଶନିକ ଭାବନାକୁ ଲେଖକ ପରିସ୍ଫୁଟ କରିବାପାଇଁ ସବୁବେଳେ ପ୍ରୟାସ କରିଛନ୍ତି । ତା'ର କାମ ଲାଳସା ହୁଏତ ଶେଷ ଭାଗରେ ଥାଇ ପାରେ କିନ୍ତୁ ଗ୍ରନ୍ଥରେ ଏହା ମୁଖ୍ୟ ପ୍ରତିପାଦ୍ୟ ବସ୍ତୁଥିବାପରି ଆଦୌ ଜଣା ଯାଏନାହିଁ । ପାର୍ବତୀଙ୍କ ନିତମ୍ବକୁ ଆଶ୍ରା କରି ବାସ କରୁଥିବା କାମ ଦେବ ତାର ଓ ସହଚରମାନଙ୍କ ସହ କ୍ଷଣିକ ପାଇଁ ଅଭିନବ ଚୈତନ୍ୟର ଚେତନା ଲୋପ କରି ଦେଇଥିଲେହେଁ, ପର-କ୍ଷଣରେ ଓ ପରବର୍ତ୍ତୀ ଜୀବନରେ ଶିବଙ୍କ ପରି ସେ ତ୍ୟାଗପୂତ ଜୀବନ ଯାପନ କରି ଧର୍ମର ସ୍ଥାପନା କରନ୍ତି । ଏହି ଦୃଷ୍ଟିରୁ ବିଚାର କଲେ ରୁଦ୍ରସୁଧାନିଧି ହେଉଛି ଶିବଙ୍କ ଯୋଗୀ ଓ ଭୋଗୀ ରୂପର ସମାହାର । ସାଧନାରେ ଅଚଳ ଓ ଅଟଳ ରହି ପାରିବାଭଳି ଜୀବନ ଯାପନ କରିବା ଏହାର ଆଦର୍ଶ ।

ଶୈବ ଧର୍ମର ରୂପ ଓ ବିରୂପର ମିଳନ ଏଥିରେ ପ୍ରତିଧ୍ୱନିତ । ପ୍ରେମିକାର ଅଭି-ସାରରେ ଭାରତୀୟମାନଙ୍କ ଏହି ଭାବନା ବିଭିନ୍ନ ଭାବେ ଦେଖିବାକୁ ମିଳେ । ରାତିରେ ଅଭିସାର କରିବାକୁ ଚାଲିବେଳେ ପ୍ରେମିକା ମେଘ ଅନ୍ଧାର, ବିଦ୍ୟୁତ୍‌ର ଚମକ, ସାପ, ଭୂତର ଭୟ, ଜଙ୍ଗଲର କର୍କଶ ଓ କଣ୍ଟକିତ ପଥକୁ ଭ୍ରୂକ୍ଷେପ ନକରି ପ୍ରେମିକ ସହ ମିଳିବାର ବର୍ଣ୍ଣନା ଭାରତୀୟ କବିମାନଙ୍କର ଏକ ଅସାଧାରଣ ଧର୍ମ । ରୁଦ୍ରସୁଧାନିଧିର ଆଧାରଭୂମି ଭାବେ ବ୍ୟବହୃତ ହୋଇଥିବା ଯୋଗ, ଦର୍ଶନ, ତନ୍ତ୍ର, ମନ୍ତ୍ର, ଶକ୍ତି ସାଧନା, ପାଣ୍ଡିତ୍ୟ ଓ ବ୍ୟାକରଣର କର୍କଶ ଆଲୋଚନା ରୁଦ୍ରରୂପରେ ନାୟକ ଓ ନାୟିକାର ମିଳନ-ସୁଧାନିଧି ସୃଷ୍ଟି କରିବା ପାଇଁ ଅଭିପ୍ରେତ ।

— ୦ —

# ରାସପଞ୍ଚାଧ୍ୟାୟର ଏକ ତାତ୍ତ୍ୱିକ ଦିଗ

• ଡକ୍‌ଟର ଆଶୁତୋଷ ପଟ୍ଟନାୟକ

ସମସ୍ତ ଋଷିମାନଙ୍କ ମଧ୍ୟରେ ପରାଶର ସୁତ କୃଷ୍ଣ ଦ୍ୱୈପାୟନ ବ୍ୟାସଦେବ ହେଉଛନ୍ତି ଅଗ୍ରଗଣ୍ୟ । ସେଥିପାଇଁ କୁହାଯାଇଥାଏ "ବ୍ୟାସାୟ ବିଷ୍ଣୁରୂପାୟ ବ୍ୟାସରୂପାୟ ବିଷ୍ଣବେ ।" ଏହାର କାରଣ ହେଉଛି ମନୁଷ୍ୟ ସମାଜର ସମସ୍ତ ସମସ୍ୟା ସମାଧାନର ପନ୍ଥା ନିର୍ଦ୍ଧାରଣ ତଥା ଆଧ୍ୟାତ୍ମିକ ଚେତନାର ସୁଷ୍ଠୁ ବିକାଶ ପାଇଁ ବ୍ୟାସଦେବଙ୍କ ରଚିତ ପୁରାଣ ସମୂହ ଏକାନ୍ତ ଉପାଦେୟ । ବେଦ ଓ ଉପନିଷଦ ଗୁଡ଼ିକର ଜଟିଳ ତତ୍ତ୍ୱ-ରାଜିକୁ ସରଳ ତଥା ସହଜଗ୍ରାହ୍ୟ ଭାବେ ଲୋକ ସମ୍ମୁଖରେ ଉପସ୍ଥାପନ କରିବାରେ ବ୍ୟାସ ଦେବଙ୍କର କୃତିତ୍ୱ ସର୍ବଦା ପ୍ରଶଂସ୍ୟ । ତାଙ୍କ ସମଗ୍ର ସାଧନାର ମୂଳଲକ୍ଷ୍ୟ ଥିଲା, ଅବ୍ରାହ୍ମଣ ଚଣ୍ଡାଳ, ସ୍ତ୍ରୀ, ବାଳକ, ବୃଦ୍ଧ, ନିର୍ବିଶେଷରେ ସମସ୍ତଙ୍କ ପାଇଁ ଭଗବତ ପ୍ରାପ୍ତିର ସହଜ ଏବଂ ସରଳମାର୍ଗ ଲୋକ ସମ୍ମୁଖରେ ଉପସ୍ଥାପନ କରିବା । ଧର୍ମାର୍ଥ-କାମ-ମୋକ୍ଷ ମାର୍ଗ ସୂଚକ ବିରାଟ ମହାଭାରତଗ୍ରନ୍ଥ ଓ ଅନ୍ୟାନ୍ୟ ପୁରାଣ ରଚନାପରେବି ବ୍ୟାସ-ଦେବ ଅତୃପ୍ତ ହୋଇଥିଲେ । ତାଙ୍କର ମନେ ହୋଇଥିଲା ତାଙ୍କର ଲକ୍ଷ୍ୟ ତଥାପି ଅପୂର୍ଣ୍ଣ ରହିଯାଇଛି । ସେଥିପାଇଁ ସେ ବିମର୍ଷମନା ହୋଇ ସରସ୍ୱତୀ ନଦୀ କୂଳରେ ଉପବେଶନ କରିଥିଲାବେଳେ, ନାରଦ ତାଙ୍କୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ଲୀଳା ରସ ସମନ୍ୱିତ ଗ୍ରନ୍ଥ ରଚନା କରିବାକୁ ଉପଦେଶ ଦେଇଥିଲେ । ଭଗବାନ୍‌ଙ୍କୁ ସହଜରେ ଲାଭ କରିବାର ପନ୍ଥା ହେଉଛି ତାଙ୍କର ମଧୁର ଲୀଳା ପଠନ, ଶ୍ରବଣ, ମନନ ଓ କୀର୍ତ୍ତନରେ ନିଜକୁ ନିମଜ୍ଜିତ କରି ଭଗବତ ପ୍ରେମରେ ଉଦ୍‌ବୁଦ୍ଧ ହେବା । ଶ୍ରୀମଦ୍ଭାଗବତରେ ଉଲ୍ଲେଖ ଅଛି—

ଇଦଂ ହି ପୁଂସସ୍ତପସଃ ଶ୍ରୁତସ୍ୟ ବା
ସ୍ୱିଷ୍ଟସ୍ୟ ସୂକ୍ତସ୍ୟ ଚ ବୁଦ୍ଧିଦତ୍ତୟୋଃ ।
ଅବିଚ୍ୟୁତୋଽର୍ଥଃ କବିଭିର୍ନିରୂପିତୋ
ଯଦୁତ୍ତମ ଶ୍ଳୋକ ଗୁଣାନୁବର୍ଣ୍ଣନମ୍ । ୧।୫।୨୨

ଅର୍ଥାତ୍ ତପସ୍ୟା, ସ୍ୱାଧ୍ୟାୟ, ବେଦାଧ୍ୟୟନ, ଯଜ୍ଞାନୁଷ୍ଠାନ, ଜ୍ଞାନ, ଦାନ ଆଦିର ଏକ ମାତ୍ର ପ୍ରୟୋଜନ ହେଉଛି- ପୁଣ୍ୟକୀର୍ତ୍ତି ଭଗବାନ୍ ଶ୍ରୀକୃଷ୍ଣଙ୍କରଗୁଣ ତଥା ଲୀଳା କୀର୍ତ୍ତନ କରିବା ।

ନାରଦଙ୍କ ଉପଦେଶ ଅନୁଯାୟୀ ବ୍ୟାସଦେବ ଭଗବାନ୍ ଶ୍ରୀକୃଷ୍ଣଙ୍କର ଲୀଳା ସମନ୍ୱିତ ଶ୍ରୀମଦ୍ଭାଗବତ ଗ୍ରନ୍ଥ ରଚନା କରିଥିଲେ । ଏହା ତାଙ୍କ ସାଧନା ଓ ଲକ୍ଷ୍ୟରେ ପୂର୍ଣ୍ଣତା ଆଣିଥିଲା । ତେଣୁ ଶ୍ରୀମଦ୍ଭାଗବତ ସମସ୍ତ ପୁରାଣମାନଙ୍କ ମଧ୍ୟରେ ଶୀର୍ଷସ୍ଥାନୀୟ ରୂପେ ପରିଗଣିତ ହୋଇଥାଏ ।

ଶ୍ରୀମଦ୍ଭାଗବତ ଭଗବାନ୍ ଶ୍ରୀକୃଷ୍ଣଙ୍କର ଲୀଳା ବର୍ଣ୍ଣନାରେ ଅପୂର୍ବ ରସସିକ୍ତ ! ମର୍ତ୍ତ୍ୟରେ ଶ୍ରୀକୃଷ୍ଣଙ୍କ ଲୀଳା ଦ୍ୱିବିଧ ପ୍ରକାଶିତ ହୋଇଥିଲା । ଗୋଟିଏ ହେଉଛି ଐଶ୍ୱର୍ଯ୍ୟଲୀଳା, ଅନ୍ୟଟି ମାଧୁର୍ଯ୍ୟ ଲୀଳା । ଅନ୍ୟାନ୍ୟ ଅବତାରଗଣଙ୍କ ଅପେକ୍ଷା ଶ୍ରୀକୃଷ୍ଣାବତାରର ବିଶେଷତ୍ୱ ହେଉଛି ମାଧୁର୍ଯ୍ୟଲୀଳାର ପ୍ରକାଶ । କାରଣ ଏହି ମାଧୁର୍ଯ୍ୟଲୀଳା ମଧ୍ୟରେ ଭଗବାନଙ୍କର ପ୍ରକୃତ ପ୍ରେମମୟ ରୂପର ପୂର୍ଣ୍ଣପ୍ରକାଶ ଘଟିଥିଲା । ସେ ଯେପରି ପ୍ରେମରେ ପରିପୂର୍ଣ୍ଣ, ପ୍ରେମବର୍ଷଣରେ ଅକୃପଣ ସେହିପରି ପ୍ରେମ ପାଇବାପାଇଁ ଅତୀବ ବ୍ୟାକୁଳ । ଏ ପ୍ରେମ କିନ୍ତୁ ତଥାକଥିତ ପ୍ରେମଠାରୁ ସଂପୂର୍ଣ୍ଣ ଭିନ୍ନ । ତାହାର ସ୍ୱରୂପ ହେଉଛି—

ଗୁଣ ରହିତଂ, କାମନାରହିତଂ, ପ୍ରତିକ୍ଷଣବର୍ଦ୍ଧଂ
ମାନମବିଚ୍ଛିନ୍ନଂ ସୂକ୍ଷ୍ମତର ମନୁଭବଂ ।

ବ୍ରଜପୁରର ଗୋପାଙ୍ଗନାଗଣ, ସେମାନଙ୍କ ଅନ୍ତର ପୋଷିତ ଏହି ପ୍ରେମଦ୍ୱାରା ଭଗବାନଙ୍କୁ ନିଜର କରିନେଇ ତାଙ୍କ ପ୍ରେମରେ ନିଜକୁ ଅବଗାହିତ କରିଥିଲେ । ଗୋପାଙ୍ଗନା ସମୂହ କେବଳ ମାତ୍ର ନିର୍ମଳ ପ୍ରେମଦ୍ୱାରା ଯେପରି ଅତି ସହଜରେ କୃଷ୍ଣ ସାନିଧ୍ୟ, କୃଷ୍ଣାନୁଗ୍ରହ, କୃଷ୍ଣସେବାଧିକାର ଓ କୃଷ୍ଣ ପ୍ରେମଲାଭ କରିଥିଲେ ତାହା କୌଣସି ଯୋଗୀ, ଋଷି ବା ଦେବତାଙ୍କ ଦ୍ୱାରା ସମ୍ଭବ ହୋଇ ପାରିନଥିଲା । ତେଣୁ ଭଗବତ୍ ପ୍ରାପ୍ତିର ଏହାହିଁ ହେଉଛି ପ୍ରକୃଷ୍ଟ ପନ୍ଥା । ସମଗ୍ର ଭାଗବତ ଗ୍ରନ୍ଥରେ କୃଷ୍ଣଲୀଳା ସମନ୍ୱିତ ଦଶମସ୍କନ୍ଧ ହେଉଛି ଅମୂଲ୍ୟ ଓ ବିଶେଷତଃବରେ ଗୋପଲୀଳାର ରାସକ୍ରୀଡ଼ା ଗର୍ଭିତ ପଞ୍ଚାଧ୍ୟାୟର ଗୁରୁତ୍ୱ ଅବର୍ଣ୍ଣନୀୟ । ଗୋଟିଏ ବାକ୍ୟରେ କହିବାକୁ ଗଲେ ରାସପଞ୍ଚାଧ୍ୟାୟ ହେଉଛି ଶ୍ରୀମଦ୍ଭାଗବତର ସାର ନିର୍ଯ୍ୟାସ ।

ପ୍ରଶ୍ନ ଉଠେ ଆଧ୍ୟାତ୍ମିକ ସାଧନା କ୍ଷେତ୍ରରେ ପ୍ରେମର ଏପରି ଗୁରୁତ୍ୱ କାହିଁକି ? ଗଭୀର ଅନୁଧ୍ୟାନ କଲେ ଦେଖାଯିବ, ପ୍ରାଣୀର ଜୀବନ ଯାହା ଆନନ୍ଦ କେନ୍ଦ୍ରିକ । ତାର ଚରମଲକ୍ଷ୍ୟ ଆନନ୍ଦକୁ ପୂର୍ଣ୍ଣମାତ୍ରାରେ ଉପଭୋଗକରିବା । ସେ ପଢେ, ଖେଳେ, ଖାଏ,ପିଏ, କଠିନ ପରିଶ୍ରମ କରେ, ଯୁଦ୍ଧ କରେ, କୃଚ୍ଛ୍ରସାଧ କରେ, ଯୋଗ, ଭୋଗ, ତ୍ୟାଗ ସବୁକିଛିକରେ କେବଳ ଆନନ୍ଦ ପାଇଁ । ଆନନ୍ଦ ଲାଭ ପାଇଁ ସେ ଯେଉଁ କାର୍ଯ୍ୟ, ବସ୍ତୁ ବା ପ୍ରାଣୀ ସହିତ ଭାବ ସଂପର୍କ ସ୍ଥାପନ କରେ ତାହାକୁ ଆମେ କହୁ ଭଲ ପାଇବା, ଯାହାର ଅନ୍ୟନାମ ପ୍ରେମ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ମନୁଷ୍ୟ ଆନନ୍ଦର ଅନ୍ୱେଷଣ କରିଚାଲିଛି ଓ ସେଥିପାଇଁ ଭାବସଂପର୍କ ବା ପ୍ରେମ ସ୍ଥାପନ କରିଚାଲିଛି । କିନ୍ତୁ ତାର ଆନନ୍ଦଲାଭ ଓ ପ୍ରେମ ଏ ଉଭୟ ପୂର୍ଣ୍ଣତାଲାଭ କରିପାରୁନାହିଁ । ଏହାର କାରଣ କଣ ? ।କାରଣ ହେଉଛି ସେ ଯେଉଁ ଆନନ୍ଦଲାଭ କରୁଛି ତାହା ଇନ୍ଦ୍ରିୟ ଗ୍ରାହ୍ୟ ଆନନ୍ଦ ମାତ୍ର । ଇନ୍ଦ୍ରିୟ ଓ ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁଗୁଡ଼ିକ କ୍ଷଣଭଙ୍ଗୁର ତଥା ପରିବର୍ତ୍ତନ-ଶୀଳ ହେତୁ ମନୁଷ୍ୟର ଆନନ୍ଦ ଅପୂର୍ଣ୍ଣ ଓ ଅସ୍ଥାୟୀ ହେବାକୁ ବାଧ୍ୟ । ସେଥିପାଇଁ ସେ ଯାହା ସହିତ ପ୍ରେମ ସଂପର୍କ ସ୍ଥାପନ କରୁଛି ତାହାମଧ୍ୟ ପ୍ରକୃତ ପ୍ରେମ ନହୋଇ ଆଭାସ ପ୍ରେମରେ ପର୍ଯ୍ୟବସିତ ହେଉଛି । ଏହାର ଅନ୍ୟନାମ ଜାଗତିକ ପ୍ରେମ ବା ପ୍ରାକୃତ ପ୍ରେମ ।

ଆନନ୍ଦ ମନୁଷ୍ୟର ଚିର ଇପ୍ସିତ । କାରଣ ସେ ଆନନ୍ଦରୁ ଜାତ, ଆନନ୍ଦରେ ବର୍ଦ୍ଧିତ ଓ ଆନନ୍ଦରେ ତାର ବିଲୟ । ଯେଉଁ ମୂଳଉତ୍ସ ଆନନ୍ଦରୁ ସେ ଆସିଛି, ସେହି ମୂଳଉତ୍ସ ସହିତ ଯୋଗସୂତ୍ର ସ୍ଥାପିତ ନହେଲ ଏଯାଏଁ ତାର ଆନନ୍ଦ ପ୍ରାପ୍ତିକୁ ଆନନ୍ଦ ପ୍ରାପ୍ତି କୁହାଯାଇ ନପାରେ । ଆନନ୍ଦର ମୂଳଉତ୍ସ ହେଉଛନ୍ତି ସଚ୍ଚିଦାନନ୍ଦ ଭଗବାନ୍ । ଭଗବାନ୍ ହେଉଛନ୍ତି ସତ୍ ଚିତ୍ ଓ ଆନନ୍ଦର ଆଧାର । ଆନନ୍ଦ ତାଙ୍କର ସ୍ୱରୂପ ଶକ୍ତି । ଆନନ୍ଦର ସାର ହେଉଛି ଭାବ ଓ ଭାବର ସାର ମହାଭାବ । ଆନନ୍ଦସ୍ୱରୂପ ଆନନ୍ଦରମୂଳଉତ୍ସ ଭଗବାନଙ୍କୁ ଲାଭକରିବାପାଇଁ ଭାବ ଓ ମହାଭାବ ଏକାନ୍ତ ଆବଶ୍ୟକ । ଭାବ ଓ ମହାଭାବ କେବଳ ଅପ୍ରାକୃତ ପ୍ରେମ ମଧ୍ୟରେ ସମ୍ଭବ । ଅପ୍ରାକୃତ ପ୍ରେମ ସାହାଯ୍ୟରେ ଆନନ୍ଦର ମୂଳଉତ୍ସ ସଚ୍ଚିଦାନନ୍ଦଙ୍କୁ ଲାଭକରିବାରେ ମଣିଷର ଜନ୍ମ ଜନ୍ମର ସାଧନା ଓ ଆକାଙ୍କ୍ଷାରେ ପୂର୍ଣ୍ଣତା ଆସିଥାଏ । କାରଣ ତାର ଆନନ୍ଦ ଅନ୍ୱେଷଣର ପରି ସମାପ୍ତି ସେଇଠି ଘଟେ । ସମସ୍ତ ବାସନା କାମନା ଆପେ ଆପେ ଅନ୍ତର୍ହିତ ହୁଏ । ବ୍ରଜପୁରର ଗୋପାଙ୍ଗନାଗଣ ଜପ, ତପ, ଜ୍ଞାନ, ଯୋଗ, ଯାଗ ପ୍ରଭୃତିର

ଅବଲମ୍ବନ ନକରି କେବଳ ଅପ୍ରାକୃତ ପ୍ରେମଦ୍ୱାରା ସଚ୍ଚିଦାନନ୍ଦ ଭଗବାନ୍ ଶ୍ରୀକୃଷ୍ଣଙ୍କୁ ବଶୀଭୂତ କରିଥିଲେ ଓ ତାଙ୍କର ସ୍ୱରୂପ ମାଧୁର୍ଯ୍ୟକୁ ଆସ୍ୱାଦନ କରିଥିଲେ । ତଦ୍ୱାରା ସେମାନେ ପ୍ରକୃତ ଆନନ୍ଦର ଅଧିକାରିଣୀ ହୋଇ ଜାଗତିକ ଆନନ୍ଦକୁ ତୁଚ୍ଛକରି ଦେଇଥିଲେ । ବ୍ୟାସଦେବ ଶ୍ରୀମଦ୍ଭାଗବତରେ ସର୍ବସାଧାରଣଙ୍କ ପାଇଁ ଈଶ୍ୱରପ୍ରାପ୍ତିର ଏହି ପ୍ରକୃତ ଓ ପ୍ରକୃଷ୍ଟ ସାଧନା ମାର୍ଗକୁ ଉପସ୍ଥାପନା କରି ଶାନ୍ତିଲାଭ କରିଥିଲେ । ତାଙ୍କ ଲକ୍ଷ୍ୟରେ ପୂର୍ଣ୍ଣତା ଆସିଥିଲା ।

ଶ୍ରୀମଦ୍ଭାଗବତର ରାସ ପଞ୍ଚାଧ୍ୟାୟରେ ଗୋପାଙ୍ଗନା ଓ ଆନନ୍ଦ ସ୍ୱରୂପ ଶ୍ରୀକୃଷ୍ଣ ରାସଲୀଳା ବର୍ଣ୍ଣନ ଅବକାଶରେ ଏହି ଅପ୍ରାକୃତ ପ୍ରେମ ଆନନ୍ଦ ସ୍ୱରୂପ ଶ୍ରୀକୃଷ୍ଣ ଓ ଆତ୍ମା ପରମାତ୍ମାର ରମଣ ଲୀଳାର ଗୂଢତତ୍ତ୍ୱ ଲୌକିକ ଖାତରେ ଉପସ୍ଥାପନା କରାଯାଇଛି । ସେଥିପାଇଁ ରାସପଞ୍ଚାଧ୍ୟାୟର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ ।

ରାସର ଅର୍ଥ କଣ ? ରସ୍ୟତେ ଇତି ରାସଃ । ରାସର ଅର୍ଥ ସମ୍ବନ୍ଧରେ ଶ୍ରୀମଦ୍ଭାଗବତର ସୁପ୍ରସିଦ୍ଧ ଟୀକାକାର ଶ୍ରୀଧର ସ୍ୱାମୀ ତାଙ୍କ ଟୀକାରେ ଲେଖିଛନ୍ତି— "ରାସୋନାମ ବହୁ ନର୍ତ୍ତକୀଯୁକ୍ତୋନୃତ୍ୟ ବିଶେଷଃ" ଶ୍ରୀ ଜୀବଗୋସ୍ୱାମୀ ରାସଲୀଳାର ଅନୁଷ୍ଠାନ ସଂପର୍କରେ ଲେଖିଛନ୍ତି—

ନଟୈ ଗୃହୀତ କଣ୍ଠୀନାଂ ଅନ୍ୟୋନ୍ୟାତ୍ତକରଶ୍ରିୟାମ୍
ନର୍ତ୍ତକୀନାଂ ଭବେଦ୍ରାସେ ମଣ୍ଡଳୀଭୂୟନର୍ତ୍ତନମ୍ ।

ଅର୍ଥାତ— ନର୍ତ୍ତକୀଯୁଗ୍ମ ସମ୍ବନ୍ଧ କଣ୍ଠକୁ ହାତରେ ଧରି ନର୍ତ୍ତକୀଗଣଙ୍କ ସହିତ ମଣ୍ଡଳାକାରରେ ଯେଉଁ ନୃତ୍ୟକରନ୍ତି ତାହାର ନାମ ରାସ । ଶ୍ରୀମଦ୍ଭାଗବତରେ ରାସୋତ୍ସବର ବର୍ଣ୍ଣନା ଦିଆଯାଇ କୁହାଯାଇଛି—

ରାସୋତ୍ସବଃ ସମ୍ପ୍ରବୃତ୍ତୋ ଗୋପୀମଣ୍ଡଳ ମଣ୍ଡିତଃ
ଯୋଗେଶ୍ୱରେଣ କୃଷ୍ଣେନ ତାସାଂମଧ୍ୟେ ଦ୍ୱୟୋର୍ଦ୍ୱୟୋଃ
ପ୍ରବିଷ୍ଟେନ ଗୃହୀତାନାଂ କଣ୍ଠେ ସ୍ୱନିକଟଂସ୍ତ୍ରିୟଃ

ମୋଟାମୋଟି ଭାବେ, ଶରତଋତୁର ପୂର୍ଣ୍ଣିମାରାତ୍ରିରେ ଭଗବାନ ଶ୍ରୀକୃଷ୍ଣ ଗୋପାଙ୍ଗନାମାନଙ୍କ ସହିତ ବୃନ୍ଦାବନରେ ହାସ୍ୟ, କୌତୁକ, ନୃତ୍ୟ,ଗୀତାଦି ସହିତ ଯେଉଁ ରହସ୍ୟପୂର୍ଣ୍ଣ କେଳି କରିଥିଲେ ତାହାରନାମ ରାସଲୀଳା । ଉକ୍ତ ରାସଲୀଳା କାଳରେ ସେ ଗୋପାଙ୍ଗନା

ମାନଙ୍କର କୁଚ ସ୍ପର୍ଶ କରି ଆଲିଙ୍ଗନ, ଚୁମ୍ବନାଦି ଦ୍ୱାରା ସେମାନଙ୍କର କାମଭାବ ଉଦ୍ରେକ କରିଥିବାର ବର୍ଣ୍ଣନା ମଧ୍ୟ ରହିଛି । ଶ୍ରୀକୃଷ୍ଣଙ୍କର ପରନାରୀ ପ୍ରତି ଏ ଧରଣର ଆଚରଣ ଅନେକ ସମାଲୋଚକଙ୍କୁ ଖୋରାକ ଯୋଗାଇ ଥାଏ । ଏଥିରେ ଅସ୍ୱାଭାବିକତା ମଧ୍ୟ ନାହିଁ । କାରଣ ପରୀକ୍ଷିତ ମହାରାଜଙ୍କ ମନରେ ମଧ୍ୟ ଶ୍ରୀକୃଷ୍ଣଙ୍କର ଆଚାର ସଂପର୍କରେ ସନ୍ଦେହ ଉଦ୍ରେକ ହୋଇଥିଲା ଏବଂ ଶୁକଦେବଙ୍କୁ ପରୀକ୍ଷିତଙ୍କର ସନ୍ଦେହ ଦୂର କରିବାକୁ ପଡ଼ିଥିଲା ।

ଯେଉଁମାନେ ଭଗବାନ ଶ୍ରୀକୃଷ୍ଣଙ୍କ ଅଲୌକିକଲୀଳାର ରହସ୍ୟ ଅନୁଭବ କରିବାକୁ ବିମୁଖ, ଯେଉଁମାନେ ରାସପଞ୍ଚାଧ୍ୟାୟର ପ୍ରତ୍ୟେକ ଶ୍ଳୋକର କର୍ମାର୍ଥକୁ ଅନୁଧ୍ୟାନ କରିବାକୁ ସଚେଷ୍ଟ ନୁହଁନ୍ତି, ସର୍ବୋପରି ଯେଉଁମାନଙ୍କର ବାସ୍ତବ ଦୃଷ୍ଟିଭଙ୍ଗୀ ଆଦୌ ନାହିଁ, ସେହିମାନେହିଁ କେବଳ ରାସଲୀଳାରେ ଗୋପାଙ୍ଗନା ଓ ଶ୍ରୀକୃଷ୍ଣଙ୍କର ଦୈହିକ ସମ୍ଭୋଗ ଚିତ୍ରକୁ ମନ ଭିତରେ ସ୍ଥାନ ଦେଇଥାଆନ୍ତି ।

ପ୍ରଥମେ ବାସ୍ତବ ଦୃଷ୍ଟିକୋଣରୁ ବିଚାର କରାଯାଉ । ଶ୍ରୀକୃଷ୍ଣ ଗୋପାଙ୍ଗନାଙ୍କ ସହିତ ରାସଲୀଳା କଲାବେଳେ ତାଙ୍କର ବୟସ ମାତ୍ର ୧୦ବର୍ଷ ଥିଲା । ସେ ସେତେବେଳକୁ ପୌଗଣ୍ଡ ଅବସ୍ଥା ଅତିକ୍ରମକରି କୈଶୋରରେ ପଦାର୍ପଣ ମାତ୍ର କରୁଥିଲେ । ଏହି ବୟସରେ କୌଣସି ପୁରୁଷର କେବେ ଦୈହିକ ସମ୍ଭୋଗ ବିଷୟରେ ଜ୍ଞାନ ନଥାଏ ବା ସମ୍ଭୋଗ କରିବାର ଶକ୍ତି ମଧ୍ୟ ନଥାଏ । ତା ଛଡ଼ା ଶ୍ରୀକୃଷ୍ଣଙ୍କର ବୟସ ତୁଳନାରେ ଗୋପୀମାନେ ଯଥେଷ୍ଟ ବୟସ୍କା ଥିଲେ । ସେମାନଙ୍କ ଭିତରୁ କେହି କେହି ଯୁବତୀ, କେହି କେହି ପ୍ରୌଢ଼ବତୀ ଥିଲେ । ଏଭଳି ଅବସ୍ଥାରେ ଶ୍ରୀକୃଷ୍ଣ ଓ ଗୋପାଙ୍ଗନାଙ୍କର କାମ ସମ୍ଭୋଗ ବିଷୟ ଚିନ୍ତା କରିବା ଏକ ଉଦ୍ଭଟ କଥାଛଡ଼ା ଆଉକଣ ହୋଇ ପାରେ ?

ଦ୍ୱିତୀୟରେ ରାସପଞ୍ଚାଧ୍ୟାୟର ବକ୍ତା ଓ ଶ୍ରୋତାଃ କଥା ବିଚାର କରାଯାଉ । ବକ୍ତା ହେଉଛନ୍ତି ଆଜନ୍ମ ବ୍ରହ୍ମଚାରୀ ଶୁକଦେବ । ଜନ୍ମ ସମୟରେ ମାତ୍ର ଯୋନି ସହିତ ନିଜ ଲିଙ୍ଗର ସଂଯୋଗ ହେଲେ ପରଦାର ହରଣ ତଥା ମାତୃହରଣ ପାପରେ ଭାଗୀ ହେବା ଭୟରେ ଶୁକଦେବ କାଷ୍ଠାପିଣ୍ଡ ଜନ୍ମଲଭ କରିଥିବାର ବର୍ଣ୍ଣନା ପୁରାଣରେ ରହିଛି । ତାଛଡ଼ା ଜନ୍ମ ହେବାକ୍ଷଣି ସେ ସଂସାର ବିରାଗୀ ହୋଇ ପଳାୟନ କରୁଥିବା ସମୟରେ ଜଳକ୍ରୀଡ଼ା କରି ଉଲଗ୍ନ ଥିବା ଦେବକନ୍ୟାମାନଙ୍କ ସନ୍ଦର୍ଶନରେ ତାଙ୍କ

ମନରେ ସାମାନ୍ୟ ବିକାର ମଧ୍ୟ ଜନ୍ମ ହୋଇ ନଥିଲା । ଯଦି ରାସଲୀଳା ଶ୍ରୀକୃଷ୍ଣ ଓ ଗୋପାଙ୍ଗନାଙ୍କର ଦୈହିକ ସମ୍ଭୋଗ ମୂଳକ ହୋଇଥାଆନ୍ତା ତେବେ ଗୃହ, ଦାର-ବିବର୍ଜି, ପର ଦାର ହରଣ ପାପ ବିମୁଖ, ଆଜନ୍ମ ବ୍ରହ୍ମଚର୍ଯ୍ୟ, ସର୍ବଦା ବ୍ରହ୍ମଚିନ୍ତନାମଗ୍ନ ଶୁକଦେବଙ୍କ ମୁଖରେ ତାହା ଆଦୌ ବର୍ଣ୍ଣିତ ହୋଇ ନଥାନ୍ତା । ସେହିପରି ରାସପଞ୍ଚାଧ୍ୟାୟର ଶ୍ରୋତା ହେଉଛନ୍ତି ମୁକ୍ତିକାମୀ ପରୀକ୍ଷିତ ମହାରାଜ । ଗୋଟିଏ ସପ୍ତାହପରେ ନିଶ୍ଚିତ ମୃତ୍ୟୁ ବରଣ କରୁଥିବା ପରୀକ୍ଷିତଙ୍କୁ ଅଳ୍ପ ସମୟ ମଧ୍ୟରେ ବ୍ରହ୍ମଜ୍ଞାନ ସଚେତନ କରାଇବାଥିଲା ମଙ୍ଗଳକାମୀ ଶୁକଦେବଙ୍କର ଲକ୍ଷ୍ୟ । ରାସଲୀଳା ଯଦି କେବଳ ସମ୍ଭୋଗ ମୁଖର ହୋଇଥାଆନ୍ତା, ତେବେ ସେଭଳି ଅପ୍ରାସଙ୍ଗିକ କାମଭାବନା ଉଦ୍ରେକକାରୀ ପ୍ରସଙ୍ଗର ଅବତାରଣା ଶୁକଦେବ କାହିଁକି କରିଥାଆନ୍ତେ ?

ବର୍ତ୍ତମାନ ଶ୍ରୀମଦ୍ଭାଗବତର ରାସପଞ୍ଚାଧ୍ୟାୟରେ ପ୍ରଦତ୍ତ ଗୂଢ଼ାର୍ଥବ୍ୟଞ୍ଜକ ଶ୍ଲୋକକୁ ବିଚାରକୁ ନିଆଯାଉ । ରାସପଞ୍ଚାଧ୍ୟାୟରେ ଉଲ୍ଲେଖ ଅଛି—

ଇତି ବିକ୍ଳବିତଂ ତାସାଂ ଶ୍ରୁତ୍ୱା ଯୋଗେଶ୍ୱରେଶ୍ୱରଃ
ପ୍ରହସ୍ୟ ସଦୟଂ ଗୋପୀରାତ୍ମାରାମୋଽପ୍ୟରୀରମତ୍ ।
(୧୦ମସ୍କନ୍ଧ ୨୯ । ୪୨)

ଏହାର ଅର୍ଥ ହେଉଛି— ଗୋପୀମାନଙ୍କର ଏହି ପ୍ରକାର ଶରଣାଗତି ସୂଚକ ପ୍ରାର୍ଥନା ଶୁଣି, ପ୍ରତ୍ୟେକ ଆତ୍ମାରେ ରମଣକାରୀ ଯୋଗେଶ୍ୱରେଶ୍ୱର ଶ୍ରୀ ଭଗବାନ ଗୋପୀଙ୍କ ସହିତ ଆତ୍ମରମଣଲୀଳା କରିଥିଲେ । ସୁତରାଂ ଏହାସ୍ପଷ୍ଟ ଯେ କୃଷ୍ଣ ନିଜକୁ ଅନେକ କୃଷ୍ଣରେ ପରିଣତ କରି ପ୍ରତ୍ୟେକ ଗୋପୀଙ୍କ ସହିତ ମିଳିତ ହୋଇ ଯେଉଁ ରାସ-ଲୀଳା କରିଥିଲେ ତାହା କୌଣସି ମତେ ଦୈହିକ ସମ୍ଭୋଗ ଦ୍ୟୋତକ ନୁହେଁ । ବାହ୍ୟ ଦୃଷ୍ଟିରୁ ତାହା ଦେହ ମିଳନ ସଦୃଶ ପ୍ରତୀୟମାନ ହେଉଥିଲେ ସୁଦ୍ଧା, ତାହା ବାସ୍ତବରେ ଥିଲା ଆତ୍ମା ପରମାତ୍ମାର ମିଳନଲୀଳା ବା ଶ୍ରୀକୃଷ୍ଣଙ୍କର ଆତ୍ମରମଣଲୀଳା । ସେଥିପାଇଁ ଶ୍ରୀମଦ୍ଭାଗବତର ସୁବିଖ୍ୟାତ ଟୀକାକାର ଶ୍ରୀଧର ସ୍ୱାମୀ ସ୍ପଷ୍ଟକରିଦେଇ ଲେଖିଛନ୍ତି— ଶୃଙ୍ଗାର ରସ କଥୋପଦେଶେନ ବିଶେଷତଃ ନିବୃତ୍ତିପରେୟଂ ପଞ୍ଚାଧ୍ୟାୟୀ- ଅର୍ଥାତ୍ ଶୃଙ୍ଗାରରସ ବର୍ଣ୍ଣନାଛଳରେ ନିବୃତ୍ତିପର ରାସ ପଞ୍ଚାଧ୍ୟାୟୀ ବର୍ଣ୍ଣିତ ହେଲା । ଭଗବାନ୍ ଶ୍ରୀକୃଷ୍ଣଙ୍କ ରାସଲୀଳାର ରହସ୍ୟ ହୃଦୟଙ୍ଗମ କରିବା ସହଜ ସାଧ୍ୟ ବ୍ୟାପାର ନୁହେଁ । ସେ ରାସଲୀଳା କରିବା ସମୟରେ ଶୃଙ୍ଗାର ରସୋଦ୍ରେକକାରୀ

ପରିବେଶ ସୃଷ୍ଟି କରିଥିଲେ ମଧ୍ୟ ଯୌନ ସମ୍ଭୋଗରେ ଯୁକ୍ତ ନହୋଇ କାମଦେବର ପ୍ରଭାବକୁ ପ୍ରତିହତ କରିବା ବା ପ୍ରକାରାନ୍ତରେ କାମକୁ ପରାଜିତ କରିବା ତାଙ୍କର ଉଦ୍ଦେଶ୍ୟଥିଲା । କାମୋଦ୍ଦୀପକ ପରିବେଶ ଓ କାମିନୀ ସାନ୍ନିଧ୍ୟରୁ ନିଜକୁ ଦୂରେଇ ରଖି କାମଦେବଙ୍କୁ ଜୟକରିବାରେ ପୌରୁଷ ନାହିଁ । ପୌରୁଷ ଅଛି କମୋଦ୍ଦୀପକ ପରିବେଶ ଓ କାମିନୀ ସଂସ୍ପର୍ଶ ସତ୍ତ୍ୱେ କାମପ୍ରଭାବକୁ ପରାହତ କରିବାରେ । ଭୋଗରୁ ଦୂରରେ ରହି ତ୍ୟାଗର ପରାକାଷ୍ଠାଦେଖାଇବାଅପେକ୍ଷା ଭୋଗମଧ୍ୟରେ ରହି ତ୍ୟାଗର ଉଦ୍ଭାବନା ଧାରଣ କରିବାରେ କୃତିତ୍ୱ ଅଛି, ସାଧନାରେ ଅଦ୍ଭୁତ ସିଦ୍ଧିର ସ୍ୱାକ୍ଷର ଅଛି ।

ଶ୍ରୀକୃଷ୍ଣ ଅବତାରର ତାହା ଏକ ବୈଶିଷ୍ଟ୍ୟ । ଜନ୍ମରୁ ମର୍ତ୍ତ୍ୟଲୀଳା ଶେଷପର୍ଯ୍ୟନ୍ତ ସେ ଦୁଷ୍ଟବଧ, ଯୁଦ୍ଧ, ରାଜନୀତି, କୂଟନୀତି ସହିତ ଓତପ୍ରୋତ ଭାବେ ସଂପୃକ୍ତଥିଲେ ମଧ୍ୟ ରାଜ ସିଂହାସନ ଅଧିକାର କରିବାର ଇଚ୍ଛା ପୋଷଣ କରିନାହାନ୍ତି । ସଂପୂର୍ଣ୍ଣ ସଫଳତାର ସହ ବିରାଟ ମହାଭାରତ ପରିଚାଳନା ଓ ପାଣ୍ଡବମାନଙ୍କର ବିଜୟ ତାଙ୍କର କୂଟନୀତି ଯୋଗେ ସମ୍ଭବ ହୋଇଥିଲେ ସୁଦ୍ଧା ସେ ଯୋଦ୍ଧା ବା କୂଟନୀତିଜ୍ଞର ଗୌରବ ନନେଇ ସାରଥିର ଭୂମିକାରେ ଅବତୀର୍ଣ୍ଣ ହୋଇଛନ୍ତି । ସବୁଥିରେ ସଂପୃକ୍ତ ଥାଇ ସେ ସଂପୂର୍ଣ୍ଣ ଭାବରେ ସବୁଥିରେ ନିର୍ଲିପ୍ତ । ଏହା ହେଉଛି ତାଙ୍କ ଚରିତ୍ରର ବିଶେଷତ୍ୱ । ଶ୍ରୀମଦ୍ଭା-ଗବତ ଗୀତାରେ ସେ ନିଜ ସଂପର୍କରେ ଯାହା କହିଛନ୍ତି— "ନ ମାଂକର୍ମାଣି ଲିମ୍ପନ୍ତି ନମେକର୍ମଫଳେ ସ୍ପୃହା" ତାହାହିଁ ଯଥାର୍ଥ ।

ଯେଉଁ ମାନେ ଭଗବାନଙ୍କ ପାଖରେ ପୂର୍ଣ୍ଣ ଆତ୍ମସମର୍ପଣ କରି ଭଗବାନଙ୍କୁ ଅନ୍ତରରେ ସମସ୍ତ ପ୍ରେମ ନିବେଦନ କରି ପାରନ୍ତି, ଯେଉଁମାନେ ଜାଗତିକ ରୂପପାଇଁ କାମପିପାସାକୁ ସର୍ବ ସୌନ୍ଦର୍ଯ୍ୟର ଆଧାର ଭଗବାନଙ୍କଠାରେ ଠୂଳୀଭୂତ କରିପାରନ୍ତି । ସେହିମାନେହିଁ ପ୍ରକୃତରେ କାମ ବିଜୟୀ ହୋଇ ପ୍ରକୃତ ପ୍ରେମ, ଆନନ୍ଦ ଓ ସୌନ୍ଦର୍ଯ୍ୟର ରସକୁ ଆସ୍ୱାଦନକରିପାରନ୍ତି, ଏହାହିଁ ରାସଲୀଳାର ତାତ୍ପର୍ଯ୍ୟ । କାମ ବିଜୟୀ, ମଦନ ମୋହନ ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ଓ ଅନୁଗ୍ରହ କେବଳ କାମନାଗ୍ନିକୁ ପ୍ରଶମିତକରି ମୁକ୍ତଦେଇ ପାରେ ଏହାହିଁଥିଲା ରାସପଞ୍ଚାଧ୍ୟାୟର ବର୍ଣ୍ଣନା ଅବକାଶରେ ବ୍ୟାସଦେବଙ୍କ ବକ୍ତବ୍ୟ ।

ରାସପଞ୍ଚାଧ୍ୟାୟର ଆଉ ଏକ ତାତ୍ତ୍ୱିକ ଦିଗ ମଧ୍ୟ ସେଥିରୁ ସୂଚିତ ହୋଇଥାଏ । ଏହାର ଊନବିଂଶ ଅଧ୍ୟାୟର ୩୯ରୁ ୪୧.୪୩ ଶ୍ଳୋକରେ ଥିବା ଗୋପୀମାନଙ୍କର ଉକ୍ତି ଅନୁଧ୍ୟାନ ଯୋଗ୍ୟ । ଉକ୍ତ ଶ୍ଳୋକମାନଙ୍କରେ ଗୋପୀଗଣ ଶ୍ରୀକୃଷ୍ଣଙ୍କୁ ଇଶ ଓ ଇଶ୍ୱର ରୂପେ ସମ୍ବୋଧନ କରି କହିଛନ୍ତି—

"ଆମେମାନେ ସଂସାର ସମ୍ବନ୍ଧୀ ବିଷୟକୁ ତ୍ୟାଗ କରି, ମୁକ୍ତିକାମୀ ହୋଇ ଆପଣଙ୍କ ଚରଣ କମଳ ସେବାକରିବାକୁ ଆସିଛୁ । କାରଣ ଆପଣ ସଚରାଚର ସମସ୍ତଙ୍କର ପରମ ଅଧିଷ୍ଠାନ, ଲକ୍ଷ୍ମୀପତି ଏବଂ ପରମମିତ୍ର, ଆତ୍ମା ଅଟନ୍ତି ଏବଂ ଆପଣଙ୍କ ସେବାରେ ସମସ୍ତ ସେବା ଓ ସମସ୍ତ ଧର୍ମ ପାଳନ ହୋଇ ଥାଏ ।"

ଏଥିରୁ ଏହା ସ୍ପଷ୍ଟସୂଚିତ ହେଉଛି, ଗୋପୀମାନଙ୍କର କୃଷ୍ଣଙ୍କ ସହିତ ଯୌନମିଳନର ଲାଳସା ଆଦୌନଥିଲା । ସେମାନେ ସମସ୍ତ ପ୍ରକାର ବିଷୟ କାମନା ତ୍ୟାଗକରି, ମୁକ୍ତି ପ୍ରୟାସୀ ହୋଇ ଶ୍ରୀକୃଷ୍ଣଙ୍କର ଚରଣ ସେବା ଏବଂ ତଦ୍ଦ୍ୱାରା ପ୍ରକୃତ ଧର୍ମାଚରଣ କରିବାକୁ ଆସିଥିଲେ ।

ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମାଶୁଚଃ ।।
ଏହା ଶ୍ରୀମଦ୍ଭାଗବତ୍ ଗୀତାର ପ୍ରତିଧ୍ୱନି ।

ଗୋପୀମାନେ, ସ୍ୱାମୀ, ଶାଶୂ, ଶ୍ୱଶୁରଙ୍କର ସେବା, ସନ୍ତାନ ପାଳନ, ଗୃହକର୍ମ ଆଦି ଯାବତୀୟ ନାରୀଧର୍ମକୁ ପରିତ୍ୟାଗ କରି ଏକାନ୍ତଭାବରେ ଶ୍ରୀକୃଷ୍ଣଙ୍କର ଶରଣାପନ୍ନ ହୋଇଥିଲେ ଏବଂ ଏହାଦ୍ୱାରା ଲୌକିକ ବିଚାର ଦୃଷ୍ଟିରୁ ଯେଉଁ କୁଳଟା ଦୋଷରେ ସେମାନେ ଗ୍ରସ୍ତ ହେବେ, ସେଥିରୁ ଶ୍ରୀକୃଷ୍ଣ ଯେ ସେମାନଙ୍କୁ ମୁକ୍ତ କରିବେ ଏହି ଦୃଢ଼ ବିଶ୍ୱାସ ସେମାନଙ୍କଠାରେ ଥିଲା । ବାସ୍ତବରେ ତାହାହିଁ ହୋଇ ଥିଲା । ରାସ ପଞ୍ଚାଧ୍ୟାୟର ଶେଷ ଅଧ୍ୟାୟ (୩୩ ଅଧ୍ୟାୟ)ରେ ଉଲ୍ଲେଖ ଅଛି, ଯେଉଁ ଗୋପୀମାନେ ଶ୍ରୀକୃଷ୍ଣଙ୍କ ସହିତ ରାସଲୀଳାରେ ପ୍ରବୃତ୍ତ ଥିଲେ, ଶ୍ରୀକୃଷ୍ଣଙ୍କ ମାୟାରେ ସେମାନଙ୍କ ସ୍ୱାମୀମାନଙ୍କ ପାଖରେ ସେହି ଗୋପୀମାନଙ୍କର ଅନ୍ୟଏକ ରୂପମଧ୍ୟ ଅବସ୍ଥାନ କରିଥିଲା । ତେଣୁ ଗୋପାଳମାନେ ଗୋପୀଙ୍କର ଅନୁପସ୍ଥିତିକୁ ଜାଣି ପାରୁ ନଥିଲେ । ଯେଉଁମାନେ ସମସ୍ତ ତ୍ୟାଗ କରି ଭଗବାନଙ୍କର ଏକାନ୍ତ ଶରଣାପନ୍ନ ହୁଅନ୍ତି ସେମାନେ ଭଗବାନ୍ଙ୍କର ମଧୁରରୂପ ଓ ମାଧୁର୍ଯ୍ୟଲୀଳାକୁ ଆସ୍ୱାଦନ କରି ଅପୂର୍ବ ଆନନ୍ଦ ଲାଭ କରିବା ସଙ୍ଗେ ସମସ୍ତ ପ୍ରକାର ପାପ, ଦୁଃଖ ଓ ସଙ୍କଟରୁ ଯେ ଉତ୍ତୀର୍ଣ୍ଣ ହୁଅନ୍ତି ଏହା ରାସଲୀଳାର ସାଙ୍କେତିକ ରହସ୍ୟ । ସମସ୍ତ ପ୍ରକାର ମାୟାବନ୍ଧନକୁ ଛିନ୍ନ କରି ଓ ଲଜ୍ଜାକୁ ପରିତ୍ୟାଗ କରି, ଈଶ୍ୱରଜ୍ଞାନରେ ଗୋପାଙ୍ଗନାମାନଙ୍କର କୃଷ୍ଣ ସେବା ଏକ ଉଚ୍ଚକୋଟିର ସାଧନା ଏହା ଯେପରି ସହଜ ସେହିପରି କଷ୍ଟସାଧ୍ୟ ମଧ୍ୟ । ଏହା ସମସ୍ତ ପ୍ରକାର

ସାଧନାର ଉର୍ଦ୍ଧ୍ୱରେ । ସାଧନାର ପ୍ରାରମ୍ଭିକସ୍ତର ହେଉଛି ଭଗବାନ୍‌ଙ୍କର ଅଂଶ ଜ୍ଞାନରେ ପିତା, ମାତା, ଗୁରୁ, ପତ୍ନୀ, ପୁତ୍ର, ଆତ୍ମୀୟ, ମିତ୍ର ପ୍ରଭୃତଙ୍କୁ ସ୍ନେହ କରିବା ଏବଂ ଏହା ଯେତେବେଳେ ନିଃସ୍ୱାର୍ଥପର ସ୍ନେହରେ ପରିଣତ ହୁଏ, ସେତେବେଳେ ସାଧକ ଅନୁଭବ କରେ-ଭଗବାନ୍ ସେମାନଙ୍କ ମଧ୍ୟରେ ଅବସ୍ଥାନ କରୁଛନ୍ତି । ସାଧକର ଏ ଧରଣର ଜ୍ଞାନ ଉଦୟ ହେଲାପରେ ସେ ନିଜର ସମସ୍ତ ସ୍ନେହ ଶ୍ରଦ୍ଧା ବା ପ୍ରେମକୁ ସର୍ବ ମୂଳାଧାର ଭଗବାନଙ୍କ ପାଇଁ ସମର୍ପଣ କରିଥାଏ । ଭଗବାନଙ୍କର ଅଂଶ ବିଶେଷ ସହିତ ପ୍ରୀତିରେ ଯଥାର୍ଥ ଶାନ୍ତି ଓ ଆନନ୍ଦ ମିଳି ନଥାଏ କାରଣ ସେହି ଅଂଶ ବିଶେଷ ପରିବର୍ତ୍ତନଶୀଳ ଓ ଅସ୍ଥାୟୀ । ଯଦି ପ୍ରକୃତ ସ୍ଥାୟୀ ଶାନ୍ତି ତଥା ଆନନ୍ଦ ଲାଭ କରିବାର ଇଚ୍ଛା ତେବେ ଅଂଶ ବିଶେଷକୁ ପ୍ରେମ ନକରି ପରମ କାରଣ ପରମେଶ୍ୱର ତଥା ସର୍ବାଧାର ପରମେଶ୍ୱରଙ୍କୁ ପ୍ରେମ କରିବା ଉଚିତ୍ । ବୃକ୍ଷମୂଳରେ ଜଳ ଓ ସାର ପ୍ରୟୋଗରେ ଯେପରି ସମଗ୍ର ବୃକ୍ଷର ପ୍ରକୃତ ସେବା ସାଧିତ ହୋଇ ଥାଏ, ସେହିପରି ସର୍ବମୟ ଶ୍ରୀହରିଙ୍କର ସେବାରୁ ହିଁ ସମସ୍ତଙ୍କର ସେବା ସଂପନ୍ନ ହୋଇଥାଏ । ଶାଣ୍ଡିଲ୍ୟସୂତ୍ରରେ ସେଥିପାଇଁ କୁହା ଯାଇଛି—

'ପ୍ରାଣିତ୍ୱାନ୍ନ ବିଭୂତିଷୁ'

ଅର୍ଥାତ୍ ପ୍ରାଣୀ ନଶ୍ୱର ହେତୁ ବିଭୂତି(ଅର୍ଥାତ୍ ପ୍ରାଣୀ ଭଗବାନ୍‌ଙ୍କ ବିଭୂତିର ଏକଅଂଶ) ଦ୍ୱାରା ପ୍ରକୃଷ୍ଟ ଭକ୍ତି ଲାଭ ସମ୍ଭବପର ନୁହେଁ ।

ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ସର୍ବାନ୍ତର୍ଯାମୀରୂପେ ଅନୁଭବ କରି, ନିଜ ସର୍ବସ୍ୱ ଶ୍ରୀକୃଷ୍ଣଙ୍କ ଚରଣ କମଳରେ ସମର୍ପଣ କରିଦେଇ ଅପ୍ରାକୃତ ପ୍ରେମମାର୍ଗର ଅନୁଗାମିନୀ ହୋଇ ଥିଲେ । ନିମ୍ନୋଦ୍ଧୃତ ଶ୍ଳୋକରୁ ତାହା ଅନୁଧ୍ୟାନ କରାଯାଇ ପାରେ—

ନ ଖଲୁ ଗୋପିକାନନ୍ଦନୋ ଭବା
ନ ଖିଳ ଦେହିନାମନ୍ତରାତ୍ମଦୃକ୍
ବିଖନସାର୍ଥିତୋ ବିଶ୍ୱଗୁପ୍ତୟେ ସଖ
ଉଦେୟିବାନ୍ ସାତ୍ୱତାଂ କୁଳେ ।

(ଶ୍ରୀମଦ୍ଭାଗବତ ୧୦ । ୩୧ । ୪)

ଗୋପୀମାନଙ୍କ ପ୍ରେମର ପଟାନ୍ତର ନାହିଁ । ସମସ୍ତ ଭକ୍ତଙ୍କର ଏହା କାମ୍ୟ । ଗୌତମୀୟତନ୍ତ୍ରରେ କୁହା ଯାଇଛି —

ପ୍ରେମୈବ ଗୋପରାମାଣାଂ କାମଇତ୍ୟଗମତ୍ ପ୍ରଥାମ୍
ଇତ୍ୟୁଦ୍ଧବା ଦୟୋପ୍ୟେତେ ବାଞ୍ଛନ୍ତି ଭଗବତ୍ ପ୍ରିୟଃ ।

ଭଗବାନ ଶ୍ରୀକୃଷ୍ଣଙ୍କର ରାସଲୀଳା କାମବ୍ୟତୀତଶକ୍ତ ବିଶୁଦ୍ଧ ପ୍ରେମରାଜ୍ୟର ବସ୍ତୁ । ପ୍ରାକୃତ ଦୃଷ୍ଟିରେ ତାହାର ପଠନ ଓ ବିଚାର ଅତ୍ୟନ୍ତ ଗର୍ହିତ ବ୍ୟାପାର । କାମ ବିଜୟୀ ନହୋଇ, ମଦନ ମୋହନ (କାମପରାଜୟକାରୀ) ଶ୍ରୀକୃଷ୍ଣଙ୍କର ଅଲୌକିକ ରସପୂର୍ଣ୍ଣ ପ୍ରେମଲୀଳାକୁ ଅନୁଧ୍ୟାନକଲେ ରାସଲୀଳା କେବଳ କାମ ସମ୍ଭୋଗଲୀଳାର ଭ୍ରାନ୍ତି ସୃଷ୍ଟି କରିବ ମାତ୍ର ।

— ୦ —

କାବ୍ୟସ୍ୟ ଶବ୍ଦାର୍ଥୌ ଶରୀରମ୍, ରସାଦିଶ୍ଚାତ୍ମା,
ଗୁଣାଃ ଶୌର୍ଯ୍ୟାଦିବତ୍, ଦୋଷାଃ କାଣତ୍ୱାଦିବତ୍
ରୀତୟୋଽବୟବ ସଂସ୍ଥାନ ସଂସ୍ଥାନ ବତ୍
ଅଳଂକାରାଃ କଟକ କୁଣ୍ଡଳାଦି ବତ୍, ଇତି ।

(ସାହିତ୍ୟ ଦର୍ପଣ — ବିଶ୍ୱନାଥ କବିରାଜ)

# କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ— ଶ୍ରବ୍ୟ ଓ ଦୃଶ୍ୟର ଏକ ସାର୍ଥକ ସମନ୍ୱୟ

• ଅଜୟ କୁମାର ମିଶ୍ର (ପ୍ରାନ୍ତ)

---

ବିଶ୍ୱର ସୃଷ୍ଟିକର୍ତ୍ତା ଓ ପାଳନକର୍ତ୍ତା ଭଗବାନ ବିଷ୍ଣୁ— ଆତ୍ମାରାମ ସନାତନ ପରଂବ୍ରହ୍ମ ରୂପେ ବେଦ ଉପନିଷଦ ଠାରୁ ଏ ଯାବତ୍ ଅନେକ ବର୍ଣ୍ଣନାରେ ପରିଦୃଷ୍ଟ ହୁଅନ୍ତି । କିନ୍ତୁ ଏହି 'ବିଷ୍ଣୁ'ଙ୍କର ଉତ୍ପତ୍ତି ଖୋଜିଲେ ଜଣାଯାଏ ଯେ ପ୍ରଥମେ 'ବିଷ୍ଣୁ' ନାମରେ କୌଣସି ଦେବତା ନଥିଲେ । ବୈଦିକ ଯୁଗରେ 'ସୂର୍ଯ୍ୟ' ବା 'ମିତ୍ର'ଥିଲେ ମୁଖ୍ୟ ଦେବତା । ଉପନିଷଦ ଯୁଗରେ ଏହି ସୂର୍ଯ୍ୟ ଅବ୍ୟକ୍ତବ୍ରହ୍ମ ରୂପ ନେଇଥିଲେ । ଏବଂ ପରେ ପରେ ପୁରାଣଯୁଗରେ ବୈଦିକ ଯୁଗର ସୂର୍ଯ୍ୟ ଓ ଉପନିଷଦ ଯୁଗର 'ଅବ୍ୟକ୍ତବ୍ରହ୍ମ'ଙ୍କର ସମସ୍ତ ଗୁଣକୁ ଏକୀଭୂତ କରି ଏକ ନୂତନ ଦେବତା ଆବିର୍ଭୂତ ହେଲେ । ତାଙ୍କର ନାମ ହେଲା 'ସାକାର ବା ସଗୁଣ ବିଷ୍ଣୁ' । ନବସୃଷ୍ଟ ଏହି ସାକାର ବିଷ୍ଣୁଙ୍କୁ ନେଇ ସୃଷ୍ଟି ହୁଏ ବୈଷ୍ଣବ ଧର୍ମ, ଯାହାର ବିକାଶ ପାଇଁ ଉତ୍ତର ଭାରତର ସାତ୍ୱତ ବଂଶୀ କ୍ଷତ୍ରିୟ ଓ ଦକ୍ଷିଣଭାରତର ଆଲୱାରମାନଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ ।

ଖ୍ରୀଷ୍ଟିୟ ଏକାଦଶ ଶତାବ୍ଦୀରୁ ଏହି ବୈଷ୍ଣବଧର୍ମ ଶ୍ରୀରାମାନୁଜ, ଶ୍ରୀନିମ୍ବାର୍କ, ଶ୍ରୀମାଧ୍ୱାଚାର୍ଯ୍ୟ ଏବଂ ଶ୍ରୀବିଷ୍ଣୁସ୍ୱାମୀଙ୍କ ସମେତ ଚାରି ବୈଷ୍ଣବ ସଂପ୍ରଦାୟ ଦ୍ୱାରା ସର୍ବଭାରତୀୟ ପ୍ରସିଦ୍ଧି ଅର୍ଜନ କରିପାରିଥିଲା ।

ଏକଦା ପରିଚିତ ଅନାର୍ଯ୍ୟଭୂମି ଓଡ଼ିଶା (ଓଡ୍ରଦେଶ)ରେ ପ୍ରଥମେ ମାଳବରାଜ ଇନ୍ଦ୍ରଦ୍ୟୁମ୍ନ ଶବରରାଜ ବିଶ୍ୱାବସୁଙ୍କ ସହାୟତାରେ ଶ୍ରୀକ୍ଷେତ୍ର ଶ୍ରୀମନ୍ଦିର ଓ ଶ୍ରୀ ଜଗନ୍ନାଥଙ୍କର ପ୍ରତିଷ୍ଠା କରାଇଥିଲେ । ତେଣୁ ମହାଭାରତ ଅନୁଯାୟୀ ଓଡ଼ିଶାରେ ବିଷ୍ଣୁପୂଜାର ସମୟ ଖ୍ରୀ. ପୂ. ୨୦୦୦ ବର୍ଷ । କିନ୍ତୁ ବସ୍ତୁତଃ ଦାକ୍ଷିଣାତ୍ୟର ଗଂଗବଂଶୀଙ୍କର ଓଡ଼ିଶା ଶାସନ କାଳରୁ ଏଠାରେ ବୈଷ୍ଣବ ଧର୍ମର କ୍ଷିପ୍ର ପ୍ରଚାର ହୋଇଥିଲା ।

ଧର୍ମର ପ୍ରଚାର ପାଇଁ ସାହିତ୍ୟ ଏକ ଅପରିହାର୍ଯ୍ୟ ଉପାଦାନ । ଏହି ଦୃଷ୍ଟିରୁ ବୈଷ୍ଣବ ମାନେ ତାଙ୍କଧର୍ମର ପ୍ରଚାର ପାଇଁ ବୈଷ୍ଣବ ସାହିତ୍ୟ ସୃଷ୍ଟି ଆରମ୍ଭ କଲେ । ଏହି ସାହିତ୍ୟ ବୈଷ୍ଣବ ଧର୍ମର ୩ ସମ୍ପ୍ରଦାୟ (ରାମ, ଜଗନ୍ନାଥ,କୃଷ୍ଣ)ଙ୍କୁନେଇ ତିନି ବିଭାଗରେ ରଚିତ ହେଲା । ରାମ, ଜଗନ୍ନାଥ, କୃଷ୍ଣ— ଏହି ୩ଦେବତା ହେଲେ ଏକ ଅବ୍ୟକ୍ତ ନିର୍ଗୁଣ ବ୍ରହ୍ମଙ୍କର ସାକାର ରୂପ ମାତ୍ର । ତେଣୁ ଏମାନଙ୍କୁ ଆଧାର କରି ପୃଥକ୍ ପୃଥକ୍ ଭାବେ ଯଥାକ୍ରମେ ରାମସାହିତ୍ୟ, ଜଗନ୍ନାଥସାହିତ୍ୟ ଓ କୃଷ୍ଣସାହିତ୍ୟ ରଚିତହେଲା । କ୍ରମେ ଶ୍ରୀ ନିମ୍ବାର୍କ (ଦ୍ୱାଦଶଶତାବ୍ଦୀ)ଙ୍କ ଦ୍ୱାରା ପ୍ରଥମେ ଶାସ୍ତ୍ରୀୟମର୍ଯ୍ୟାଦା ଲାଭକରିଥିବା ଶ୍ରୀରାଧାଙ୍କୁ କେନ୍ଦ୍ର କରି ଗଢ଼ିଉଠିଥିବା କୃଷ୍ଣସାହିତ୍ୟ ଗୁଣାତ୍ମକ ତଥା ସଂଖ୍ୟାତ୍ମକ ଦୃଷ୍ଟିରୁ ଅନ୍ୟ ଦୁଇବିଭାଗକୁ ଅତିକ୍ରମ କରିଗଲା ।

ଓଡ଼ିଶାରେ କୃଷ୍ଣସାହିତ୍ୟର ସ୍ପଷ୍ଟ ରୂପ ପରିଦୃଷ୍ଟ ହୁଏ ପଞ୍ଚଦଶରୁ ସପ୍ତଦଶ ଶତାବ୍ଦୀମଧ୍ୟରେ । ଏହି ସମୟ ମଧ୍ୟରେ ମୁଖ୍ୟତଃ ନିର୍ଗୁଣ କୃଷ୍ଣସାହିତ୍ୟ ସୃଷ୍ଟି ହୋଇଥିଲେହେଁ, ସଗୁଣ କୃଷ୍ଣ ଯେଉଁଠାରେ ସାହିତ୍ୟକୁ ଆସିଛନ୍ତି ସେଠାରେ ସେ ଏକ କଳଙ୍କିତ ଲଂପଟ ଶଠ ପୁରୁଷର ରୂପନେଇ ଆସିଛନ୍ତି । ହୋଇପାରେ ଏହା ପଡ଼ୋଶୀ ରାଜ୍ୟର ପ୍ରଭାବ, ତଥାପି ଯୁଗୀୟ ଅଭିମୁଖ୍ୟ ଓ କବିଲେଖନୀର ମାର୍ମିକ ଆବେଦନ ନେଇ ଏହି କୃଷ୍ଣ ଚରିତ-ରୂପାୟନ ବିଚ୍ଛିନ୍ନ ଅଶ୍ଳୀଳ ବିଭତ୍ସ ହେଲେହେଁ ଅପ୍ରାସଂଗିକ ବା ଅବାନ୍ତର ନୁହେଁ ।

ଓଡ଼ିଆ କୃଷ୍ଣସାହିତ୍ୟର ପ୍ରଥମ ପ୍ରତୀକ ନିଦର୍ଶନ ସାରଳାମହାଭାରତ । ସଂସ୍କୃତ ମହାଭାରତର ଘୋର ତତ୍ତ୍ୱଦର୍ଶୀ ଅନାସକ୍ତ ଆତ୍ମାରାମ ସନାତନ ଶୂନ୍ୟବ୍ରହ୍ମ ସ୍ୱରୂପୀ ଶ୍ରୀକୃଷ୍ଣ ଏଥିରେ ଏକ କୁଚକ୍ରୀ, କାମାନ୍ଧ, ନାରୀମାଂସଲୋଭୀ ଲଂପଟ ରୂପନେଇ ସହଜସୁନ୍ଦରୀର ବିଭତ୍ସ ଶୃଙ୍ଗାର କେଳି ମଧ୍ୟରେ ଅନେକଟା ମଳିନ, ନିଷ୍ପ୍ରଭ, ତଥା ଲୌକିକ । ସମାଜକୁ ଦୂଷିତ ତଥା ଅଧଃପତନର ପଥରେ ବାଟ କଢ଼େଇ ନେଉଥିବା ସହଜସାଧନାର ବିଲୋପ ପାଇଁ ସାରଳାଦାସଙ୍କର ଏହି ସାହିତ୍ୟିକ ପଦକ୍ଷେପ ବାସ୍ତବିକ୍ ପ୍ରସଂଶାର୍ହ ।

ସାରଳାଦାସଙ୍କୁ ଛାଡ଼ିଦେଲେ ବୃନ୍ଦାବତୀଦାସୀଙ୍କ "ପୂର୍ଣ୍ଣତମ ଚନ୍ଦ୍ରୋଦୟ" ପର୍ଯ୍ୟନ୍ତ ପ୍ରାୟ ସମସ୍ତ କୃଷ୍ଣସାହିତ୍ୟରେ ନିର୍ଗୁଣ କୃଷ୍ଣଙ୍କୁଦେଖିବାକୁମିଳେ । ପଞ୍ଚସଖାଙ୍କ କୃଷ୍ଣ

ମୁଖ୍ୟତଃ ଶୂନ୍ୟ ପୁରୁଷ । ସେମାନଙ୍କର ଚିନ୍ତାରେ ରାଧାକୃଷ୍ଣ ସ୍ୱୟଂ ପ୍ରକୃତି-ପୁରୁଷ । ରାଧା ଜୀବାତ୍ମା ଓ କୃଷ୍ଣ ପରମାତ୍ମାଙ୍କ ପ୍ରତୀକ । ତେଣୁ ରାଧାକୃଷ୍ଣଙ୍କ ମିଳନ ଜୀବାତ୍ମା ପରମାତ୍ମାଙ୍କ ମିଳନ । ଶ୍ରୀଜଗନ୍ନାଥଦାସଙ୍କ ଭାଗବତର ରାସପଞ୍ଚାଧ୍ୟାୟରେ ଆମେ ଏହି ପ୍ରକୃତି ପୁରୁଷଙ୍କୁ ଦେଖୁଁ । ଏଥିରେ ରାଧାଙ୍କର କୃଷ୍ଣଙ୍କ ନିକଟକୁ ଗମନ ହେଉଛି ଜୀବାତ୍ମାର, ପରମାତ୍ମା ଦେହରେ ବିଲୀନ ହେବାର ଦୁରନ୍ତ ଇଚ୍ଛା । ତେଣୁ ରାସର ରାଧାକୃଷ୍ଣ ସ୍ୱୟଂ ପ୍ରକୃତିପୁରୁଷ ଓ ବୃନ୍ଦାବନଧାମ ହେଉଛି ନିତ୍ୟ ଗୋଲକସ୍ଥଳୀ । ତେଣୁ ସପ୍ତଦଶ ଶତାବ୍ଦୀ ପର୍ଯ୍ୟନ୍ତ ଆମର କୃଷ୍ଣସାହିତ୍ୟ ଥିଲା ମୁଖ୍ୟତଃ ତତ୍ତ୍ୱ ଓ ଦର୍ଶନ ପ୍ରଧାନ ।

କ୍ରମେ ଶ୍ରୀ ଚୈତନ୍ୟଙ୍କର ମହିମାମୟସ୍ପର୍ଶରେ ଏଥିରେ ଶୁଦ୍ଧାଭକ୍ତିର କଲ୍ଲୋଳ ପ୍ରବାହିତ ହୁଏ ଓ କୃଷ୍ଣସାହିତ୍ୟର ଧାରା ବହୁମୁଖୀ ହୋଇଯାଏ । ବୃନ୍ଦାବନଦାସୀଙ୍କ 'ପୂର୍ଣ୍ଣତମଚନ୍ଦ୍ରୋଦୟ', ଦନାଇ ଦାସଙ୍କ 'ଗୋପୀଭାଷା', ଗୃନ୍ଦଦାସଙ୍କ 'ଗୋପୀଚନ୍ଦନ', ଦେବ ଦୁର୍ଲ୍ଲଭଙ୍କ 'ରହସ୍ୟ ମଞ୍ଜରୀ', ଦୀନବନ୍ଧୁଙ୍କର 'ରସକଲ୍ଲୋଳ', ଭୂପତି ପଣ୍ଡିତଙ୍କର 'ପ୍ରେମପଞ୍ଚାମୃତ', ଅଭିମନ୍ୟୁଙ୍କର 'ବିଦଗ୍ଧ ଚିନ୍ତାମଣି', ଚକ୍ରପାଣିଙ୍କର 'କୃଷ୍ଣବିଳାସ', ଭକ୍ତଚରଣଙ୍କ 'ମଥୁରାମଙ୍ଗଳ', ସଦାନନ୍ଦଙ୍କ 'ଯୁଗଳ ରସାମୃତ ଲହରୀ' ଆଦି ଅନେକ ରଚନାରେ କୃଷ୍ଣସାହିତ୍ୟର ଅଙ୍ଗିକ ୨ ଭାଗରେ ବିଭକ୍ତ ହୋଇଯାଏ । ଗୋଟିକରେ କୃଷ୍ଣଙ୍କର ଐଶ୍ୱର୍ଯ୍ୟ, ଶୌର୍ଯ୍ୟ, ବୀରତ୍ୱ ତଥା ଭକ୍ତବାତ୍ସଲ୍ୟ ପ୍ରଦର୍ଶିତ ଏବଂ ଅନ୍ୟଟିରେ ତାଙ୍କର ଅଲୌକିକ ନିତ୍ୟପ୍ରେମର ମହିମାନ୍ୱିତ ମାଧୁର୍ଯ୍ୟ ବିକଶିତ । କୋଉଠି ସେ ଦ୍ୱାରକାଧିପତି, ଦୁଷ୍ଟଦଳନକାରୀ ଅବତାରୀ କୃଷ୍ଣ ତ ଅନ୍ୟ କେଉଁଠି ସେ ରାଧା ବଲ୍ଲଭ ଗୋପୀଜନ ବତ୍ସଳ ପ୍ରେମିକ କୃଷ୍ଣ । ମାତ୍ର ତାଙ୍କର ଐଶ୍ୱର୍ଯ୍ୟ ଲୀଳା ଅପେକ୍ଷା ଏହି ମାଧୁର୍ଯ୍ୟ ଲୀଳାହିଁ ଓଡ଼ିଆ କୃଷ୍ଣସାହିତ୍ୟରେ ଅଧିକ ବିକଶିତ ତଥା ଜନପ୍ରିୟ ।

ଲକ୍ଷ୍ୟ କରିବାର କଥାଯେ କୃଷ୍ଣସାହିତ୍ୟର ଦ୍ରୁତ ପ୍ରସାର ସଂଗେ ସଂଗେ ଯେତେବେଳେ ବୈଷ୍ଣବ ଧର୍ମ କ୍ଷିପ୍ର ଗତିରେ ଅଗ୍ରସର ହେଉଥିଲା, ଠିକ୍ ସେତିକବେଳେ କାଳ୍ପନିକ କାବ୍ୟ ଯୁଗର ଆରମ୍ଭ ହେବାରୁ ତତ୍ତ୍ୱ ପ୍ରଧାନ କୃଷ୍ଣ ସାହିତ୍ୟ ପରିବର୍ତ୍ତେ ପ୍ରେମ, ପ୍ରଣୟ, ରସ ଅଳଂକାର ଗୁଣାଦି ଆଶ୍ରିତ କାଳ୍ପନିକ କାବ୍ୟକୁ ସାଧାରଣ ଜନତା ଓ ବିଦଗ୍ଧ ଗୋଷ୍ଠୀ ଅଧିକ ଆଦର କଲେ । ଫଳରେ ତତ୍ତ୍ୱଦର୍ଶନ ସମ୍ବଳିତ କୃଷ୍ଣସାହିତ୍ୟ କାଳ୍ପନିକ କାବ୍ୟର ଲୋକପ୍ରିୟତା ପାଇଁ ଲୋକ ଶ୍ରଦ୍ଧାର ବାହାରେ ରହିଗଲା । ବୈଷ୍ଣବ ଧର୍ମର ପ୍ରସାର ବାଧାପ୍ରାପ୍ତ ହେଲା । ଫଳତଃ ବୈଷ୍ଣବ କବିମାନେ ବାଧ୍ୟହୋଇ ସେମାନଙ୍କର କାବ୍ୟକୁ କାଳ୍ପନିକ କାବ୍ୟର

ସମକକ୍ଷ କରିବା ପାଇଁ ସେଥିରେ ଅଳଂକାର ବକ୍ରୋକ୍ତି, ରସ, ଗୁଣ, ରୀତିନୀତିର ସଂଯୋଗ କଲେ । ଦୀନକୃଷ୍ଣଙ୍କର ରସକଲ୍ଲୋଳ, ଉପେନ୍ଦ୍ରଙ୍କର ଅଭିମନ୍ୟୁଙ୍କର ବିଦଗ୍ଧ-ଚିନ୍ତାମଣି, ପ୍ରେମଚିନ୍ତାମଣି, ସଦାନନ୍ଦ କବିସୂର୍ଯ୍ୟଙ୍କର 'ନାମଚିନ୍ତାମଣି' ଆଦି ଏହି ପରି-ପ୍ରେକ୍ଷୀରେ ରଚିତ ହୋଇଥିଲା । କିନ୍ତୁ କାଳିଦାସଙ୍କ କାବ୍ୟର ସମକକ୍ଷ ହେବାର ସ୍ପର୍ଦ୍ଧା ନେଇ କ୍ରମେ ସେଗୁଡ଼ିକ ଏତେ ଦୁର୍ବୋଧ ହୋଇପଡ଼ିଲା ଯେ ତାହା ମଧ୍ୟ ଲୋକଶ୍ରଦ୍ଧା ହରାଇଲା । ସାଧାରଣ ଜନତାଙ୍କ ପକ୍ଷରେ କ୍ଲିଷ୍ଟ, ଅଳଂକାର ପୂର୍ଣ୍ଣ କାବ୍ୟ ପଠନ ତଥା ମନନ ଅସମ୍ଭବ ହୋଇପଡ଼ିଲା । ଏଣେ ଶ୍ରବ୍ୟକାବ୍ୟର ଆଧିକ୍ୟରେ ଅତିଷ୍ଠ- ଜନମାନସର ରୁଚିରେ ମଧ୍ୟ ଦେଖାଦେଲା ପରିବର୍ତ୍ତନ । ଶ୍ରବ୍ୟକାବ୍ୟ ପରିବର୍ତ୍ତେ ଅସନ୍ତୁଷ୍ଟ ଗଣ-ମାନସ ଖୋଜିଲା ଦୃଶ୍ୟକାବ୍ୟ ମାଧ୍ୟମରେ ତାହାର ରସପିପାସାର ପରିତୃପ୍ତି । ତେଣୁ ଯୁଗୀୟ ଅଭିମୁଖ୍ୟକୁ ଅନୁଭବ କରି ବୈଷ୍ଣବ କବିମାନେ ଶ୍ରେଷ୍ଠ ଶ୍ରେଷ୍ଠ ସରଳ, ସୁବୋଧ ଗୀତିକା (ଚଉପଦୀ, ଚଉତିଶା, କୋଇଲି) ମାଧ୍ୟମରେ ବୈଷ୍ଣବ ଧର୍ମର ପ୍ରଚାର କାର୍ଯ୍ୟ ଅବ୍ୟାହତ ରଖିଲେ ଏବଂ ଏହି ଗୀତିକା ଗୁଡ଼ିକ ଲୋକ ରୁଚିର ଦୃଢ଼ତା ନେଇ କ୍ରମେ ଗୀତାଭିନୟରେ ରୂପାନ୍ତରିତ ହେବାକୁ ଲାଗିଲା । ଗୀତାଭିନୟର ବାହୁଲ୍ୟ ଯୋଗୁଁ ଗୀତିକବିତାର ରୂପ ମଧ୍ୟ ଧିରେ ଧିରେ ମଳିନ ହୋଇ ଆସିଲା ।

ଗୀତିକାବ୍ୟ ଯୁଗର ଶେଷ ଓ ଗୀତାଭିନୟ ଯୁଗର ଆରମ୍ଭ— ଏହିପରି ଏକ ଯୁଗ ସନ୍ଧିରେ କବିସୂର୍ଯ୍ୟ ବଳଦେବରଥଙ୍କର ଆବିର୍ଭାବ ଘଟିଥିଲା । ତେଣୁ ତାଙ୍କର ଚଂପୂରେ ଏହି ଉଭୟର ଧର୍ମ ପରିଲକ୍ଷଣୀୟ ।

ଚଂପୂରେ ଗୀତିକବିତାର ସରୂପ:— କବି ହୃଦୟର ସ୍ୱତସ୍ଫୁର୍ତ୍ତ ଆତ୍ମାନୁ-ଭୂତିର ଛନ୍ଦୋମୟ କଳାତ୍ମକ ପରିପ୍ରକାଶ ହିଁ ଗୀତିକବିତା । ଏଥିରେ ଚିନ୍ତା ବା ଦର୍ଶନ ପରିବର୍ତ୍ତେ ଭାବ ଓ ଆତ୍ମାର କମନୀୟ ବିଳାସ ସୃଷ୍ଟି କରେ ସାବଜନୀନ ଆଦର । ଗୋଟିଏ ବିଶେଷ ମୁହୂର୍ତ୍ତର ଏକ ସଂକ୍ଷିପ୍ତ ଭାବାବେଗକୁ ନେଇ ଗୀତିକବିତାର ସ୍ୱର ଝଂକୃତ ହୁଏ । ପ୍ରାଚୀନ ଗ୍ରିକ୍ ସାହିତ୍ୟରେ କାବ୍ୟ ୩ ଭାଗରେ ବିଭକ୍ତ ଥିଲା । **Epic** (ମହାକାବ୍ୟ) **Dramatic** (ଦୃଶ୍ୟକାବ୍ୟ) ଓ **Lyric** (ଗୀତିକାବ୍ୟ) । ଏହି **Lyric** ଶବ୍ଦ **'Lyre,** ଶବ୍ଦରୁ ଉତ୍ପନ୍ନ । 'ଲାୟାର' ଥିଲା ତତ୍କାଳୀନ ଗ୍ରୀକ-ସଂଗୀତ ଗାନ ପାଇଁ ଏକ ତାର ଯନ୍ତ୍ର ବିଶେଷ । **R. T. Rees** ତାଙ୍କର **"English Literature"**

ରେ Lyre କୁ ଆଧୁନିକ 'Guitar' ସହ ତୁଳନା କରିଛନ୍ତି । "Colaumbia Encyclopaedia" ରେ 'Lyre' ର ଅର୍ଥ—"One cf the most ancient of stringed instrument similar to a harp."
ଅତଏବ୍ ଏହି 'Lyric' ରୁ ଓଡ଼ିଆରେ ଗୀତିକବିତାର ସୃଷ୍ଟି । କିଶୋର ଚନ୍ଦ୍ରାନନ୍ଦ ଚଂପୂରେ ଏହାର ସ୍ୱରୂପ ବର୍ତ୍ତମାନ ଅନୁସନ୍ଧାନ କରାଯାଉ ।

**ଗୀତିମୟତା** — ସାଂଗୀତିକତା ବା ଗୀତିମୟତା ଗୀତିକବିତାର ଧର୍ମ ହେଲେହେଁ ଏହା ସଂଗୀତ ନୁହେଁ । ଏହି ଦୃଷ୍ଟିରୁ ରାଗରାଗିଣୀ ସମ୍ବଳିତ ପ୍ରାଚୀନ ଓଡ଼ିଆ ସାହିତ୍ୟ କଦାପି ଗୀତିକବିତାର ପଦବାଚ୍ୟ ନୁହେଁ । କାରଣ ସେ ସବୁରେ ରାଗ, ତାଳ, ଧ୍ୱନି ଆଦି ପ୍ରାଧାନ୍ୟ ଲଭ କରୁଥିବା ସମୟରେ ଗୀତିକବିତାରେ ଅନ୍ତରାନୁଭୂତି ଓ ଭାବାବେଗର ପ୍ରାଧାନ୍ୟରହେ ।

କିଶୋର ଚନ୍ଦ୍ରାନନ୍ଦ ଚଂପୂର ପ୍ରତ୍ୟେକ ଛନ୍ଦରେ ଏହି ବିମୁଗ୍ଧ ସାଂଗୀତିକତାର ଅଫୁରନ୍ତ ପ୍ରବାହ ପରିଲକ୍ଷଣୀୟ । ଭାବାବେଗ ର ଉଚ୍ଛୁଳ ଛଳ ଛଳ କଲ୍ଲୋଳ ଚଂପୂର ପ୍ରତ୍ୟେକ ଗୀତକୁ ଯେତିକି କରିଛି ରସସ୍ନିଗ୍ଧ ସେତିକି ମଧ୍ୟ କରିଛି ଗୀତିମୟ । ଯମୁନା ତଟର ଆରକ୍ତ ଗୋଧୂଳି ଲଗ୍ନରେ ଶ୍ୟାମ ସୁନ୍ଦରଙ୍କର ରୂପ ମାଧୁରୀ ପାନକରି କୁଳବଧୂ ଶ୍ରୀରାଧାଙ୍କର ପ୍ରେମମୟୀ ମନ ସମାଜ ବିରୁଦ୍ଧରେ କରିଛି ବିଦ୍ରୋହ । ଅନ୍ତରର ବ୍ୟାକୁଳତା ପ୍ରକାଶ ପାଇଛି ପ୍ରିୟସଖୀ ଲଳିତା ଆଗରେ—

"କି ହେଲାରେ କହିତ ନୁହଁଇ ଭାରତୀରେ
କାଲିଯାଇ ଦୂରରୁ ଦେଖି         କଲନା ଜଳ ମୋ ଆଖି
କଳା ଇନ୍ଦୀବର ଆରତୀରେ ।"

ପୁନଶ୍ଚ ଚତୁରା ଲଳିତାଙ୍କ ଗୁରୁତାରେ ଭୁଲି ରାଧାଙ୍କର ଧୈର୍ଯ୍ୟ ବନ୍ଧ ଭୁଷୁଡ଼ି ପଡ଼ିଛି—

"ଆପିରେ କହି ତଥାପିରେ ପ୍ରିୟସଖୀ ଥିବ କି ଛୁଡ଼ିବ ପ୍ରାଣ
ଥିଲି ପରି ସ୍ନେହ ଲାଗିଲି କି କହି ଅଚ୍ଛି ତୋତେ ମୋରାଣ ।"

ଏହିପରି ପ୍ରତ୍ୟେକ ଗୀତରେ ଗୀତିମୟତାର ଅଙ୍ଗ,ଚିନ୍ତ ଉତ୍ସ ପ୍ରବାହିତ ହୋଇଛି ।

ଆତ୍ମାନୁଭୂତିମୂଳକତା: କର୍ମଚଞ୍ଚଳ ମନୁଷ୍ୟଙ୍କୁ ଅଳ୍ପ ସମୟ ବ୍ୟୟରେ ଆନନ୍ଦଦେବା ଉଦ୍ଦେଶ୍ୟରେ କ୍ଷୁଦ୍ର ଗୀତିକା ଗୁଡ଼ିକର ସୃଷ୍ଟି ହୋଇଥିଲା । କବି ହୃଦୟର ଏକ ବିଶେଷ ମୁହୂର୍ତ୍ତର ଉଚ୍ଛ୍ୱାସ ଅନୁଭୂତି ଏଥିରେ ରୂପ ପାଉଥିଲା । ତେଣୁ ଏହା କବି ହୃଦୟର ଆବେଗାନୁଭୂତି ନେଇ ସାଧାରଣ ଜନମାନସକୁ ଅଧିକ ସ୍ପର୍ଶ କରୁଥିଲା ।

ଚିଂ ପୂରେ କବିସୂର୍ଯ୍ୟଙ୍କର ଅନୁଭୂତିପ୍ରବଣ ମନର ଉଚ୍ଛ୍ୱଳ ପରିପ୍ରକାଶ ଏକାନ୍ତ ଭାବେ ଅନୁଧ୍ୟେୟ । କାରଣ ପ୍ରତ୍ୟେକ ଗୀତ ବର୍ଣ୍ଣନାର ଚମତ୍କାରିତା ଅନୁଭବୀ ପ୍ରାଣର ସ୍ପର୍ଶ ବିନା ଅସମ୍ଭବ । କବିସୂର୍ଯ୍ୟ ଥିଲେ ପରମ ଭକ୍ତ । ରାଧାକୃଷ୍ଣଙ୍କ ସହ ନିଜ ଆତ୍ମାକୁ ଏକୀଭୂତ କରିଥିଲେ । ତେଣୁ ରାଧାକୃଷ୍ଣ ଅଦୃଶ୍ୟ ଓ କଳ୍ପ ଜଗତର ମୂର୍ତ୍ତି ହେଲେହେଁ ନିଜର ବାସ୍ତବ ଜୀବନାନୁଭୂତିକୁ ନେଇ ସେ ସେମାନଙ୍କୁ ଏଭଳି ଭାବେ ଚିତ୍ରଣ କରୁଛନ୍ତି—ଯାହା ବାସ୍ତବ ଓ କଳ୍ପନା ମଧ୍ୟରେ ଥିବା ସିମାରେଖାକୁ ବିସ୍ମୃତ କରାଇ ଦିଏ । ନାଟ୍ୟକାର ନୀଳକଣ୍ଠ ପଟ୍ଟନାୟକଙ୍କ କବିଜୀବନୀ ମୂଳକ ନାଟକ "କବିସୂର୍ଯ୍ୟ ବଳଦେବ" ରେ ଆମେ ଦେଖୁ ବଂଶୀଧାରୀ ପ୍ରେମିକ ବଳଦେବଙ୍କୁ ଶ୍ରୀକୃଷ୍ଣଙ୍କ ରୂପରେ । ସେହିପରି ରାଧାଙ୍କର ଅସ୍ତିତ୍ୱ ଅନୁଭୂତ ହୁଏ ଚନ୍ଦ୍ରକଳା (ଜଲନ୍ତର ରାଜାଙ୍କର ପାଳିତା କନ୍ୟା) ଚରିତ୍ର ମାଧ୍ୟମରେ । ପୁଣି ଅନ୍ୟତ୍ର ତାଙ୍କ ଜୀବନୀରେ ଜଲନ୍ତରର ବିଧବା କିଶୋରୀ ରାଣୀ ଲଳିତା ମଣିଙ୍କୁ ମଧ୍ୟ ପ୍ରେମିକା ରୂପରେ ଦେଖିବାକୁ ମିଳେ । ମୋଟ ଉପରେ କବିସୂର୍ଯ୍ୟ ଥିଲେ ପ୍ରେମିକ, ଭକ୍ତ ତଥା କବି । ସ୍ରଷ୍ଟାର ବ୍ୟକ୍ତିତ୍ୱ ସୃଷ୍ଟିରେ ପ୍ରତିଛନ୍ନ ରହିବା ସ୍ୱାଭାବିକ ।

ଯମୁନା ତଟର କୁଞ୍ଜ କାନନରେ ସଂଧ୍ୟାର ମନୋରମ ପରିବେଶରେ ନଟନାଗର କୃଷ୍ଣଙ୍କୁ ଦେଖି କୁଳବଧୂ ରାଧାଙ୍କର ହୃଦୟରେ ସୃଷ୍ଟି ହୋଇଛି ଉଦ୍‌ବେଳନ । ସଖୀ ଲଳିତାର ଆକ୍ଷେପରେ ମର୍ମାହତା ଶ୍ରୀରାଧା କହୁଛନ୍ତି—

"ଗଳ୍ପିତ ଗଳ୍ପ କଥାରେ ସଂଗାତ
ଗୁପତେ ସିନା ମୁଁ ତୋତେ ପଗୃରିଲି ବଲି ପଡ଼ିବାରୁ ବ୍ୟଥା

\+ \+ \+

"ଗୋଡ଼ ଖସି ଖେଦ ହେବାର ଦରିଜ ସିବାର ଉପାୟ କହ ।"

ସେହିପରି ଲଳିତାଙ୍କ ନିକଟରେ କୃଷ୍ଣଙ୍କର ଅନୁନୟ, ଲଳିତାଙ୍କର ସ୍ୱରୁଚି, ରାଧାଙ୍କର ଅଭିସାର ଆଦି ବର୍ଣ୍ଣନାରେ କବି ହୃଦୟର ଅନୁଭୂତି ଏକାନ୍ତ ବିସ୍ମୟ । ଯେପରି ମିଳନ ଶେଷରେ ରାଧାଙ୍କର ବର୍ଣ୍ଣନା—"ପିଲ ପିନ୍ଧିହାଣ ଫୋପଡ଼ି ଦେଇଥିବା ଫୁଲମାଳ ପରି, ଶାଣରେ ଘଷାଯାଇଥିବା ମଣି ପରି, ମୁକ୍ତ ଚନ୍ଦ୍ରିକା ପରି, ମତ୍ତହସ୍ତୀ ଦଳକରି ଛାଡ଼ିଯାଇଥିବା ପଦ୍ମନାଡ଼ ପରି, ସିଂହ ଧରି ଛାଡ଼ିଦେଇଥିବା ହରିଣୀ ପରି ........।" ଇତ୍ୟାଦି ।

ସତଃ ସ୍ଫୂର୍ତ୍ତିତା:— William Wordsworth ଙ୍କ ଭାଷାରେ କବିତା ମଣିଷ ହୃଦୟର "Spontaneous overflow of powerful feeling." ବାସ୍ତବିକ କବି ହୃଦୟରୁ ନିଃସୃତ ସ୍ୱତଃସ୍ଫୂର୍ତ୍ତ ଭାବାବେଗ ନେଇ ଗୀତ କବିତା ଆଜି ପର୍ଯ୍ୟନ୍ତ ତା'ର ଲୋକପ୍ରିୟତା ହରାଇ ନାହିଁ । କାରଣ ସେଥିରେ ନାହିଁ ଆୟାସ-ଲବ୍ଧ କ୍ଲିଷ୍ଟତା, ନାହିଁ ଗୁରୁଗମ୍ଭୀର ଶବ୍ଦାଡ଼ମ୍ବର, ନାହିଁ ମଧ୍ୟ ମାର୍ଜିତରୁଚି ଲୋକଙ୍କର କୃତ୍ରିମ ପରଂପରା । ସେଥିପାଇଁ କୋଇଲି ଚଉତିଶା, ଚଉପଦୀ ଆଦି କବି ହୃଦୟର ସ୍ୱତଃସ୍ଫୂର୍ତ୍ତ ଭାବୋଚ୍ଛ୍ୱାସକୁ ନେଇ ସାର୍ବଜନୀନ ତଥା ସାର୍ବକାଳୀନ ମର୍ଯ୍ୟାଦା ପାଇଛନ୍ତି ।

ଆଲୋଚ୍ୟ ଚଂପୂରେ କବିସୂର୍ଯ୍ୟଙ୍କ ଭକ୍ତିଗଦ୍‌ଗଦ୍ ଚିତ୍ତର ଅପୂର୍ବ ସ୍ପର୍ଶ ଅନସ୍ୱୀକାର୍ଯ୍ୟ । କବି ହୃଦୟର ଅଗାଧ କୃଷ୍ଣ ଭକ୍ତିର ଏହା ଏକ ସଂକ୍ଷିପ୍ତ କଳାତ୍ମକ ରୂପ ମାତ୍ର । କୃଷ୍ଣକଥାକୁ ନେଇ ଅନେକ ସାହିତ୍ୟ ସୃଷ୍ଟି ହୋଇଥିଲେହେଁ ଚଂପୂ ଆପଣାର ମୌଳିକତା ଓ ଭାବାବେଗ ନେଇ ହୋଇ ପାରିଛି ଅନନ୍ୟସାଧାରଣ । ଚଂପୂର ଶେଷ ଚାରଣ ବର୍ଣ୍ଣନାଶୈଳୀ ସଂଳାପ ଓ ପରିବେଷଣ କଳା—ସବୁଥିରେ କବି ପ୍ରାଣର ସ୍ୱତଃସ୍ଫୂର୍ତ୍ତ ସ୍ରୋତସ୍ୱିନୀ ପ୍ରବାହିତ । ଦୃଷ୍ଟାନ୍ତ ସ୍ୱରୂପ—କୃଷ୍ଣ ଦର୍ଶନରେ ରାଧାଙ୍କ ଯୌବନ ଯମୁନାରେ ଦେଖାଦେଇଛି ଜୁଆର ପ୍ରେମୋଦ୍‌ବେଳିତ ରାଧା ସଖୀ ଲଳିତାଙ୍କୁ କହୁଛନ୍ତି—

କହୁଛି ବିରଳ ଲଜ୍ଜା କେବଳ ହେଲୁ ମୋ ମନା
ମନ୍ତ୍ର ଯିବକି ଭଲ୍ଲ ରତିରେ ।"

ସେହିପରି କୃଷ୍ଣ ମଧ୍ୟ ଲଳିତାଙ୍କୁ କହୁଛନ୍ତି—

"ନ ଭାଙ୍ଗରେ ଶୁଭାଙ୍ଗୀ, ଭାରତୀ ହୁଅ ଯାହା
ନୋହିଲେ ତୁ ପରମାଣ ନାହିଁ ଯେ ନୟନ ବାଣ
ନିଃଶେଷ କଲାଟି ଦେହି ଲହା ।"

ସଂକ୍ଷିପ୍ତତା:— ମୁହୂର୍ତ୍ତର ଆବେଗ ଓ ମୁହୂର୍ତ୍ତର ଘଟଣାକୁ ନେଇ ଗୀତି-କବିତା ରଚିତ ହୁଏ । କବି ହୃଦୟରେ ଯେଉଁ ଏକ ବିଶେଷ ମୁହୂର୍ତ୍ତର ଘଟଣା ଛାପ ପକାଏ ତା'ର ସ୍ଥାୟୀତ୍ୱ କ୍ଷଣସ୍ଥାୟୀ । ତେଣୁ ଏକକ ଭାବ ପ୍ରଧାନମୂଳକ ଗୀତି-କବିତା କ୍ଷୁଦ୍ର ହେବା ବିଧେୟ । କାରଣ ଏଥିରେ ଆଦର୍ଶବାଦର ପ୍ରଚାର ନଥାଏ କି ଦର୍ଶନତତ୍ତ୍ୱର ବ୍ୟାଖ୍ୟା ନଥାଏ, ନଥାଏ ମଧ୍ୟ ପ୍ରଜ୍ଞା ଓ ଚିନ୍ତନର ସ୍ପର୍ଶ । ମୁହୂର୍ତ୍ତର ଭାବରୁ କବି ହୃଦୟରୁ ଝରଝର ହୋଇ ଝରି ଆସେ କେତୋଟି ପଂକ୍ତି । ଆଲୋଚ୍ୟ ଚଂପୂରେ ସେହିପରି ରାଧାକୃଷ୍ଣଙ୍କର ଦୃଷ୍ଟି ବିନିମୟ ଏକ ମୁହୂର୍ତ୍ତର ଘଟଣା । ଏହିଥିରୁ ଉଭୟଙ୍କ ମନରେ ଉଭୟଙ୍କ ପ୍ରତି ଅନୁରାଗ ଓ ପରେ ପ୍ରେମ ସୃଷ୍ଟି ହୁଏ । ଏବଂ ସେହି ପ୍ରେମର ପୂର୍ଣ୍ଣତା ମିଳନ ହୁଏ ସଖୀ ଲଳିତାର ସହାୟତାରେ । ସମୁଦାୟ ଘଟଣାଂଶର ସମୟ ଖୁବ୍ ସ୍ୱଳ୍ପ । ଶ୍ରୀକୃଷ୍ଣ ଦର୍ଶନ ପରେ ରାଧାଙ୍କର । ବ୍ୟାକୁଳତା ପ୍ରକାଶପାଏ ସଖୀ ଲଳିତାଙ୍କ ନିକଟରେ । ଲଳିତା ସଙ୍ଗେ ସଙ୍ଗେ ଗମନ କରନ୍ତି କୃଷ୍ଣଙ୍କ ନିକଟକୁ । କୃଷ୍ଣଙ୍କର ମନୋଭାବ ବୁଝି ପ୍ରତ୍ୟାବର୍ତ୍ତନ କରନ୍ତି ଓ ପରେ ଉଭୟଙ୍କର ମିଳନ କୁଞ୍ଜରେ ସମାହିତ ହୁଏ । ସ୍ୱଳ୍ପ ସମୟ, ସ୍ୱଳ୍ପ ପରିବେଶ, ସ୍ୱଳ୍ପ ଚରିତ୍ର ଓ ସ୍ୱଳ୍ପ ଘଟଣାଂଶକୁ ନେଇ ଚଂପୂରେ ଚମତ୍କାରିତା ସୃଷ୍ଟି ହୋଇଛି ।

ମୋଟ ଉପରେ ଉପରୋକ୍ତ ଗୁଣକୁ ନେଇ ଚଂପୂ ଏକ ସାର୍ଥକ ଗୀତାଭିନୟ ହୋଇ ପାରିଛି । ଏହାର ପ୍ରତ୍ୟେକ ଗୀତକୁ ମଧ୍ୟ ପୃଥକ ପୃଥକ ଭାବେ ବିଚାର କଲେ ସେଗୁଡ଼ିକ ଏକ ଏକ ସାର୍ଥକ ଗୀତି କବିତା ହୋଇ ପାରିବ । ବର୍ଣ୍ଣକ୍ରମରେ ଲିଖିତ ହୋଇ ଥିବାରୁ ଏହାକୁ ଏକ ଚଉତିଶା ଧର୍ମୀ ଗୀତି କାବ୍ୟ କୁହାଯାଇ ପାରିବ । ତେଣୁ କାବ୍ୟ ଯୁଗର ଶେଷରେ ରଚିତ ହୋଇଥିଲେହେଁ ଏଥିରେ ମିଶ୍ର ଭାବର ଗୁମ୍ଫନ ହୋଇ ପାରିଛି ।

ଚମ୍ପୂରେ ଗୀତାଭିନୟର ସ୍ୱରୂପ:—

ଦୃଶ୍ୟ କାବ୍ୟର ପ୍ରାକ୍‌କାଳରେ ଗୀତାଭିନୟ ଗୁଡ଼ିକ ଯେଉଁ ସବୁ ଲକ୍ଷଣ ନେଇ ସୃଷ୍ଟି ହେଉଥିଲା, ସେଗୁଡ଼ିକୁ ଖୋଜିଲେ ଚମ୍ପୂରେ ନବୀଣ ହେବାକୁ ପଡ଼େନା । ଗୀତ-କବିତା ଥିଲା ବ୍ୟକ୍ତିନିଷ୍ଠ ବା ମନ୍ମୟ ଧର୍ମୀ । ମାତ୍ର ଗୀତାଭିନୟ ଗୁଡ଼ିକ ବସ୍ତୁନିଷ୍ଠ ବା ତନ୍ମୟ ଧର୍ମୀ ଯେହେତୁ ଏହା ଅଭିନୟ ଆକାରରେ ପ୍ରଦର୍ଶିତ ହେଉଥିଲା ସେଇଥି ପାଇଁ ଏଥିରେ ନାଟକୀୟତା ଚରିତ୍ର, ସଂଳାପ, ଉତ୍କଣ୍ଠା ଆଦି ନାଟକର କେତେକ ଅପ୍ରାପ୍ୟ ଲବ୍‌ଧ ଗୁଣ ଅପରିହାର୍ଯ୍ୟ ଥିଲା । ଗୀତକାର ସ୍ୱତଃସ୍ଫୂର୍ତ୍ତ ଭାବ ଗୀତାଭିନୟରେ ନିର୍ଦ୍ଦିଷ୍ଟ ଶୃଙ୍ଖଳା ନିୟମ ମାନିବାକୁ ବାଧ୍ୟ ହେଉଥିଲା । କାରଣ ଏହା ଅଭିନୟ କଳା । ତେଣୁ ମଞ୍ଚୋପଯୋଗୀ ଚରିତ୍ର, ସଂଳାପ ଓ ବର୍ଣ୍ଣନା ଏକାନ୍ତ ଆବଶ୍ୟକ ।

ଚଂପୂ ଏକ ସଂଗୀତମୟ କାବ୍ୟ ହେଲେହେଁ ବିଷୟ ଉପସ୍ଥା-ପନାରେ ନାଟକୀୟତା ଏହାର ପ୍ରଧାନ ଶିଳ୍ପକୌଶଳ । ନାଟକର ଉପଯୋଗୀ ବସ୍ତୁନିଷ୍ଠ ପରିବେଷଣରୀତିର ଅନୁସରଣ ଫଳରେ ସମଗ୍ର ଚଂପୂ ('ମ' ଏବଂ 'କ୍ଷ' ଗୀତ ବ୍ୟତୀତ, କାରଣ ଏଥିରେ କବିଙ୍କ ନିଜସ୍ୱ ଉକ୍ତି ପ୍ରକାଶିତ ) ପାତ୍ର ପାତ୍ରୀଙ୍କ ଉକ୍ତି ପ୍ରତ୍ୟୁକ୍ତି ଦ୍ୱାରା ପରିପୂର୍ଣ୍ଣ । ଯଥା— ଲଳିତାଙ୍କ ସଂଳାପ ୧୩ ଗୋଟି ଗୀତରେ ଶ୍ରୀକୃଷ୍ଣଙ୍କର ସଂଳାପ ୭ଗୋଟି ଗୀତରେ ରାଧାଙ୍କର ସଂଳାପ ୭ଗୋଟି ଗୀତରେ, ସଖୀ ମାନଙ୍କର ୪ଗୋଟି ଓ ସଖା ମଧୁମଙ୍ଗଳର ଉକ୍ତି ଗୋଟିଏ ଗୀତରେ ପ୍ରକାଶିତ । ଏହି ପରିପ୍ରେକ୍ଷୀରେ ଜୟଦେବଙ୍କ ଗୀତ ଗୋବିନ୍ଦ ସ୍ମରଣୀୟ । ସେଥିରେ ମଧ୍ୟ ୨/୩ଟି ଗୀତ ବ୍ୟତୀତ ଅନ୍ୟ ସମସ୍ତ ଗୀତ ପାତ୍ର ପାତ୍ରୀଙ୍କ ସଂଳାପରେ ପୂର୍ଣ୍ଣ ।

ଗୀତାଭିନୟ ଯେହେତୁ ଏକ ଅଭିନୟ ସେଥିପାଇଁ ଚରିତ୍ର ଏକାନ୍ତ ଆବଶ୍ୟକ । ଚଂପୂରେ ମୁଖ୍ୟ ଚରିତ୍ର ରୂପେ କୃଷ୍ଣ ଲଳିତା ଓ ରାଧାଙ୍କୁ ଆମେ ଦେଖୁ । ସଖା ସଖୀ ହେଉଛନ୍ତି ସହାୟକ ଗୌଣ ଚରିତ୍ର । କେବଳ ଚରିତ୍ର ପରିବେଷଣ କଲେ ହେବନାହିଁ— ସେଥି ପାଇଁ ଆବଶ୍ୟକ ସଫଳ ଚରିତ୍ର ରୂପାୟନ । ପାତ୍ର ଉପଯୋଗୀ ଭାଷା, ସଂଳାପର ମାଧୁର୍ଯ୍ୟକୁ ନେଇ ଚରିତ୍ରଗୁଡ଼ିକ ଜୀବନ୍ତ ତଥା ବାସ୍ତବ ହୋଇ ଉଠନ୍ତି । ଚଂପୂର ପ୍ରତ୍ୟେକ ଚରିତ୍ର ଯେତିକି ଜୀବନ୍ତ ସେତିକି ମଧ୍ୟ ବାସ୍ତବ । ସଖୀ ଲଳିତାଙ୍କ ପ୍ରାଧାନ୍ୟ ଚଂପୂକୁ ଅଧିକ ମନୋଜ୍ଞ କରିଛି । ରାଧାକୃଷ୍ଣ ସଚେ-

ଯେପରି ଲଳିତା ହୃଦୟର ଏକ ଏକ ଜୀବନ୍ତ ପ୍ରତିଛବି । ଦୁଇଟି ମିଳନେଚ୍ଛୁ ପ୍ରାଣର ଉଦ୍‌ବେଗକୁ ଅନୁଭବ କରି ସଖୀ ଲଳିତା ଆପଣାର ଉପଯୁକ୍ତ କର୍ତ୍ତବ୍ୟ ସଂପାଦନ କରିଛି । ନାୟକ ନାୟିକାର ପ୍ରାଣରେ କୌଶଳର ସନ୍ଧାନ ଆଶା, ନିରାଶାର ଉନ୍ମୁଳ ଆଲୋଡ଼ନ ସୃଷ୍ଟି କରି ଅଭିନୟକୁ ଅଧିକ ନାଟ୍ୟୋପକରଣ ପୂର୍ଣ୍ଣ କରିଛି । ରାଧାପ୍ରେମାନୁର କୃଷ୍ଣ ଏଠାରେ ଅବତାରୀ ଶ୍ରୀନାରାୟଣ ନିର୍ଗୁଣ କୃଷ୍ଣ ନୁହନ୍ତି । ସେ ସଂପୂର୍ଣ୍ଣଭାବେ ରାଧା-ପ୍ରେମ-ପାଗଳ ଏକ ଲୌକିକ କୃଷ୍ଣ । ସେହିପରି କୃଷ୍ଣ ପ୍ରେମ-ପାଗଳିନୀ ଶ୍ରୀରାଧା ଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗି ଯାଇଛି ସଖୀ ଲଳିତା ନିକଟରେ । ଶ୍ରୀମନ୍ତର ସିନ୍ଦୂର, ହୃଦୟର ଶଙ୍କା, ସମାଜର ଭୟ, ସତୀତ୍ୱର ମୋହ ତାଙ୍କୁ କୃଷ୍ଣ ପ୍ରେମରୁ ବିରତ କରାଇ ପାରି ନାହିଁ । ରାଧାଙ୍କ ମାଧ୍ୟମରେ କବିସମ୍ରାଟ ଚିରନ୍ତନ ପ୍ରେମିକାର ସ୍ୱରୂପକୁ ଉଦ୍‌ଘାଟନ କରିଛନ୍ତି ଏତଦ୍‌ବ୍ୟତୀତ ସଖା ସଖୀଙ୍କର ଭୂମିକା ଗୌଣ ହେଲେହେଁ ଉପେକ୍ଷଣୀୟ ନୁହେଁ ।

ଆଧୁନିକ ନାଟକର ଏକ ବିଶିଷ୍ଟ ବିଭବ 'ଐକ୍ୟତ୍ରୟୀ' ମଧ୍ୟ ଚଂପୂରେ ପରିଲକ୍ଷିତ ହୁଏ । ସ୍ଥାନ,ସମୟ ଓ ଘଟଣାର ଐକ୍ୟ ଏଥିରେ ନିହିତ । ବୃନ୍ଦାବନର ନିକୁଞ୍ଜ ବନହିଁ ଏକମାତ୍ର ସ୍ଥାନ । ସେହିପରି ସମୟ ଓ ଘଟଣାଂଶ ମଧ୍ୟରେ ଐକ୍ୟ ଅନୁଧ୍ୟେୟ ରାଧାଙ୍କର ମନୋଭାବ ଜାଣି ଲଳିତା ସଙ୍ଗେ ସଙ୍ଗେ କୃଷ୍ଣଙ୍କ ନିକଟକୁ ଯାତ୍ରା କରିଛନ୍ତି ଓ ପ୍ରତ୍ୟାବର୍ତ୍ତନ ପରେ ନିକୁଞ୍ଜରେ ଅଭିସାର ରଚନା କରିଛନ୍ତି । ସମୟ ଘଟଣା ଓ ସ୍ଥାନର ଅବିଚ୍ଛିନ୍ନତା ଏହାକୁ ସାର୍ଥକ ଗୀତାଭିନୟର ମର୍ଯ୍ୟାଦା ପ୍ରଦାନ କରିଛି ।

କଥାବସ୍ତୁ ପରିବେଷଣରେ ଚମତ୍କାରିତା ଯୋଗୁ ଚମ୍ପୂର ଉତ୍କର୍ଷ ବୈଚିତ୍ର୍ୟ ଏକାନ୍ତ ଭାବେ ଉଲ୍ଲେଖଯୋଗ୍ୟ । ଲଳିତାର ଗୁରୁତ୍ୱରେ ରାଧା-କୃଷ୍ଣଙ୍କ ପ୍ରାଣରେ ଯେଉଁ ଆଶଙ୍କା ନିରାଶ, ଉଦ୍‌ବେଗ ସୃଷ୍ଟି ହୋଇଛି ପ୍ରେମିକ-ପ୍ରେମିକା ପାଇଁ ସ୍ୱାଭାବିକ ଆବେଗ । ଆଶା ଆକାଂକ୍ଷାର ଆଲୋଡ଼ନ ମଧ୍ୟରେ ଉଭୟେ ଲଳିତାଙ୍କ ପାଖରେ ଧରା ଦେଇଛନ୍ତି । ତେଣୁ ଲଳିତା ଚରିତ୍ରହିଁ ଉତ୍କର୍ଷ ସୃଷ୍ଟି ପାଇଁ ଏକାନ୍ତଭାବେ ଦାୟୀ ।

ପୁନଶ୍ଚ ନାଟକର ପଞ୍ଚସନ୍ଧି ଦୃଷ୍ଟିରୁ ଚମ୍ପୂର ଅଭିନୟ ଉପଯୋଗୀତା ଉପଲବ୍‌ଧ ହୁଏ । 'ଆରମ୍ଭ'ରେ ରାଧାକୃଷ୍ଣଙ୍କର ପରସ୍ପରକୁ ଦର୍ଶନ 'ପ୍ରବାହ'ରେ ଉଭୟଙ୍କ ମନରେ ଉଭୟଙ୍କ ପ୍ରତି ଅନୁରାଗ ଓ ପ୍ରେମର ସୃଷ୍ଟି, 'ଶୀର୍ଷ'ଲଳିତାଙ୍କ ଗୁରୁତ୍ୱ ଯୋଗୁଁ ଉଭୟଙ୍କ

ଅବସ୍ଥା ( ଈପ୍‌ସିତ ବସ୍ତୁର ଅପ୍ରାପ୍ତିରେ ଦୁଃଖାଭିଭୂତ ) ଲଳିତାଙ୍କ ସତ୍ୟକଥନରେ ନାଟକର'ଗ୍ରନ୍ଥିମୋଚନ' ଏବଂ ଶେଷରେ କୃଷ୍ଣମିଳନରେ ନାଟକର'ଫଳସମାପ୍ତି' ଯୋଗୁ 'ପଞ୍ଚସନ୍ଧି' ନିୟମ ରକ୍ଷିତ ହୋଇଛି ।

ନାଟକର ସବୁଠାରୁ ବଡ଼ ବିଶେଷତ୍ୱ ଅଙ୍କ ଆଉ ଦୃଶ୍ୟବିଭାଜନ । ସମଗ୍ର ଚମ୍ପୂକୁ ସହଜରେ କେତୋଟି ଦୃଶ୍ୟରେ ବିଭକ୍ତ କରାଯାଇପାରେ ।

ପ୍ରଥମ ଦୃଶ୍ୟ— କୃଷ୍ଣ ରୂପ ସୁଧା ପାନ ଓ ବଂଶୀ ସୁଧା ଶ୍ରବଣରୁ କିଶୋରୀ ରାଈଙ୍କର ପ୍ରେମାକୁଳ ଦେହମନ ସମାଜର ପାଚେରୀ ଭାଙ୍ଗିବାକୁ ଏକାନ୍ତ ଉତ୍‌କୁଳ । ନିଜର ପ୍ରିୟ ସଖୀ ଲଳିତା ନିକଟରେ ହୃଦୟ ମନ୍ଦିରର ଦ୍ୱାର ଖୋଲିଯାଇଛି । ସହୃଦୟା ସଖୀ ପ୍ରାଣର ବେଦନାକୁ ଅନୁଭବ କରି ଯାତ୍ରା କରିଛି ନଟନାଗର ଶ୍ରୀକୃଷ୍ଣଙ୍କ ନିକଟକୁ ।

ଦ୍ୱିତୀୟ ଦୃଶ୍ୟ— ରାଧା ପ୍ରେମାତୁର ବିବର୍ଣ୍ଣ ବିବର୍ଣ୍ଣ କୃଷ୍ଣଙ୍କୁ ଲଳିତା ଭେଟିଛି ସେହି କୁଳୀନ ପ୍ରଦେଶର କୁଞ୍ଜ କାନନରେ । ପ୍ରତ୍ୟୁତ୍ପନ୍ନମତି ଲଳିତା ନିକଟରେ କୃଷ୍ଣଙ୍କ ହୃଦୟର ଉଚ୍ଛ୍ୱାସ ଗୋପନ ରହି ପାରିନାହିଁ । ଲଳିତାଙ୍କ ଛଳନାରେପ୍ରତାରିତ ହୋଇ କୃଷ୍ଣ ଗୁଟେ କହିଛନ୍ତି—" ନ ଭାଙ୍ଗରେ ଶୁଭାଂଗୀ ଭାରତୀ ହୁଅ ସାହା", ଅଭି-ମାନ କରିଛନ୍ତି- "ଡକାବାକ ଥାଇ ବୃକେ ଲଳିତାର ହୃଦମ୍ବୁକେ କରୁଣା ଅଛିବୋଲି

ଯା ନେଲି ଅଇରି କରେ ।"

ତଥାପି ଚତୁରୀ ସଖୀ ମନର ଭାବ ପ୍ରକାଶ ନକରି ଫେରି ଆସିଛି ଚେଷ୍ଟା କରିବାର ପ୍ରତି-ଶ୍ରୁତି ଦେଇ ।

ତୃତୀୟ ଦୃଶ୍ୟ— ପ୍ରତୀକ୍ଷାମାଂଶା ଅଧୀରା ପ୍ରେମାତୁରା ରାଧାଙ୍କୁ ପ୍ରତ୍ୟାଗତା ଲଳିତା ଠିକ୍ କୃଷ୍ଣଙ୍କ ସଦୃଶ ନିରାଶ ବାଣୀ ଶୁଣାଇ ପ୍ରଥମେ ଦୁଃଖାଭିଭୂତ କରି ଦେଇଛି ତଥାପି ରାଧା-ହୃଦ-ବନର କୃଷ୍ଣପ୍ରାପ୍ତି-ଆଶା- କଳିକାଟିର ମୃତ୍ୟୁ ଘଟିନାହିଁ । ଅଧୀର ଆବେଗରେ ସେ ପଚାରିଛନ୍ତି—

"ତଥାପିରେ କହି ତଥାପିରେ ପ୍ରିୟ ସଖୀ ଥିବ କି ଗୁଣ୍ଡିବ ପ୍ରାଣ
ଥିଲି ପରି ସେଇ ଲଗିଲି କି କହି ଅଛୁଟି ତୋତେ ମୋ ରାଣ ।"

ରାଧାଙ୍କ କାରୁଣ୍ୟ ନିକଟରେ ଚତୁରୀ ସଖୀର ଚତୁରୀ ହାର ମାନିଛି ।

ଚତୁର୍ଥ ଦୃଶ୍ୟ- ରାଧାଭିସାର ଆରମ୍ଭ ହୋଇଛି । ମିଳନେଚ୍ଛୁ ଅଭିସାରିକା ନାୟିକାଙ୍କର କଂପିତ ପଦଦ୍ୱୟ ଧିରେ ଧିରେ ବାଟକଢ଼ାଇ ନେଇଛି ଏକ ଅଜଣା ଆନନ୍ଦର ମୋହରେ । କୁଞ୍ଜଦ୍ୱାରରେ ସଖୀ ଲଳିତାର କାର୍ଯ୍ୟ ଶେଷ । ସାଗରର ପ୍ରଶାନ୍ତ ବକ୍ଷରେ ଲେଟି ପଡ଼ିବା ପାଇଁ କୂଳ ଉଚ୍ଛୁଳେଇ ଧାଇଁ ଆସିଥିବା ତଟିନୀ-ସାଗର ନିକଟରେ ଉପନୀତା । ରୁନ୍ଧି ମଧ ରୁନ୍ଧି ପାରୁନି, କିନ୍ତୁ ନ ରୁନ୍ଧି ବି ରହି ପାରୁନି । କେତେ ସମୟ ବା ସେ ଆଉ ଧୈର୍ଯ୍ୟ ଧରିବ ?

ପଞ୍ଚମ ଦୃଶ୍ୟ—ସାଗର ବକ୍ଷରେ ତଟିନୀ ଲେଟି ପଡ଼ିଛି । ରାଧାଙ୍କର କମ୍ପିତ ଥର ଥର ତନୁ କୃଷ୍ଣ ବକ୍ଷରେ ଲୀନ ହୋଇ ଯାଇଛି । କୁଞ୍ଜର କମନୀୟ ପରିବେଶରେ ଦୁଇଟି ମିଳନ ପିପାସୁ ଏକ ଆତ୍ମାରେ ପରିଣତ ହୋଇଯାଇଛନ୍ତି ।

ଷଷ୍ଠ ଦୃଶ୍ୟ— ରାତ୍ରୀର ଅବସାନ ଓ ବିଦାୟ ବେଳା ଆଗତ ପ୍ରାୟ । ଲଳିତାଙ୍କ ଆହ୍ୱାନରେ ଶ୍ଲଥବସ୍ତ୍ରା, କେଶବାସ ବିପର୍ଯ୍ୟସ୍ତା ଆଲୁଳାୟିତା ବଦନା ଶ୍ରୀରାଧାଙ୍କ ଅବସନ୍ନ ତନୁ ଧିରେ ଧିରେ ଫେରି ଆସିଛି କୁଞ୍ଜରୁ ନେଇ ମନରେ ଅଶେଷ ପ୍ରଶାନ୍ତ ଭରି ।

ସପ୍ତମ ଦୃଶ୍ୟ— ସଖୀ ସଖୀଙ୍କ ନାୟକ-ନାୟିକାଙ୍କୁ ପରିହାସ—ଏ ଦୃଶ୍ୟର ମୁଖ୍ୟ ଉପଜୀବ୍ୟ । ଏ ଦୃଶ୍ୟଟି କେତେଟା ଅନାବଶ୍ୟକ ମନେ ହେଲେହେଁ ରସ ପରିବେଷଣ ପାଇଁ ଏହାର ଅବଦାନ ନିଶ୍ଚୟ ଅଛି— ଏହା ଅନସ୍ୱୀକାର୍ଯ୍ୟ ।

ଏହିପରି ଭାବରେ ସମଗ୍ର ଚମ୍ପୂଟି ସାମଗ୍ରିକ ଭାବେ ଏକ ସାର୍ଥକ ଗୀତାଭିନୟର ଗୁଣ ରକ୍ଷାକରିଛି । ଏଇଥି ପାଇଁ ପରବର୍ତ୍ତୀ ସମୟରେ କବି ଚନ୍ଦ୍ର କାଳୀଚରଣ ଏହାକୁ ଗୀତାଭିନୟ ରୂପ ଦେଇ ମଞ୍ଚସ୍ଥ କରାଇଥିଲେ ।

ମୋଟ ଉପରେ କିଶୋରଚନ୍ଦ୍ରାନନ୍ଦ ଚମ୍ପୂ କବିସୂର୍ଯ୍ୟଙ୍କ ଅମଳିନ ପ୍ରତିଭାର ଅମର ସ୍ମାରକୀ । ବୈଷ୍ଣବ ଧର୍ମର ବିକାଶ ପାଇଁ ଯେତେବେଳେ ଅଳ୍ପ ସମୟ ମଧ୍ୟରେ କର୍ମ ବ୍ୟସ୍ତ ମନୁଷ୍ୟଙ୍କୁ ଅଭିନୟ ମାଧ୍ୟମରେ କୃଷ୍ଣ କଥା ପ୍ରଦର୍ଶନ କରିବାର ପ୍ରୟାସ ଚାଲିଥିଲା ସେହି ସମୟରେ କବିସୂର୍ଯ୍ୟ, କବିଙ୍କର ଅକଳନ୍ତ ଐଶ୍ୱର୍ଯ୍ୟ, ସଂଗୀତର ଉଲଂଘ ଉଚ୍ଛ୍ୱାସ, ଅଭିନୟ କଳାକାର ଚାତୁର୍ଯ୍ୟ ଏବଂ ସର୍ବୋପରି ନାଟ୍ୟୋତ୍କର୍ଷର କମନୀୟ ଗୁମ୍ଫନ ମାଧ୍ୟମରେ ଏପରି ଏକ ସୃଷ୍ଟି ଓଡ଼ିଆ ସାହିତ୍ୟ ତଥା ବୈଷ୍ଣବଧର୍ମକୁ ଦେଇଗଲେ ଯାହା ନିଜସ୍ୱତାରେ ଯେତିକି ଧନ୍ୟ, ଚମତ୍କାରିତାରେ ମଧ ସେତିକି ଅନନ୍ୟ ।

— ୦ —

# ଓଡ଼ିଆ ଗୀତି କବିତାର ଜନ୍ମକଥା ଓ ଚଉପଦୀ ସାହିତ୍ୟ

• ହରିଶ୍ଚନ୍ଦ୍ର ବେହେରା (ଗବେଷକ, ଓଡ଼ିଆ ବିଭାଗ)

---

ଯୁଗେ ଯୁଗେ ମଣିଷ ନିଜ ହୃଦୟର ଭାବାବେଗକୁ ପ୍ରକାଶ କରିବା ପାଇଁ ବିଭିନ୍ନ ମାଧ୍ୟମ ଖୋଜି ଆସିଛି । ଦିଗନ୍ତ ପ୍ରସାରୀ ଘନ ଜଙ୍ଗଲର ଜାଙ୍ଗଲିକ ସୁଷମା, ପକ୍ଷୀର କଳ କୂଜନ, ଝରଣାର ଝର ଝର ଧ୍ୱନି, କଳାହାଣ୍ଡିଆ ମେଘ ଆଗମନରେ ମୟୂରର ପୁଚ୍ଛତୋଳା ନୃତ୍ୟ, ଲଳିତା ପ୍ରକୃତି ଦେହରେ ଷଡ଼ଋତୁର ଲାସ୍ୟମୟୀ ଲୀଳା ଯେତେ-ବେଳେ ଲଳିତା ଆଦିମାନବ ପ୍ରାଣରେ ଚାଞ୍ଚଲ୍ୟ ସୃଷ୍ଟି କରିଛି ସେତେବେଳେ ସେ ଭାବପ୍ରବଣ ହୋଇ ଉଠିଛି ଓ ସେହି ଭାବାବେଗକୁ ପ୍ରକାଶ କରିବାପାଇଁ ଅଶେଷ ବ୍ୟାକୁଳତାରେ ତାର ସ୍ୱରତନ୍ତ୍ରୀ ମନକୁ ମନ ସ୍ପନ୍ଦିତ ହୋଇ ଉଠିଛି । ଏହି ସ୍ପନ୍ଦନରୁ ଅଜାଣତରେ ତା ମୁହଁରୁ ଗୁଣୁଗୁଣୁ ଅବୁଝା ଗୀତିମୟୀ ସଂଗୀତ ଗୁଞ୍ଜରି ଉଠିଛି । ଏହି ଅବୁଝା ଗୀତିମୟ ସଂଗୀତରୁ ଭାଷାର ସୃଷ୍ଟି ବୋଲି ଡାରଉଇନ, ସ୍ପେନସର, ଜେସ୍ପର୍ସନ ଆଦି ବିଶିଷ୍ଟ ଭାଷାବିତ୍‌ମାନେ ସ୍ୱୀକାର କରି ଅଛନ୍ତି । ତେଣୁ ଏହା ସ୍ପଷ୍ଟ ଯେ ସଂଗୀତ ଥିଲା ମଣିଷର ଭାବପ୍ରକାଶର ସର୍ବ ପ୍ରଥମ ମାଧ୍ୟମ । ମିଳନ, ବିରହ, ଆନନ୍ଦ, ବିଷାଦ ଆଦି ଭାବ ଗୁଡ଼ିକୁ ମଣିଷ ସଂଗୀତ ଦ୍ୱାରା ପ୍ରକାଶ କରୁଥିଲା । ଆନନ୍ଦର ରାଗମୟ ଅଭିବ୍ୟକ୍ତି ବିଷାଦର ଅଭିବ୍ୟକ୍ତିଠାରୁ ଭିନ୍ନ ଥିଲା । ଏ ପର୍ଯ୍ୟାୟରେ ଶବ୍ଦର କୌଣସି ମହତ୍ତ୍ୱ ନଥିଲା କିମ୍ବା ବିଷୟ ବିକାଶର ବିଧାନ ମଧ୍ୟ ନଥିଲା । ମଣିଷର ଚେତନା ଅନେକାଂଶରେ ପ୍ରକୃତିର ଅନୁକୃତି ସହିତ ସଂଲଗ୍ନ ଥିଲା । ବର୍ବର ଜାତିର କବିତାରେ ଅଥବା ଗୀତରେ ଏ ପ୍ରକାର ସଙ୍କେତ ଦେଖିବାକୁ ମିଳେ । ସେ ସମୟରେ ବ୍ୟକ୍ତିଗତ ଓ ସାମୂହିକ ଚିନ୍ତା ମଧ୍ୟରେ ବିଶେଷ କିଛି ତଫାତ୍ ନଥିଲା । କିନ୍ତୁ ବ୍ୟକ୍ତିନିଷ୍ଠ ଗୀତ ଅଧିକ ସଂଗୀତମୟୀ ହେଉଥିଲା । ପ୍ରାରମ୍ଭିକ କାଳର ଏହି ଗୀତର ସ୍ୱରୂପ କାଳକ୍ରମେ ଦୁଇଟି ଶାଖାରେ ବିଭକ୍ତ ହୋଇ ଯାଇଥିଲା । ଗୋଟିଏ ଶାଖାର ବିକାଶ ସଂଗୀତଶାସ୍ତ୍ରକୁ ଲକ୍ଷ୍ୟ ରଖି ହେଲା ଓ ଦ୍ୱିତୀୟ ଶାଖାର ବିକାଶ କାବ୍ୟ କବିତା ରୂପରେ ହେଲା । ପ୍ରାରମ୍ଭିକ ଲୋକ-ଗୀତର ନମୁନା ସେପରି ମିଳେ ନାହିଁ । କେବଳ ସାହିତ୍ୟରେ ଏହାର ଆଭାସ

କୌଣସି କୌଣସି ସ୍ଥାନରେ ମିଳିଥାଏ । ସମଗ୍ର ବିଶ୍ୱ ସାହିତ୍ୟକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଗୀତହିଁ ସାହିତ୍ୟ ସୃଷ୍ଟିର ଆଦ୍ୟସୋପାନ ।

ଭାରତୀୟ ସାହିତ୍ୟରେ ପ୍ରଥମେ ବେଦର ସୂକ୍ତମାନଙ୍କରେ ଗୀତ କବିତାର ଆଦ୍ୟ ଓଁକାର ଶୁଣିବାକୁ ମିଳିଥାଏ । ମାତ୍ର ବେଦରେ ଯେଉଁ ଗୀତର ନିଦର୍ଶନ ମିଳେ ତାହା ବିଶେଷ ଭାବେ ସ୍ତୁତିମୂଳକ । ଯଜ୍ଞରେ ଉପସ୍ଥାପିତ ହେବା ପାଇଁ, ପ୍ରାଣୀର ମଙ୍ଗଳ ସାଧନ କରିବା ପାଇଁ ନାନା ଛନ୍ଦରେ ଦେବଦେବୀ ସ୍ତୁତି କରି ଯାଇଛି । କିନ୍ତୁ ସେତେବେଳେ ଗୀତ ବେଶ ଲୋକପ୍ରିୟ ଥିଲା ବୋଲି ସାମବେଦର ପ୍ରସିଦ୍ଧ ଗାନଗୁଡ଼ିକରୁ ଜଣାଯାଏ । ଗୀତ ଦେବତାଗଣଙ୍କର ଅତିପ୍ରିୟ ବୋଲି ମୈତ୍ରାଣୀ ସଂହିତାରୁ ଜଣାଯାଏ । (୧) । ସେହିପରି ବାଲ୍ମୀକିଙ୍କ ରାମାୟଣ ଯଦି ଆଦିକାବ୍ୟ ହୁଏ ତେବେ ସେଥିରେ ସଂସ୍କୃତ ଗୀତ କବିତାର ସୁନ୍ଦର ଦୃଷ୍ଟାନ୍ତମାନ ଦେଖିବାକୁ ମିଳେ । ରାମାୟଣରେ ସଂଯୁକ୍ତ ଶ୍ଳୋକ ଗୁଡ଼ିକରେ ସଂଗୀତ ମାଧୁର୍ଯ୍ୟ ଗୁଣଯୁକ୍ତ ବୋଲି ସେଥିରେ ଉଲ୍ଲେଖ ଅଛି (୨) । ତେଣୁ ଜଣାଯାଏ ବୈଦିକ ଯୁଗରେ ଗୀତ କବିତାର ଧାରାମଧ୍ୟ ରହିଥିଲା । ଗୀତମାଧୁର୍ଯ୍ୟ ଛନ୍ଦୋବଦ୍ଧ ଗେୟତା ଓ ଭାବପ୍ରବଣତା ଆଧାରରେ ନିର୍ମିତହୋଇ କ୍ରିୟାଶୀଳ ହୋଇଥିଲା । ଅତଏବ ବୈଦିକଯୁଗର ଗୀତ କବିତାର ସୁଚିନ୍ତିତ ଧାରା ପାଣିନୀ ଓ ପାତଞ୍ଜଳୀଙ୍କ ସମୟକୁ ସମୃଦ୍ଧ ହୋଇଥିଲା ।

ଭାରତୀୟ ସଂସ୍କୃତ ସାହିତ୍ୟରେ ସ୍ୱତନ୍ତ୍ର କ୍ଷୁଦ୍ର ଗୀତ କବିତାର ନିଦର୍ଶନ ମିଳେ ନାହିଁ । ଯଥା ସି ସଂସ୍କୃତ କାବ୍ୟ, ମୁକ୍ତକ, ସଦୁକ୍ତି ମଧ୍ୟରେ ଗୀତ ଧାରାର ପରିଚୟ ମିଳିଥାଏ । ସମୃଦ୍ଧ ସଂସ୍କୃତ ସାହିତ୍ୟରେ ବାଲ୍ମୀକି ଯେପରି ଆଦିକବିରୂପେ ପରିଗଣିତ ହୁଅନ୍ତି ସେହିପରି କାଳିଦାସ ଆଦି ଗୀତକାର ରୂପେ ବିବେଚିତ ହୁଅନ୍ତି । ବାଦ୍ୟ ଓ

---

୧— ଗାଥାଂ ଦେବାଅଗାୟନ୍ ବ୍ରହ୍ମଗନ୍ଧର୍ବା ଅବଦନ୍ତସ୍ମା ଦେବାନୁ ପାବର୍ତ୍ତନ
ତସ୍ମାତ୍ ବିବାହେ ଗାଥାଗୀୟତେ ତସ୍ମାତ୍ ଗାୟନ୍ତ ସ୍ତ୍ରୀୟଃ ପ୍ରୟଃ ।।
(ମୈ: ସଂ ୩ । ୭ । ୩)

୨—"ଅହୋଗୀତସ୍ୟ ମାଧୁର୍ଯ୍ୟ ଶ୍ଳୋକାନାଂଚ ବିଶେଷତଃ"-(ବାଲ୍ମୀକିରାମାୟଣ ୧୮।୧୪)
"ଅଭିଗୀତମିଦଂ ଗୀତଂ ସର୍ବଗୀତେଷୁ କୋବିଦୌ"-(ବାଲ୍ମୀକିରାମାୟଣ ୧।୪।୨୭)

ଅନ୍ତଃ ପ୍ରକୃତିର ମଧୁର ମିଳନରେ ରଚିତ ମେଘଦୂତ ଓ ଋତୁସଂହାର କାବ୍ୟରେ ସମୁଚ୍ଚ ଗୀତିକବିତାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ମେଘଦୂତ କାବ୍ୟରେ ନିର୍ବାସିତ ବିରହୀ ଯକ୍ଷର ପ୍ରିୟାପ୍ରତି ମେଘଦ୍ୱାରରେ ପ୍ରେରିତ ସନ୍ଦେଶର ଗୀତିମୟ ଛନ୍ଦ ଶ୍ରୋତା ଓ ପାଠକର ପ୍ରାଣକୁ ଅଭିଭୂତ କରି ଦିଏ । ମେଘଦୂତ କାବ୍ୟର ଅନୁସାରୀ "ଘଟକର୍ପୂର" କାବ୍ୟରେ ମାତ୍ର ବାଇଶିଗୋଟି ଶ୍ଳୋକରେ ବର୍ଷା ଆଗମରେ ଜନୈକା ବିରହିଣୀର ପ୍ରିୟପ୍ରତି ପ୍ରେରିତ ବାର୍ତ୍ତାରେ ଏପରି ଉଚ୍ଚକୋଟୀର ଗୀତର ନିଦର୍ଶନ ମିଳେ । ଧୋୟୀ କବିଙ୍କର ଶତଶ୍ଳୋକ ସମ୍ବଳିତ "ପବନ ଦୂତ"ରେ, ମାତ୍ର ତେପନ ପଦ ବିଶିଷ୍ଟ ଶୃଙ୍ଗାର ତିଳକରେ; କବି 'ଅମରୁକ'ଙ୍କ ଶତଶ୍ଳୋକ ସମ୍ବଳିତ ଗୀତିମୟୀ ମୁକ୍ତକ ଗୁଚ୍ଛରେ, କବି ଭର୍ତ୍ତୃହରିଙ୍କ ଶୃଙ୍ଗାର ଶତକ, ନୀତିଶତକ, ବୈରାଗ୍ୟ ଶତକରେ, କବି ବାଣଭଟ୍ଟଙ୍କ ଚଣ୍ଡୀ ଶତକ, ମୟୂରଙ୍କ ସୂର୍ଯ୍ୟଶତକ, ବହ୍ଲାଡାଙ୍କ ଶାନ୍ତି ଶତକ, ଆନନ୍ଦ ବର୍ଦ୍ଧନଙ୍କ ଦେବୀ ଶତକ, ଶଙ୍କରାଚାର୍ଯ୍ୟଙ୍କ "ମୋହମୁଦ୍‌ଗର" ଗୋବର୍ଦ୍ଧନ ଆଚାର୍ଯ୍ୟଙ୍କ ଆର୍ଯ୍ୟାସପ୍ତଶତୀ, ଜୟ ଦେବଙ୍କ ଗୀତଗୋବିନ୍ଦ, ପଣ୍ଡିତ ରାଜ ଜଗନ୍ନାଥଙ୍କ ରସଗଙ୍ଗାଧର, ଗଙ୍ଗାଲହରୀ, ସୁଧା-ଲହରି, ଜହ୍ଲଣଙ୍କ ମୁକ୍ତ ମୁକ୍ତାବଳୀ ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନଙ୍କରେ ଅତୀବ ସୁନ୍ଦର, ସରସ, ସୁଲଳିତ, ଭାବପୂର୍ଣ୍ଣ, ଗୀତିଗୁଚ୍ଛ ମାନଙ୍କର ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ସଂସ୍କୃତ ଗ୍ରନ୍ଥ-ରାଜି ବ୍ୟତୀତ ପାଲି ଓ ପ୍ରାକୃତରେ ମଧ୍ୟ ଗୀତି କବିତାର ନିଦର୍ଶନ ମିଳିଥାଏ । ପାଲି ଭାଷାରେ ରଚିତ ଧର୍ମପଦ, ଏକଶତ ସାତଟି ଥେର ଗାଥା, ତେଷଠିଟି ଥେରୀ ଗାଥା ଗୁଡ଼ିକରେ ଉଚ୍ଚକୋଟୀର ଗୀତିକବିତାର ଦୃଷ୍ଟାନ୍ତ ପରିଲକ୍ଷିତ ହୁଏ । ଖ୍ରୀଷ୍ଟୀୟ ଦ୍ୱିତୀୟଶତାବ୍ଦୀରେ ରଚିତ ଭରତଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲେଖଥିବା ଧ୍ରୁବାଗୀତ ଗୁଡ଼ିକ ମୁଖ୍ୟତଃ ସୁରଲୟ ସହ ଗାଇବାକୁ ଉଦ୍ଦିଷ୍ଟଥିଲା । କାଳି ଦାସଙ୍କ ବିକ୍ରମୋର୍ବଶୀୟ ନାଟକର ଚତୁର୍ଥ ଅଙ୍କରେ ମଧ୍ୟ କେତେକ ପ୍ରାକୃତ ଗୀତର ଦୃଷ୍ଟାନ୍ତ ମିଳେ । ପରବର୍ତ୍ତୀ କାଳରେ ଆର୍ଯ୍ୟାଛନ୍ଦରେ ରଚିତ ହାଲଙ୍କର ସାତଶହ ଗାଥା ବିଶିଷ୍ଟ 'ଗାହା-ସତ୍ତାସଇ'ରେ ଶତାଧିକ କବିଙ୍କର କ୍ଷୁଦ୍ର ଗାଥା ଗୁଡ଼ିକ ସନ୍ନିବେଶିତ ହୋଇଛି । ଏହି ଗାଥା ଗୁଡ଼ିକରେ ବିଭିନ୍ନ ପ୍ରାକୃତିକ ଦୃଶ୍ୟ, ବିଭିନ୍ନ ଋତୁ ଓ ନରନାରୀ ହୃଦୟର ଭାବୋଚ୍ଛ୍ୱାସ ସୁନ୍ଦରଭାବେ ବର୍ଣ୍ଣିତ ହୋଇଛି । କବି ରାଜ ଶେଖରଙ୍କ କର୍ପୂରମଞ୍ଜରୀ ସଟ୍ଟକରେ ଋତୁ, ରୂପ, ପ୍ରକୃତି ବର୍ଣ୍ଣନାତ୍ମକ ଗୀତି କବିତାର ଦୃଷ୍ଟାନ୍ତ ମିଳେ । ଜୟ ବଲ୍ଲଭଙ୍କ ସାତଶହ ପଞ୍ଚାନବେ ଶ୍ଳୋକ ବିଶିଷ୍ଟ 'ବଜ୍ଜାଲଗ୍ଗ' ଗ୍ରନ୍ଥରେ ବିଭିନ୍ନ ରସାଶ୍ରୟୀ ଗୀତିକାମାନ ରହିଛି । ସେହିପରି ଜୈନକବି ମାନତୁଙ୍ଗଙ୍କର ଜିନପାର୍ଶ୍ୱନାଥଙ୍କ

ଉଦ୍ଦେଶ୍ୟରେ ଲିଖିତ ଶାନ୍ତରସ ମୂଳକ 'ଭୟହର ସ୍ତୋତ୍ର', କବି ନନ୍ଦଷେଣଙ୍କ ଅଜୟ ସନ୍ତିଅପ୍ସ', ଅଜୟ ଦେବଙ୍କ'ଜତିହୃୟଣ ସ୍ତୋତ୍ର' ଜିନବଲ୍ଲଭଙ୍କ ''ଉଲ୍ଲାସିକଅପ୍ସ'', ଧର୍ମ-ଘୋଷଙ୍କ ''ଋଷିମଣ୍ଡଳସ୍ତୋତ୍ର, ଧର୍ମ ଦାସଙ୍କ 'ଉବଏସମାଳା' ଜୟକୀର୍ତ୍ତିଙ୍କ ଏକଶହ ଛଅ ଗୋଟି ଗାଥା ବିଶିଷ୍ଟ 'ଶିଲୋବଏସମାଲା' ପ୍ରଭୃତି ପ୍ରାକୃତ ଗ୍ରନ୍ଥ ଗୁଡ଼ିକରେ ବହୁସ୍ତୁତି, ଉପଦେଶ ପ୍ରଶସ୍ତି ମୂଳକ ଗୀତି କବିତାର ନିଦର୍ଶନ ମିଳେ ।

ସେହିପରି ଅପଭ୍ରଂଶ ଭାଷାରେ ରଚିତ ବହୁ ସିଦ୍ଧ ସାଧକମାନଙ୍କର ରଚିତ କ୍ଷୁଦ୍ର ବୌଦ୍ଧଗାନ ଦୋହା ଗୁଡ଼ିକର ପରିଚୟ ମିଳେ । ବିବିଧ ଭାବାଶ୍ରୟୀ ଓ ରାଗରାଗିଣୀ ବିଶିଷ୍ଟ ଏହି ଦୋହାଗୁଡ଼ିକରେ ପ୍ରାଚୀନ ଗୀତିକବିତାର ମନୋଜ୍ଞ ବିଳାସ ଦେଖିବାକୁ ମିଳେ । ନାଥଯୁଗରେ ମଧ୍ୟ ପ୍ରାଚୀନ କବିତାର ଦୃଷ୍ଟାନ୍ତ ବିରଳନୁହେଁ । ଗୋରଖନାଥଙ୍କ ନାମରେ ଭଣିତା ଥିବା ଅମରକୋଷଗୀତା ଓ କେତେକ ସ୍ୱତନ୍ତ୍ର କବିତାରେ ପ୍ରାଚୀନ ଗୀତିର ନିଦର୍ଶନ ମିଳେ । ତାଙ୍କ ରଚିତ ଗୋଟିଏ ଗୀତର ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କଲେ ଏହା ସ୍ପଷ୍ଟ ହେବ ।

କଇଲେ ସୁନ୍ଦର ଅର୍ଦ୍ଧନିଶିରୁ କରଇଗଗନ ଶିଖରୀ,/ସୁନା କେଶିପୋଖରୀରେ ରୂପାକେଶୀ ପାଣି / ତହିଁ ବସି ଲୁଗା କାଚଇ ନେତେଇ ଧୋବଣୀ । / ଧୋବୀକାବରକୁ ଗୁହାଡ଼ୀ ପକାଇ ପଶିଗଲା ଝାର / ହାଣିଗଲା ତରୁ ନଷ୍ଟ ପୋଡ଼ିଗଲା ଖାର / ଖଣ୍ଡଗୋଟି ଝଲମଲ ଗଣ୍ଡିଗୋଟି ଭାସେ ।/ ଉବସିନ୍ଧୁ ପାରହେବ ଗୋରେଖନାଥ ଭାଷେ ।

(ଓ. ସା. ଜୟଦେବ ପୃ ୮୧)

ତେଣୁ ଜଣାଯାଏ ଅପଭ୍ରଂଶ ଭାଷାରୁ କ୍ରମେ ସୃଷ୍ଟ ହୋଇଥିବା ଓଡ଼ିଆ, ବଙ୍ଗଳା ହିନ୍ଦୀ, ଆସାମୀ, କାଶ୍ମିର, ପଞ୍ଜାବୀ, କନ୍ନଡ଼ ପ୍ରଭୃତି ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାରେ ପରବର୍ତ୍ତୀ ସମୟରେ ସଂସ୍କୃତ, ପାଲି, ପ୍ରାକୃତ ଓ ଅପଭ୍ରଂଶ ଭାଷାରେ ରଚିତ ଅସଂଖ୍ୟ ଗୀତିଗୁଚ୍ଛର ପ୍ରଭାବରେ ବହୁ କ୍ଷୁଦ୍ର ଗୀତିକାମାନ ସୃଷ୍ଟି ହେଲା । ତେବେ ଓଡ଼ିଆରେ ଗୀତିକବିତାର ସୃଷ୍ଟି ମୂଳରେ ଦ୍ୱାଦଶ ଶତାବ୍ଦୀର ଓଡ଼ିଆ କବି ଶ୍ରୀ ଜୟଦେବଙ୍କ ଗୀତଗୋବିନ୍ଦର ପ୍ରଭାବ ଯଥେଷ୍ଟ ରହିଛି ବୋଲି କୁହାଯାଇପାରେ । ଡ଼ଃ ଜାନକୀବଲ୍ଲଭ ମହାନ୍ତିଙ୍କ ମତରେ— ''ଏହି ଗୀତଗୋବିନ୍ଦର ପ୍ରଭାବରୁ ପରବର୍ତ୍ତୀକାଳରେ ଓଡ଼ିଆ ଗୀତ ବା ଚଉପଦୀ ରଚିତ ହୋଇଥିବା ଅନୁମେୟ ।'' ଡ଼ଃ ନଗେନ୍ଦ୍ର ପ୍ରଧାନ ମଧ୍ୟ ଅନୁରୂପ ମତ ଦେଇଛନ୍ତି— ''+ + ଆମର ମନେହୁଏ ମାର୍କଣ୍ଡ ଦାସ, ବାନକୃଷ୍ଣ

ଉପେନ୍ଦ୍ର, ସଦାନନ୍ଦ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ଏବଂ ବନମାଳୀ ପ୍ରଭୃତିଙ୍କ ଗୀତିକାବ୍ୟ ଭିତରେହିଁ ଓଡ଼ିଆ ସାହିତ୍ୟର ରସ ପ୍ରବାହ ଅଧିକ ଅଥଳ ଓ ଅଧିକ ଉଚ୍ଛ୍ୱସିତ। ଜୟଦେବଙ୍କ ଗୀତିକା ଗୀତ ଗୋବିନ୍ଦ ଏହି ପ୍ରବାହର ମୂଳଉତ୍ସ ଗଙ୍ଗୋତ୍ରୀ । ପୁଣି ସେ ତାଙ୍କର ଓଡ଼ିଆ ସାହିତ୍ୟର ଜୟଦେବ ପୁସ୍ତକରେ ଅନେକ ସ୍ଥାନରେ ଜୟଦେବଙ୍କୁ ଏ ପରଂପରାର ପ୍ରତିନିଧି ଭାବେ ଗ୍ରହଣ କରିଛନ୍ତି । ଜୟଦେବଙ୍କ ପୂର୍ବରୁ ସଂସ୍କୃତ କବି-ମାନେ ପ୍ରସାଦ ଗୁଣଯୁକ୍ତ ପଦ ସଂଗଠନକୁ ବିଶେଷ ପ୍ରଶଂଶା କରୁଥିଲେହେଁ ଗୀତିଛନ୍ଦ ପ୍ରୟୋଗରେ ସେପରି ସାର୍ଥକ ହୋଇପାରି ନଥିଲେ । ମାତ୍ର ଜୟଦେବ ସଂସ୍କୃତ ସାହିତ୍ୟରେ ପ୍ରଥମଥର ପାଇଁ ଗୀତିଛନ୍ଦର ସାର୍ଥକ ସଫଳ ପ୍ରୟୋଗ କରିଥିଲେ । ସେ ବିଭିନ୍ନ ରାଗ ଓ ତାଳ ନିର୍ଦ୍ଦେଶ କରିବା ସଙ୍ଗେ ସଙ୍ଗେ ଯତିପାତ ନିୟମପ୍ରତି ବିଶେଷ-ଭାବେ ଦୃଷ୍ଟି ଦେଇଥିଲେ । ଗୀତଗୋବିନ୍ଦର ଗୀତ ଗୁଡ଼ିକ ଅଷ୍ଟପଦୀ ନାମରେ ନାମିତ ହେଲା । ଏହାର ସୁଲଳିତ, ସୁମଧୁର କାନ୍ତକୋମଳ ମାଧୁର୍ଯ୍ୟ ବିମଣ୍ଡିତ ପଦାବଳୀର ପ୍ରଭାବ ଓଡ଼ିଆ ଗୀତିକବିତା ଉପରେ ଯଥେଷ୍ଟ ଭାବେ ପଡ଼ିଛି । ଏହାର ପଦାବଳୀ କେତେ କୋମଳ ଓ ଲଳିତ, ମାତ୍ର ଗୋଟିଏ ଦୃଷ୍ଟାନ୍ତ ଦେଲେ ଏହାସ୍ପଷ୍ଟ ହେବ ।

ଲଳିତ ଲବଙ୍ଗଲତା ପରିଶୀଳନ କୋମଳମଳୟ ସମୀରେ
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ ।
(ଗୀତ ଗୋବିନ୍ଦ)

ପୁରୁଷୋତ୍ତମଦେବଙ୍କ ରାଜ ଦରବାରର ସଭାପଣ୍ଡିତ କବିଚନ୍ଦ୍ର ରାୟ ଦିବାକର ମିଶ୍ର ଗୀତଗୋବିନ୍ଦର ଛନ୍ଦ ଶୈଳୀକୁ ଆଧାରକରି ଅଭିନବ ଗୀତଗୋବିନ୍ଦ ନାମକ ଖଣ୍ଡିଏ ପୁସ୍ତକ ରଚନା କରିଥିଲେ । ସେତେବେଳକୁ ଜୟଦେବଙ୍କ ବିରଚିତ ଗୀତ ଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ତଥା ଓଡ଼ିଶାର ଜନସାଧାରଣଙ୍କ ନିକଟରେ ସୁଗେୟ କାବ୍ୟ ରୂପେ ପ୍ରସିଦ୍ଧି ଲାଭ କରିସାରିଥିଲା । ଗୀତଗୋବିନ୍ଦର ସୁଖ୍ୟାତିକୁ କ୍ଷୁର୍ଣ୍ଣ କରିବା ଲାଗି କବିଚନ୍ଦ୍ର ରାଜାଙ୍କୁ ପ୍ରବର୍ତ୍ତାଇ କିଛି ଦିନ ଲାଗି ଶ୍ରୀମନ୍ଦିରରେ ନିଜର ପୁସ୍ତକ ଗାନ କରାଇବାର ବ୍ୟବସ୍ଥା କରିଥିଲେ । କିନ୍ତୁ ଗୀତ ଗୋବିନ୍ଦର କାନ୍ତକୋମଳ ପଦା-ବଳୀ ତୁଳନାରେ ତାହା ସମକକ୍ଷ ନହେବାରୁ ଧୀରେ ଧୀରେ ଜନମାନସରୁ ବିସ୍ମୃତ ହୋଇ ଯାଇଥିଲା । ଦୃଷ୍ଟାନ୍ତ ସ୍ୱରୂପ ଅଭିନବ ଗୀତ ଗୋବିନ୍ଦରୁ ଗୋଟିଏ ପଦ ଉଲ୍ଲେଖ ହେଲା ।

ଘନ କଞ୍ଚୁଭର ଭରଭଗତ ମନୋହର ଗର୍ଭକ ମପନସ୍ୱରନ୍ତ ସୁଖେ ଦଂ
ମୃଗମଦ ଚନ୍ଦ କମଳ ବିମୁଦସ୍ୱ କୁଚ ଯୁଗଳେଧିଛଂ ଶୁଭପଦଂ ।

ଏହା ବ୍ୟତୀତ ଗୀତ ଗୋବିନ୍ଦ ଅନୁସରଣରେ ନାରାୟଣ ଭଞ୍ଜ "ରୁକ୍ମିଣୀ ପରିଣୟ", ରାୟ ରାମାନନ୍ଦ ଶ୍ରୀଜଗନ୍ନାଥ ବଲ୍ଲଭ ନାଟକରେ କେତେକ ଗୀତଗୁଚ୍ଛ, ରଘୁନାଥ ତୀର୍ଥ କୃଷ୍ଣଭକ୍ତି ମୂଳକ 'ମୁକୁନ୍ଦ ବିଳାସ'ର କେତେକ ଗୀତ କବିତା, ଅଗ୍ନିଚିତ ନିତ୍ୟାନନ୍ଦଙ୍କ 'ଶ୍ରୀ କୃଷ୍ଣ ଲୀଳାମୃତ' ଓ 'ଶିବ ଲୀଳାମୃତ' ଆଦି କାବ୍ୟ କବିତା ରଚନା କରିଥିଲେ । ଏ ଗୁଡ଼ିକ ଗୀତ ଗୋବିନ୍ଦ ଅନୁକରଣରେ ରଚିତ ହୋଇଥିଲେହେଁ ଗୀତ ଗୋବିନ୍ଦ ପରି ଲୋକ ପ୍ରିୟତା ଅର୍ଜନ କରି ପାରି ନଥିଲା । ତଥାପି ଉପରୋକ୍ତ ପୁସ୍ତକ ଗୁଡ଼ିକର ଆଳଙ୍କାରିକ ଭାଷା ଓ ସ୍ୱନମୟ ଛନ୍ଦ ଦୃଷ୍ଟିରୁ ଓଡ଼ିଆ ଗୀତ କବିତାର ଖୁବ୍ ନିକଟବର୍ତ୍ତୀ ଜଣାପଡନ୍ତି । ତେଣୁ ଜଣାଯାଏ ଗୀତ ଗୋବିନ୍ଦ ଓ ତଦ ଅନୁକୃତ କାବ୍ୟ କବିତା ଗୁଡ଼ିକ ଓଡ଼ିଆ ଗୀତ କବିତା ରଚନା ପାଇଁ ଯଥେଷ୍ଟ ପ୍ରେରଣା ଯୋଗାଇଥିଲା । କେବଳ ଓଡ଼ିଆ କାହିଁକି ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ସୃଷ୍ଟ ଗୀତ କବିତାକୁ ଏ ଗୁଡ଼ିକ ଯେ ଯଥେଷ୍ଟ ପ୍ରେରଣା ଦେଇଥିଲେ ଏହା କହିବା ବାହୁଲ୍ୟ ମାତ୍ର ।

ଚତୁର୍ଦ୍ଦଶ ଶତାବ୍ଦୀ ପରେ ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ରଚିତ ଗୀତ କବିତା ଗୁଡ଼ିକ ବିଭିନ୍ନ ରୂପରେ ସାହିତ୍ୟରେ ସ୍ୱତନ୍ତ୍ର ଆସନ ଅଧିକାର କଲେ । ବଂଗଳା ସାହିତ୍ୟରେ ଏହା ପଦାବଳୀ, ବାଉଲ, କଡ଼ଚା, ମଙ୍ଗଳ ରୂପରେ, ହିନ୍ଦୀ ସାହିତ୍ୟରେ ଏହା ଦୋହା; ସାଖୀ, ନଖଶିଖା, ବାଇଶି, ପଚିଶି ଇତ୍ୟାଦି ରୂପରେ, ଆସାମୀ ସାହିତ୍ୟରେ ଏହା ଗୋଆଲରୀ,ଲଦିମା, ଚଇତାବାର, ମଡାର ଆଦି ରୂପରେ ଓ ଓଡ଼ିଆ ସାହିତ୍ୟରେ ଏହା ଚଉପଦୀ, ଚଉତିଶା, କୋଇଲି, ସନ୍ଦେଶ ଗୀତିକା, ବୋଲି, ଷୋଡ଼ଶା ପଦିଆ, ବାରମାସୀ, ମଙ୍ଗଳ ଗୀତ, ଚଟାଉ ଗୀତିକା ଆଦି ସ୍ୱତନ୍ତ୍ର ନାମରେ ନାମିତ ହେଲା । ନିମ୍ନରେ ଓଡ଼ିଆ ଚଉପଦୀ ସାହିତ୍ୟ ଉପରେ କିଞ୍ଚିତ୍ ଆଲୋଚନା କରାଗଲା ।

ଚଉପଦୀ ସାହିତ୍ୟ ପ୍ରାଚୀନ ଗୀତ ଭଣ୍ଡାରର ସବୁଠାରୁ ଶ୍ରେଷ୍ଠ ଓ ଅଧିକ ଲୋକପ୍ରିୟ ବିଭାବ । ଏହି ଚଉପଦୀ ରଚନା ମୂଳରେ ସଂସ୍କୃତ କାବ୍ୟ କବିତାମାନଙ୍କରେ ବ୍ୟବହୃତ ହୋଇଥିବା ଚତୁଃଷ୍ପଦୀ, ଷଟ୍ପଦୀ, ଅଷ୍ଟପଦୀ କବିତା ଗୁଡ଼ିକର ପ୍ରେରଣା ନିହିତ ଥିବାର ଜଣା ପଡେ । ଭାରତୀୟ ସଂଗୀତ ଶାସ୍ତ୍ରରେ ଏହା କ୍ଷୁଦ୍ର ଗୀତ ନାମରେ ପ୍ରସିଦ୍ଧ ।

ସଂକ୍ଷିପ୍ତ ଓଡ଼ିଆ ଜ୍ଞାନକୋଷ ଓ ପୂର୍ଣ୍ଣଚନ୍ଦ୍ର ଭାଷାକୋଷାନୁଯାୟୀ ଚାରି କିମ୍ବା କିଞ୍ଚିତ ତତୋଽଧିକ ପଦହୋଇଛି ଚଉପଦୀ । କିନ୍ତୁ ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ଚଉପଦୀ ଶବ୍ଦର ପ୍ରୟୋଗ ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ ଓଡ଼ିଆ ସାହିତ୍ୟରେ ଲିଖିତ ସଂଗୀତାବଳୀକୁ ଚଉପଦୀ ଅର୍ଥରେ ଗ୍ରହଣ କରାଯାଇଛି । ଜଗନ୍ନାଥ ଦାସଙ୍କ ଗୁରୁଚଉ-ପଦୀ, ଶୋଳ ଚଉପଦୀ, ଦୀନକୃଷ୍ଣଦାସଙ୍କ ଚଉପଦୀମାଳା, ଧନଞ୍ଜୟଭଞ୍ଜଙ୍କ ଚଉପଦୀ-ଭୂଷଣ, ଉପେନ୍ଦ୍ର ଭଞ୍ଜଙ୍କ ଚଉପଦୀଚନ୍ଦ୍ର, ଚଉପଦୀଭୂଷଣ, ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ଚଉପଦୀ-ଚିନ୍ତାମଣି, କବିସୂର୍ଯ୍ୟ ବଳଦେବଙ୍କ ଚଉପଦୀ ଚନ୍ଦ୍ରୋଦୟ, ନୃସିଂହ ପଟ୍ଟନାୟକଙ୍କ ଚଉପଦୀ ଭୂଷଣ, ଗୋପାଳକୃଷ୍ଣ ଦେବଙ୍କର ଭଜନ ଚଉପଦୀ ଆଦି ଗ୍ରନ୍ଥ ଅନୁଧ୍ୟାନକଲେ ଜଣାଯାଏ ଯେ ଏହି ଚଉପଦୀ ସାହିତ୍ୟ କୌଣସି ନିର୍ଦ୍ଦିଷ୍ଟ ପଦ ସଂଖ୍ୟା ଭିତରେ ଆବଦ୍ଧ ନ ହୋଇ କ୍ଷୁଦ୍ର ସଂଗୀତ ଭାବରେ ବ୍ୟବହୃତ ହୋଇଛି । ଏହା ବ୍ୟତୀତ ଶହଶହ କବିଙ୍କର କ୍ଷୁଦ୍ର ଚଉପଦୀ ଗୁଡ଼ିକ ପ୍ରାଚୀନ ପୋଥିରେ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ତେଣୁ ଜଣାଯାଏ ଷୋଡ଼ଶ ଶତାବ୍ଦୀରୁ ବିଂଶଶତାବ୍ଦୀ ମଧ୍ୟଭାଗପର୍ଯ୍ୟନ୍ତ ଓଡ଼ିଆରେ ଚଉପଦୀର ଆଦର ଓ ପ୍ରସାର ଯଥେଷ୍ଟ ଭାବେ ହୋଇଥିଲା । ବନମାଳୀ ଦାସଙ୍କ ଚିତ୍ରକାବ୍ୟ ରାମାୟଣ ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଏପରିକି ରାମଚନ୍ଦ୍ର ଦେବ, ଧନଞ୍ଜୟଭଞ୍ଜ ପ୍ରଭୃତି କେତେକ କବି ସେମାନଙ୍କର ଚଉତିଶା ଗୁଡ଼ିକୁ ବର୍ଣ୍ଣ ପର୍ଯ୍ୟାୟରେ ଚଉତିରିଶଗୋଟି ସ୍ୱତନ୍ତ୍ର ଚଉପଦୀ ମାଧ୍ୟମରେ ରଚନା କଲେ । ଆଉ କେତେକ କବି ସେମାନଙ୍କର ଚଉ-ତିଶାକୁ ଚଉପଦୀ ଆକାରରେ ଅର୍ଥାତ୍ ଚାରି କିମ୍ବା ପାଞ୍ଚ ପଦ ମଧ୍ୟରେ ଆବଦ୍ଧ କରି ଗୋଟିଏ ପଦରେ ପାଞ୍ଚ କିମ୍ବା ଛଅ ପାଦକୁ ବର୍ଣ୍ଣ କ୍ରମରେ ରଖିବାକୁ ଚେଷ୍ଟା କଲେ । ଏଥିରୁ ଜଣାଯାଏ ପ୍ରାଚୀନ ସାହିତ୍ୟରେ ଚଉପଦୀ ବିଭାଗଟି ସବୁଠାରୁ ଅଧିକ ଲୋକ-ପ୍ରିୟତା ଅର୍ଜନ କରିଥିଲା । କାରଣ ଚଉପଦୀ ହେଉଛି କବିର ଅନ୍ତର୍ନିହିତ ଚିନ୍ତାରୁ ନିଃସରିତ ସ୍ୱତଃସ୍ଫୂର୍ତ୍ତ, ପୂର୍ବାପର ସମ୍ବନ୍ଧ ବିହୀନ, ବିଭିନ୍ନ ରସ ଓ ରାଗ ରାଗିଣୀ ସମ୍ବଳିତ, ଭାବପୂର୍ଣ୍ଣ, ମାର୍ମିକ, ଆବେଦନନିଷ୍ଠ, ସରଳ ଓ ସ୍ୱାଭାବିକ ଭାବେ ଅଭିବ୍ୟକ୍ତ ହୋଇଥିବା ସ୍ୱୟଂ ସଂପୂର୍ଣ୍ଣ ମାଧୁର୍ଯ୍ୟ ବିମଣ୍ଡିତ କ୍ଷୁଦ୍ରଗୀତ ।

ପ୍ରାଚୀନ ଚଉପଦୀ ସାହିତ୍ୟକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ-(କ) ଭକ୍ତିମୂଳକ ଚଉପଦୀ (ଖ) କାଳ୍ପନିକ ଚଉପଦୀ । ଭକ୍ତି ମୂଳକ ଚଉପଦୀ ତିନି ଭାଗରେ ବିଭକ୍ତ— (୧) ନିର୍ଗୁଣ ଭକ୍ତିମୂଳକ (୨) ଶୁଦ୍ଧା ଭକ୍ତିମୂଳକ (୩) ପ୍ରେମାତ୍ମିକ ଭକ୍ତିମୂଳକ । ୧) ନିର୍ଗୁଣ ଭକ୍ତିମୂଳକ ଚଉପଦୀ ଗୁଡ଼ିକ ବ୍ରହ୍ମଜ୍ଞାନ, ଶରୀର ଭେଦ ଓ

ମନଶିକ୍ଷାମୂଳକ । ଏ ପ୍ରକାର ଚଉପଦୀଗୁଡ଼ିକ ପଞ୍ଚସଖା ଓ କିଞ୍ଚିତ ପରବର୍ତ୍ତୀ ଯୁଗରେ ରଚିତ ହୋଇଥିଲା । ଏଥିରେ ନିର୍ଗୁଣ ବ୍ରହ୍ମଙ୍କର ନିଷ୍କାମ ଭାବନା ଓ ବନ୍ଦନା କରାଯାଇଥାଏ । ଶୁଦ୍ଧାଭକ୍ତି ବା ସଗୁଣ ଚଉପଦୀଗୁଡ଼ିକ ଶ୍ରୀଜଗନ୍ନାଥ, ଶ୍ରୀକୃଷ୍ଣ, ଶ୍ରୀରାମ, ଶିବ, ଶକ୍ତି ପ୍ରଭୃତି ଦେବଦେବୀଙ୍କୁ ଆଧାର କରି ରଚିତ ହୋଇଛି । କବି ନିଜର ଉପାସ୍ୟ ଦେବତାଙ୍କର ରୂପ, ଗୁଣ, ଲୀଳା, ମହିମାଦି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ନିଜର ଦୁଃଖ ମଧ୍ୟ ତାଙ୍କଠାରେ ଜଣାଇଛନ୍ତି । ବିଶେଷଭାବେ ଶ୍ରୀକୃଷ୍ଣ ଓ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଅସଂଖ୍ୟ ଚଉପଦୀମାନ ରଚିତ ହୋଇଛି । ପ୍ରେମାତ୍ମିକ ଭକ୍ତିମୂଳକ ଚଉପଦୀ ରାଧାକୃଷ୍ଣ ଓ କୃଷ୍ଣ ଗୋପୀଙ୍କର ପୂର୍ବରାଗ, ମାନ, ପ୍ରବାସ, ମିଳନ ଆଦିକୁ ଉପଜୀବ୍ୟ କରି ରଚିତ ହୋଇଛି । ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପରେ ଏ ପ୍ରକାର ଚଉପଦୀ ବହୁଳ ପରିମାଣରେ ରଚିତ ହୋଇଥିଲା । କାଳ୍ପନିକ ବା ଲୌକିକ ଚଉପଦୀଗୁଡ଼ିକୁ ମଧ୍ୟ ଦୁଇ ଭାଗରେ ବିଭକ୍ତ କରାଯାଇପାରେ— (୧) ମିଳନାତ୍ମକ ଚଉପଦୀ (୨) ବିରହାତ୍ମକ ଚଉପଦୀ । ମିଳନାତ୍ମକ ଚଉପଦୀଗୁଡ଼ିକରେ ନାୟକ ନାୟିକାର ଗୃହ, ମାନ, ମାନଭଙ୍ଗ ପ୍ରଭୃତି ସ୍ଥାନ ପାଇଥାଏ । ଏ ସବୁ ମିଳନର ପୂର୍ବରାଗ ରୂପେ ଉଦ୍ଦିଷ୍ଟ । କିନ୍ତୁ ବିରହାତ୍ମକ ଚଉପଦୀଗୁଡ଼ିକରେ ଲୌକିକ ବିରହର ବର୍ଣ୍ଣନା ଅଧିକ ମାତ୍ରାରେ ହୋଇଛି । ନାୟକର ନାୟିକା ପ୍ରତି ଛଳୋକ୍ତି, ଗୃହକୁ ନାୟିକାର ସଖୀ ପ୍ରତି ଛଳୋକ୍ତି, ନାୟିକାର ଅନୁପସ୍ଥିତିରେ ନାୟକର ବିରହମୂଳକ ଅନୁଚିନ୍ତନ ଆଦିରେ ଏ ପ୍ରକାର ଚଉପଦୀଗୁଡ଼ିକ ମଣ୍ଡିତ । ଜଣାଯାଏ ପଞ୍ଚଦଶ ଶତାବ୍ଦୀରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସହସ୍ରାଧିକ ଚଉପଦୀ ରଚିତ ହୋଇ ଓଡ଼ିଆ ସାହିତ୍ୟର ଗନ୍ତାଘରକୁ ପୁଷ୍ଟ କରିଛି ।



Poetry is simply the most beautiful, impressive and widely effective mode of saying things.

—Mathew Arnold—

# ଶାକ୍ତ ଧର୍ମର ବିକାଶ

● ପ୍ରମୋଦ ସାହୁ

ପୁଣ୍ୟଭୂମି ଉତ୍କଳ ବିଭିନ୍ନ ଧର୍ମ ଦର୍ଶନର ଲୀଳାଭୂମି ରୂପେ ସମ୍ମାନିତ । ଏ ଦେଶର ପ୍ରତି ଅଣୁପରମାଣୁରେ ଯେପରି ରହିଛି ଧର୍ମର ଉଦାତ୍ତ ସ୍ପର୍ଶ ସେହିପରି ଦେଶର ସାହିତ୍ୟରେ ମଧ୍ୟ ଧର୍ମ ଦର୍ଶନର ମୁଦ୍ରାଙ୍କ ସୁସ୍ପଷ୍ଟ । ମଣିଷ ସମାଜର ବିକାଶ ପଥରେ ଧର୍ମ ହେଉଛି ପ୍ରଥମଧାରା, ଯାହା ମଣିଷ ସମାଜକୁ ସଂଘବଦ୍ଧ ଭାବରେ ନିଜର କର୍ତ୍ତବ୍ୟ ସଂପାଦନ କରିବାକୁ ଉତ୍ସାହିତ କରିଛି । ପଞ୍ଚଦଶ ଶତାବ୍ଦୀଠାରୁ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଯେଉଁ ସାହିତ୍ୟ ଦେଖିବାକୁ ମିଳେ ସେଥିରେ ରହିଛି ଧର୍ମର ଉଚ୍ଛ୍ୱଳ ପ୍ଲାବନ । କାଳର କରାଳ ସ୍ରୋତରେ କେତେ ଧର୍ମ ମସ୍ତକ ଉତ୍ତୋଳନ କରିଛି ଏବଂ କେତେ ଧର୍ମର ସତ୍ତା ମଧ୍ୟ ନଷ୍ଟ ହୋଇଯାଇଛି । ଯେଉଁ ଧର୍ମଗୁଡ଼ିକ ବିକଶିତ ରୂପନେଇ ଜନମାନସକୁ ସ୍ପର୍ଶ କରିଥିଲା ସେଗୁଡ଼ିକ ସମାଜରେ ନିଜର ଦୃଢ଼ ଆସନ ବାଛି ନେଇଥିଲା । ଶାକ୍ତ ଧର୍ମର ଆଲୋଚନା ପୂର୍ବରୁ ଧର୍ମ ସମ୍ବନ୍ଧରେ ସମ୍ୟକ ଆଲୋଚନା କରାଗଲେ ଅପ୍ରାସଂଗିକ ହେବନାହିଁ ।

ଧର୍ମର ସଂଜ୍ଞା ନିରୂପଣ କରିବାକୁ ଯାଇ ବିଭିନ୍ନ ପଣ୍ଡିତ ଭିନ୍ନ ଭିନ୍ନ ମତ ପୋଷଣ କରିଛନ୍ତି । 'ଧୃ' ଧାତୁରୁ ଧର୍ମ ଶବ୍ଦର ଉତ୍ପତ୍ତି । ଯେ ସଂସାରକୁ ଧାରଣ କରେ ସେ ଧର୍ମ ଏବଂ ବିଶ୍ୱପିତା ନିଖିଳ ସଂସାରକୁ ଧାରଣ କରିଥିବାରୁ ଓ ନିଖିଳ ବିଶ୍ୱର ଆଧାର ହୋଇ ଥିବାରୁ ସେ ହିଁ ଧର୍ମ । ସେଥିପାଇଁ ମନୁସଂହିତାରେ କୁହାଯାଇଛି—

"ଧୃୟତେ ଧର୍ମ ଇତ୍ୟାହୁଃ ସ ଏବ ପରମପ୍ରଭୂଃ" ସ୍ତ୍ର

ଅନ୍ୟତ୍ର ମନୁସଂହିତାରେ ଧର୍ମର ଗୁଣ ସମ୍ବନ୍ଧରେ ବର୍ଣ୍ଣନା ଅଛି ।

"ଧୃତି କ୍ଷମା ଦମୋଽସ୍ତେୟଂ ଶୌଚମିନ୍ଦ୍ରିୟ ନିଗ୍ରହଃ
ଧୀ ର୍ବିଦ୍ୟା ସତ୍ୟମକ୍ରୋଧୋ ଦଶକଃ ଧର୍ମ ଲକ୍ଷଣଂ ।"

ଅର୍ଥାତ— ଧୃତି, କ୍ଷମା, ଅସୂୟା, ଶୌଚ, ଇନ୍ଦ୍ରିୟ ନିଗ୍ରହ, ଧୀ, ବିଦ୍ୟା, ସତ୍ୟ, ଅକ୍ରୋଧ— ଏହି ଦଶଗୋଟି ଧର୍ମର ଲକ୍ଷଣ ଅଟେ ।

ଅନ୍ୟ କେତେକଙ୍କ ମତରେ ଧର୍ମଧାରଣା ମାନବୀୟ ପ୍ରକୃତିଗତ ଦୁର୍ବଳତାରୁ ସମ୍ଭୂତ । ସେ ଯା'ହେଉ ଈଶ୍ୱର ପ୍ରତିଧର୍ମର ପ୍ରକୃତିଗତ ବିଭିନ୍ନତା ସତ୍ତ୍ୱେ ନିର୍ଦ୍ଦିଷ୍ଟ ଆତ୍ମିକ ଲକ୍ଷ୍ୟଦେଇ ଧର୍ମ ମନୁଷ୍ୟ ହୃଦୟରେ ପ୍ରଭାବ ବିସ୍ତାର କରି ପାରିଛି ।

ସାହିତ୍ୟ ହେଉଛି ମାନବ ଜୀବନ ଓ ସଂସ୍କୃତିର ଏକ ପ୍ରତିଛବି । ସାହିତ୍ୟ ଓ ଧର୍ମ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ପ୍ରାଚୀନ ଓଡ଼ିଆ ସାହିତ୍ୟ ମୁଖ୍ୟତଃ ଧର୍ମପ୍ରଣୋଦିତ ସାହିତ୍ୟ । ଓଡ଼ିଆ ସାହିତ୍ୟରେ ଯେଉଁ ଯେଉଁ ଧର୍ମଧାରା ଗୁଡ଼ିକର ପ୍ରତିଫଳନ ଦେଖିବାକୁ ମିଳେ ସେଗୁଡ଼ିକ ହେଉଛି ବୌଦ୍ଧ, ଶାକ୍ତ, ନାଥ, ବୈଷ୍ଣବ, ମହିମା ଓ ବ୍ରାହ୍ମ । କିନ୍ତୁ ଶାକ୍ତ-ଧର୍ମ ଏଭଳି ଏକ ଧର୍ମ ଯାହା ଅନ୍ୟ ସମସ୍ତ ଧର୍ମକୁ ବିକଶିତ ଓ ପରିପୁଷ୍ଟ କରିବାରେ ସାହାଯ୍ୟ କରିଛି । ଶାକ୍ତଧର୍ମ ତାନ୍ତ୍ରିକଧର୍ମର ଏକରୂପାନ୍ତର ମାତ୍ର । ତନ୍ତ୍ରଶବ୍ଦର ଅର୍ଥ ନୀତିନିୟମ ବା ଶାସନ ପ୍ରଣାଳୀ । ତନ୍ତ୍ର ହେଉଛି ଏକ ଜ୍ଞାନ ଯାହା ମନୁଷ୍ୟଭିତରେ ଥିବା ଆଧ୍ୟାତ୍ମିକ ଶକ୍ତିର ବିକାଶ ପାଇଁ ସୁସଂଗତ ଓ ବୈଜ୍ଞାନିକ ପ୍ରଣାଳୀ ଦର୍ଶାଇଥାଏ । ତନ୍ତ୍ର-ମତ ବୈଦିକ ଯୁଗରୁ ପ୍ରଚଳିତ ଥିଲା ବୋଲି ନଳିନୀକାନ୍ତ ବ୍ରହ୍ମା ମତ ପ୍ରଦାନ କରିଅଛନ୍ତି । ତାଙ୍କ ମତରେ ଋକ୍‌ବେଦର ଦଶମ ମଣ୍ଡଳ ଦେବୀସୂକ୍ତରେ ଦେବୀ ଦୁର୍ଗାଙ୍କ ଉଦ୍ଦେଶ୍ୟରେ ମନ୍ତ୍ର ରଚିତ ହୋଇ ଥିବାର ଜଣାଯାଏ ।

ଶାକ୍ତଧର୍ମ ଓ ତାନ୍ତ୍ରିକଧର୍ମ ମଧ୍ୟରେ ମୁଖ୍ୟତଃ କିଛି ପାର୍ଥକ୍ୟ ନାହିଁ, କାରଣ ଉଭୟତନ୍ତ୍ର ଓ ଶାକ୍ତମତରେ ଶକ୍ତିକୁ ପ୍ରାଧାନ୍ୟ ଦିଆଯାଇଥାଏ । ଶକ୍ତିବ୍ୟତିରେକ ଶିବଙ୍କର ଅସ୍ତିତ୍ୱ ଅସମ୍ଭବ । ଶକ୍ତିବିନା ଶିବ ଶବ । ଶିବ ଯେପରି ଶକ୍ତି ବିନା ତିଷ୍ଠି ବା ଅସ-ମ୍ଭବ, ଶକ୍ତି ସେହିପରି ଶିବ ବିନା ଜୀବନଧାରଣ କରିବା ଅସମ୍ଭବ । ତନ୍ତ୍ରଶାସ୍ତ୍ରରେ ଏ ବିଷୟରେ ବର୍ଣ୍ଣିତଅଛି— "The attempt to identify Sakti with woman is an error, Siva is commonly said to be the male principle, and Sakti the female principle. As a matter of fact, they are neither male nor female nor are they neuter" (The cultural Heritage of India-vol-iv-page 250) ଶିବ ଓ ଶକ୍ତିଙ୍କର ମହାତ୍ମ୍ୟର ନିମନ୍ତେ ପୁରୁଷ ଏବଂ ପ୍ରକୃତିର ଏକତ୍ୱ ପ୍ରତିପାଦନ ନିମନ୍ତେ ପୌରାଣିକ ଉପାଖ୍ୟାନ ବାରମ୍ବାର ମାନବ ସମାଜକୁ ଶିକ୍ଷାଦାନ କରିଅଛନ୍ତି ।

ଭାରତର ଏଇ ପବିତ୍ର ମାଟି ଉପରେ ଶକ୍ତି ଉପାସନାର ସୂତ୍ରପାତ କେବେ ହୋଇଥିଲା ସେ ବିଷୟରେ ନିର୍ଦ୍ଦିଷ୍ଟ ଭାବରେ ପ୍ରକାଶ କରିବା ସମ୍ଭବନୁହେଁ । ପଣ୍ଡିତ-ମାନଙ୍କ ମତରେ ପ୍ରାକ୍ ବୈଦିକ ଯୁଗରେ ଏ ଦେଶରେ ଶକ୍ତି ଉପାସନର ପ୍ରଚଳନ ଥିଲା । ମହେଞ୍ଜୋଦାରୋ ଓ ହରପ୍ପା ସଭ୍ୟତାରୁ ଏହା ପ୍ରମାଣିତହୁଏ । ମାକେଞ୍ଜିଙ୍କ ମତରେ ଦୁର୍ଗା ଓ ଶିବପୂଜା ପ୍ରାଗ୍‌ବୈଦିକ କାଳରୁ ଆର୍ଯ୍ୟେତରମାନଙ୍କ ଦ୍ୱାରା ଏଦେଶରେ ପ୍ରଚଳିତଥିଲା । ତାଙ୍କମତରେ—"The clay figures and phallic beant-ydic stones suggest that Durga and Siva worship was of very much greater antiquity in India than has hither to been supposed."

ମାନବ ଜାତିର ଆଦିଗ୍ରନ୍ଥ ଭାବରେ ପରିଗଣିତ ହେଉଥିବା ବେଦର ରଚନା ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ହୋଇଥିବାର ପ୍ରମାଣ ସେଥିରୁ ମିଳେ । ସୁତରାଂ ଏହା ନିଃସନ୍ଦେହ ଯେ ଶକ୍ତିର ଉପାସନା ପାଞ୍ଚହଜାରବର୍ଷ ପୂର୍ବରୁ ଆରମ୍ଭ ହୋଇଥିଲା । ଋକ୍‌ବେଦର ଦେବୀସୂକ୍ତ ଓ ରାତ୍ରିସୂକ୍ତ ଏବଂ ସାମବେଦର ରାତ୍ରିସୂକ୍ତକୁ ଏହାର ପ୍ରମାଣ ହିସାବରେ ନିଆଯାଇପାରେ । ଅଷ୍ଟମନ୍ତ୍ର ବିଶିଷ୍ଟ ଦେବୀସୂକ୍ତର ଋଷିଥିଲେ ମହର୍ଷି ଅମ୍ଭୃ,ତାଙ୍କ କନ୍ୟା ବ୍ରହ୍ମବାଦିନୀ 'ବାକ୍' । ଏହି ଶକ୍ତି ସ୍ୱରୂପିଣୀ ଦେବୀ 'ବାକ୍' ବ୍ରହ୍ମ ଶକ୍ତିକୁ ସ୍ୱୀୟ ଆତ୍ମାଭାବେ ଅନୁଭବ କରି କହିଥିଲେ- ମୁଁ ବ୍ରହ୍ମମୟୀ ଆଦ୍ୟା-ଦେବୀ ଈଶ୍ୱରୀ । ପୁନଶ୍ଚ ଋକ୍‌ବେଦୀୟ ମନ୍ତ୍ରରେ ଦେବୀ ଭୁବନେଶ୍ୱରୀଙ୍କ ଆରାଧନା କରାଯାଇଥାଏ ।,ଏତଦ୍‌ଭିନ୍ନ ଅନ୍ୟ ଦେବୀଙ୍କର ବିଷୟ ମଧ୍ୟ ଋକ୍ ବେଦରୁ ଦେଖିବାକୁ ମିଳେ । ସପ୍ତଚଣ୍ଡୀ ଯେ ବେଦର ମୂଳ ଏକଥା ନିଃସନ୍ଦେହରେ କୁହାଯାଇପାରେ । ପୁନଶ୍ଚ ଋକ୍‌ବେଦର ଦେବୀ ସୂକ୍ତରେ ବର୍ଣ୍ଣିତ ଅଛି— "ମୁଁ ଏକାଦଶ ରୁଦ୍ର ଓ ଅଷ୍ଟବସୁ ସହିତ ବିଚରଣ କରିଥାଏ । ମୁଁ ଆଦିତ୍ୟ ଓ ବିଶ୍ୱ ଦେବତାଙ୍କ ସହିତ ସଂଯୁକ୍ତ ହୋଇ ରହିଅଛି । ମୁଁ ମିତ୍ର,ବରୁଣ, ଇନ୍ଦ୍ର,ଅଗ୍ନି ଓ ଅଶ୍ୱିନୀକୁମାର ଦ୍ୱୟଙ୍କୁ ଧାରଣ କରି ଅଛି ।"

ବେଦ ପରେ ରାମାୟଣର ସୃଷ୍ଟି । ରାମାୟଣରୁ ଜଣାଯାଏ ଯେ ମହାପଣ୍ଡିତ ରାବଣ ଓ ସର୍ବଗୁଣାଳଙ୍କୃତ ରାମଚନ୍ଦ୍ର ଦେବୀ ଭକ୍ତ ଥିଲେ । ରାମଚନ୍ଦ୍ରଙ୍କ ହାତରୁ ନିକଟରେ ପରାଭୂତହୋଇ ରାବଣ ଦେବୀଙ୍କୁ ସ୍ତୁତି କରିଥିଲେ ଏବଂ ଦେବୀ ସନ୍ତୁଷ୍ଟହୋଇ ବରପ୍ରଦାନ କରିଥିଲେ । ବ୍ୟାସକୃତ ମହାଭାରତରେ ମଧ୍ୟ ଦେବୀ ଉପାସନାର ଉଲ୍ଲେଖ ଅଛି । ରାମାୟଣ ଓ ମହାଭାରତ ଯୁଗପରେ ଜୈନ ଓ ବୌଦ୍ଧଧର୍ମରେ ମଧ୍ୟ ଶକ୍ତି

ଉପାସନାର ଯଥେଷ୍ଟ ପ୍ରମାଣ ମିଳେ । ରାଜପୁତନାର ଆବୁ ପାହାଡସ୍ଥିତ ପ୍ରସିଦ୍ଧ ଶ୍ୱେତ-ପ୍ରସ୍ତର ନିର୍ମିତ ଜୈନ ମନ୍ଦିରରେ ଅଗ୍ରଭାଗରେ ଷୋଳଟି ଜୈନ ଦେବୀଙ୍କର ଭିନ୍ନ ଭିନ୍ନ ପ୍ରକାର ମୂର୍ତ୍ତି ରହିଛି । ବୈଦିକ ସାହିତ୍ୟ ଓ ରାମାୟଣ ବ୍ୟତୀତ ପୁରାଣରେ ମଧ୍ୟ ଶାକ୍ତ ଧର୍ମର ଅନ୍ତଃସ୍ୱର ଶୁଣିବାକୁ ମିଳେ । ପୁରାଣ ମଧ୍ୟରେ କାଳିକା ପୁରାଣ, ମାର୍କଣ୍ଡେୟ ପୁରାଣ, ଦେବୀ ଭାଗବତ, ଗରୁଡ ପୁରାଣ, ଲିଙ୍ଗ ପୁରାଣ, ପଦ୍ମ ପୁରାଣ ଓ ବ୍ରହ୍ମବୈବର୍ତ୍ତ ପୁରାଣ ପ୍ରଧାନ । ଏହାଛଡା ଆଉ କେତେକ ପୁରାଣରେ ଆଂଶିକ ଭାବରେ ବର୍ଣ୍ଣନା କରାଯାଇଛି ।

ଓଡ଼ିଶାରେ ବହୁ ଆଦିମକାଳରୁ ଶାକ୍ତ ଧର୍ମର ପ୍ରସାର ହୋଇଛି । ଆଦିବାସୀ ସମାଜର ପଶୁବଳି ପ୍ରାଚୀନ ଶାକ୍ତ ଧର୍ମର ସଙ୍କେତ ବହନ କରେ । ଓଡ଼ିଶାରେ ତାନ୍ତ୍ରିକ ଧର୍ମର ଅନୁପ୍ରବେଶ ଫଳରେ ଓଡ଼ିଶାର ଶ୍ରୀଜଗନ୍ନାଥ ପୀଠ ଶ୍ରେଷ୍ଠ ତନ୍ତ୍ର ପୀଠ ହିସାବରେ ପରିଗଣିତ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ, ରୋଷେଇଘର, ପୂଜାନୈବେଦ୍ୟ ଆଦି ତାନ୍ତ୍ରିକ ପଦ୍ଧତିରେ ଅର୍ପଣ କରାଯାଇଥାଏ । ଓଡ଼ିଶାରେ ଅନେକ ଶକ୍ତିପୀଠ ବିଦ୍ୟମାନ । ଶକ୍ତିପୀଠ ସମ୍ବନ୍ଧରେ ଏକ ଲୋକକଥା ଶୁଣାଯାଏ । ଡଃ ଦୀନେଶ ଚନ୍ଦ୍ର ସରକାର ତାଙ୍କ ଶକ୍ତିପୀଠ ନିବନ୍ଧରେ ଦର୍ଶାଇଛନ୍ତି ଯେ, "ସତୀଙ୍କ ଶବକୁ କାନ୍ଧରେ ଧରି ପୃଥିବୀ ଭ୍ରମଣ କରିବାବେଳେ ବିଷ୍ଣୁ ଚକ୍ରରେ ସତୀଙ୍କ ଦେହ ଏକାବନ ଖଣ୍ଡ ହୋଇ ଏକାବନ ଜାଗାରେ ପଡ଼ିଲା ଏବଂ ଶିବ ସେହି ଏକାବନଟି ସ୍ଥାନରେ ସତୀଙ୍କ ଅଙ୍ଗର ସୁରକ୍ଷା ପାଇଁ ଭୈରବ ରୂପେ ଜଗିଛନ୍ତି । ଏହି ଏକାବନଟି ସ୍ଥାନ ଏକାବନଟି ଶାକ୍ତପୀଠ ଏବଂ ନାଭି ବିରଜା କ୍ଷେତ୍ରରେ ପଡ଼ିଥିବାରୁ ବିରଜା କ୍ଷେତ୍ରକୁ ନାଭିକ୍ଷେତ୍ର କୁହାଯାଏ— "ଉତ୍କଳେ ନାଭିଦେଶଶ୍ଚ ବିରଜାକ୍ଷେତ୍ର ମୁଚ୍ୟତେ ।" ଶାରଳା, ଚର୍ଚ୍ଚିକା, ସମଲେଶ୍ୱରୀ, ଭଗବତୀ ଓ ଷଡ଼ଚଣ୍ଡୀ ପ୍ରଭୃତି ଶକ୍ତିଙ୍କର ଏକ ଏକ ରୂପ । ଏହାଙ୍କୁ ଚଣ୍ଡୀ ଆଖ୍ୟା ଦିଆଯାଇଥାଏ । ଓଡ଼ିଶାରେ ଦୁର୍ଗାପୂଜା ଶାକ୍ତ ଧର୍ମ ପ୍ରସାରର ଅନ୍ୟ ଏକ ଦିଗ । ପିତାମହ ବ୍ରହ୍ମା ଦେବୀ ଦୁର୍ଗାଙ୍କୁ ସ୍ତବ କରିବାକୁ ଯାଇ ତାଙ୍କର ନଅଟି ନାମ ବ୍ୟକ୍ତ କରିଥିଲେ । ଉକ୍ତ ନଅଟି ନାମାନୁସାରେ ନଅଟି ରୂପ, ଭେଦ, ଭାବଥିବାର ଜଣାଯାଏ । ତାହା ଦେବୀଙ୍କର ନଅଟି କାୟବ୍ୟୂହ ମୂର୍ତ୍ତି । ସେହି ନବନାମ ବିଷୟରେ ଦେବୀକବଚ ସ୍ତୋତ୍ରରେ ଲେଖାଅଛି—

ପ୍ରଥମଂ ଶୈଳ ପୁତ୍ରୀତି ଦ୍ୱିତୀୟଂ ବ୍ରହ୍ମଚାରିଣୀ
ତୃତୀୟଂ ଚନ୍ଦ୍ରଘଣ୍ଟେତି କୁଷ୍ମାଣ୍ଡେତି ଚତୁର୍ଥକମ୍ ।

ପଞ୍ଚମଂ ସ୍କନ୍ଦମାତେତି ଷଷ୍ଠଂ କାତ୍ୟାୟନୀ ତଥା
ସପ୍ତମଂ କାଳରାତ୍ରୀତି ମହାଗୌରୀତିଚାଷ୍ଟମଂ
ନବମଂ ସିଦ୍ଧିଦାତ୍ରୀ ଚ ନବ ଦୁର୍ଗାଃ ପ୍ରକୀର୍ତ୍ତିତାଃ ।"

ଓଡ଼ିଶାର ହୀରାପୁର ଓ ସମ୍ବଲପୁରରେ ୬୪ ଯୋଗିନୀଙ୍କର ଉପାସନା ହେଉଥିଲା । ଏ ଦୁଇଟିସ୍ଥାନ ଭାରତର ଯୋଗିନୀପୀଠରୂପେ ଖ୍ୟାତିଅର୍ଜନ କରିଥିଲା । ମୋଟଉପରେ ଦ୍ୱାଦଶ ଶତାବ୍ଦୀ ବେଳକୁ ଓଡ଼ିଶା ଶାକ୍ତ ଉପାସନାର ପ୍ରଧାନ ପୀଠ ହୋଇସାରିଥିଲା ଏବଂ ପଞ୍ଚ ଦଶ ଶତାବ୍ଦୀ ବେଳକୁ ଏ ଉପାସନାର ଧାରା କୂଳ ଲଘଂନ କରିଥିଲା । ଶାକ୍ତଧର୍ମର ବିକାଶ ସଂପର୍କରେ ସମ୍ୟକ ଆଲୋଚନା ପରେ ଶାକ୍ତଧର୍ମର ତତ୍ତ୍ୱ ସମ୍ବନ୍ଧରେ ସମ୍ୟକ ଦୃଷ୍ଟିପାତ କରିବା ବିଧେୟ ।

ଶକ୍ତି ହେଉଛି ସୃଷ୍ଟିର ମୂଳହେତୁ । ଶାକ୍ତମାନେ ଶକ୍ତିକୁ ବିଶ୍ୱର ଜନନୀ ରୂପେ ପରିକଳ୍ପନା କରିଥାଆନ୍ତି । ସେମାନଙ୍କ ମତରେ,"ଚୈତନ୍ୟ ବା ଚିତ୍ ଏକମାତ୍ର ସତ୍ୟ, ଯାହା ମାୟା ଶକ୍ତି ସହିତ ସମ୍ମିଳିତ ହୋଇ ବିଶ୍ୱସୃଷ୍ଟି କରେ ।" ନାରୀମାନଙ୍କୁ ଶାକ୍ତ-ଧର୍ମରେ ପ୍ରାଧାନ୍ୟ ଦିଆଯାଇଥାଏ । ଯେଉଁସାଧକ ନାରୀତତ୍ତ୍ୱକୁ ଉପଲବ୍ଧି କରନାହିଁ ସେ ସଂପୂର୍ଣ୍ଣ ଭାବରେ ଶାକ୍ତତତ୍ତ୍ୱ ବୁଝିବାପାଇଁ ଅକ୍ଷମ । ଶାକ୍ତମାନଙ୍କର ଶକ୍ତି ଉପାସନା ବ୍ୟତୀତ ସପ୍ତାଚାର ପାଳନକୁ ବୈଶିଷ୍ଟ୍ୟ ଦିଆଯାଇଛି । ଏହି ସପ୍ତବିଧ ଆଚାର ହେଉଛି-ବେଦ, ବୈଷ୍ଣବ, ଶୈବ, ଦକ୍ଷିଣ, ବାମ, ସିଦ୍ଧାନ୍ତ ଓ ପ୍ରୌଢ ଏବଂ ଭାବ ଏହାର ପ୍ରଧାନ ଅବଲମ୍ବନ ।

ଉତ୍କଳରେ ମୁଖ୍ୟତଃ ଶକ୍ତି ପୂଜା ହିସାବରେ ଦୁର୍ଗାପୂଜାକୁ ପ୍ରଧାନ୍ୟ ଦିଆଯାଇଛି । ଏହି ଦୁର୍ଗା ପୂଜା ଦୁଇ ପ୍ରକାର । ଶରତକାଳୀନ ଓ ବାସନ୍ତୀ ପୂଜା । ଶରତକାଳୀନ ପୂଜା ବ୍ୟାପକ ଭାବରେ ଉତ୍କଳରେ ଅନୁଷ୍ଠିତ ହୁଏ । ଏହି ପୂଜା ଭାରତର ପୂର୍ବ ଉପକୂଳବର୍ତ୍ତୀ ଓଡ଼ିଶା, ବଙ୍ଗଳା ବିହାରରେ ଅନୁଷ୍ଠିତହୁଏ । ଏହାଛଡା ମହାଭାରତରେ ଦେବୀ ମାହାତ୍ମ୍ୟର ସୂଚନା କେତେକ ସ୍ଥଳରେ ଦେଖାଯାଇଥାଏ । ଦୁଃଖ ବା ବିପଦରୁ ଉଦ୍ଧାର ପାଇବା ପାଇଁ ଦେବୀଙ୍କୁ ସ୍ମରଣ କରିବା ନିମିତ୍ତ ମହାଭାରତରେ ଅନେକ ସ୍ଥଳରେ ସୂଚନା ଦିଆ ଯାଇଛି । ପାଣ୍ଡବମାନେ ଅଜ୍ଞାତବାସ କରିବା ଅବ୍ୟବହିତ ପୂର୍ବରୁ ଯୁଧିଷ୍ଠିର ଦେବୀଙ୍କୁ ପ୍ରାର୍ଥନା କରିଥିଲେ ଯେ ତାଙ୍କର ଅଜ୍ଞାତ ବାସ ସଫଳ ହେଉ ଏବଂ ଦେବୀଙ୍କ ଆଶୀର୍ବାଦରୁ ସେମାନେ

ଯେପରି କୌଣସି ସ୍ଥାନରେ ଚିତ୍ରିତ ନହୁଅନ୍ତି । ଏହିପରି ଅନେକ ବର୍ଣ୍ଣନା ମହାଭାରତରେ ଦେଖିବାକୁ ମିଳେ । ଆଉ ମଧ୍ୟ ମହିଷାସୁର ବଧ ପ୍ରସଂଗ ଏ ଦେଶର ଲୋକ ଚିତ୍ତକୁ ବିଶେଷ ଭାବରେ ଆକୃଷ୍ଟ କରିଥିବାର ଦେଖାଯାଏ । ଏହି ପୌରାଣିକ ଉପାଖ୍ୟାନଟି ଦେବୀଙ୍କର ଅପାର ମହିମାର ନିଦର୍ଶନ ।

ଏହିପରି ଭାବରେ ଭାରତୀୟ ଜୀବନଧାରାରେ ବହୁ ପ୍ରାଚୀନକାଳରୁ ମାତୃଶକ୍ତି ବିଭିନ୍ନ ରୂପେ ପୂଜା ପାଇ ଆସୁଥିଲେ । ଶକ୍ତି ପୂଜା ଉତ୍କଳରେ ଏତେ ବ୍ୟାପକ ଭାବରେ ପ୍ରସାରିତ ହେଲା ଯାହାଫଳରେ ପୂର୍ବ କାଳରୁ ପୂଜିତା ଶସ୍ୟାଧିଷ୍ଠାତ୍ରୀ ଦେବୀ ଶାକମ୍ଭରୀ କାଳ କ୍ରମେ ଦୁର୍ଗାଙ୍କ ମଧ୍ୟରେ ଲୀନ ହୋଇଗଲେ । ସିଦ୍ଧ ସେନା, ମହାର ବାସିନୀ, କୁମାରୀ, କାଳି, କପାଳି, ଭଦ୍ରକାଳି, ମହାକାଳି, ଚଣ୍ଡୀ, ତାରିଣୀ କରାଳି, ବିନ୍ଧ୍ୟ ବାସିନୀ, ପ୍ରଭୃତି ବହୁ ନାମରେ ମାତୃଶକ୍ତି ବିଭିନ୍ନ ଅଞ୍ଚଳରେ ପୂଜିତା ହେଉଥିଲେ ।

ଉତ୍କଳ ସର୍ବଧର୍ମ ସମନ୍ୱୟ ପୀଠରୂପେ ସ୍ୱୀକୃତ ଲାଭକରିଛି । ଅନେକଧର୍ମ ମଧ୍ୟରୁ ଶାକ୍ତଧର୍ମ ଯେ ସବୁଠାରୁ ପ୍ରସାରିତ ଓ ପ୍ରଚଳିତ ଧର୍ମ ଏକଥା ନିଃସନ୍ଦେହରେ କୁହାଯାଇ ପାରେ । ଶାକ୍ତ ଧର୍ମର ପରିସର ଅତ୍ୟନ୍ତ ବ୍ୟାପକ, କିନ୍ତୁ ଏହି କ୍ଷୁଦ୍ର ପରିସର ମଧ୍ୟରେ ସାମାନ୍ୟ ମାତ୍ର ଆଲୋକପାତ କରାଯାଇଛି ।



"Literature must voice the past, reflect the present and mould the future."

S. Radhakrishnan—

# ମହିମା ଧର୍ମର ଦାର୍ଶନିକ ମତବାଦ

● ଗଙ୍ଗାଧର ସାମଲ

---

ଧର୍ମ ଶବ୍ଦ ଅତି ପ୍ରାଚୀନ । ଧର୍ମ ହିଁ ଏକମାତ୍ର ପୃଥିବୀକୁ ନିୟନ୍ତ୍ରଣ କରେ । ଧର୍ମ ଶବ୍ଦର ବ୍ୟୁତ୍ପତ୍ତି ହେଉଛି ଧୃ ଧାତୁରୁ ଧର୍ମର ସୃଷ୍ଟି ଅର୍ଥାତ୍ ଯାହା ସଂସାରକୁ ଧାରଣ କରିଛି ତାହାହିଁ ଧର୍ମ । ଅନ୍ୟ କେତେକଙ୍କ ମତରେ-ଯାହା ଆଚରଣ ଦ୍ୱାରା ମର-ସଂସାରର ଉନ୍ନତି ଓ ପରଲୋକରେ କଲ୍ୟାଣ ସାଧିତ କରାଏ ତାହାହିଁ ଧର୍ମ ।

ଓଡ଼ିଶା ସର୍ବଧର୍ମ ସମନ୍ୱୟର କ୍ଷେତ୍ର । ଜଗନ୍ନାଥଙ୍କଠାରେ ସନାତନ, ବୌଦ୍ଧ, ନାଥ, ଶୈବ, ଶାକ୍ତ, ଗାଣପତ୍ୟ, ପର୍ଶୁରାମ, ବୈଷ୍ଣବ, ଆଦିବାସୀ ତଥା ମହିମା ଧର୍ମର ଏକତ୍ରିକରଣ ହୋଇଛି । ସମନ୍ୱୟର ରଥଚକତଳେ କେତେ ଧର୍ମ ସୃଷ୍ଟି ହୋଇ ଲୁପ୍ତ ହୋଇଯାଇଛି କିନ୍ତୁ ତା'ର ଦର୍ଶନ ଆଜି ମଧ୍ୟ ଓଡ଼ିଆ ସାହିତ୍ୟକୁ ଖୋରାକ ଯୋଗାଉଛି ।

ଊନବିଂଶ ଶତାବ୍ଦୀରେ ମଣିଷ ମନରେ ଦେଖାଦେଇଥିଲା ଧର୍ମ ପ୍ରତି ଅନାସ୍ଥା ଭାବ । ତା'ର କାରଣ ଥିଲା ଜାତି, ଧର୍ମ ଓ ବର୍ଣ୍ଣ ବିଦ୍ୱେଷ ଭାବ । ଏହିପରି ଏକ ଶୁଭ ମୁହୂର୍ତ୍ତରେ ୧୮୨୬ ମସିହାରେ ପୁରୀର ବଡ଼ଦାଣ୍ଡରେ ଦେଖାଦେଇଥିଲେ ମହିମା ଗୋସାଇଁ । ତାଙ୍କଦ୍ୱାରା ପ୍ରଚାରିତ ଧର୍ମର ନାମ ସତ୍ୟ ମହିମା ଧର୍ମ ।

ମହିମା ଧର୍ମ କେବଳ ଓଡ଼ିଶାରେ ଆଜି ସୀମାବଦ୍ଧ ନୁହେଁ ଏହାର ପରିସୀମା ଆନ୍ଧ୍ର ପ୍ରଦେଶ ଠାରୁ ପଞ୍ଜାବ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହି ଧର୍ମ ସଂପର୍କରେ ଅବହିତ ଥିବା ସମାଲୋଚକ ତଥା ପାଠକଙ୍କ ଆଗରେ କେତୋଟି ପ୍ରଶ୍ନ ଦେଖାଦିଏ । ତାହା ହେଉଛି— ମହିମା ଧର୍ମର ପ୍ରବର୍ତ୍ତକ କିଏ ? ମହିମା ଧର୍ମର ସୃଷ୍ଟିତତ୍ତ୍ୱ କ'ଣ ? ମହିମା ଧର୍ମର ଦର୍ଶନ କ'ଣ ? ମହିମା ଧର୍ମ ପ୍ରଚାରରେ କେଉଁମାନେ ସାହାଯ୍ୟ କରିଥିଲେ ? ମହିମା ଧର୍ମର ନୀତି ନିୟମ କ'ଣ ? ମହିମା ଧର୍ମର ଦର୍ଶନ କେଉଁ କେଉଁ ପୁସ୍ତକରେ ପ୍ରତିଫଳିତ ହୋଇଛି ?

ଜନ୍ମ ଥିଲେ ଯେପରି ମୃତ୍ୟୁ ଅଛି ଠିକ୍ ସେହିପରି ଧର୍ମ ଥିଲେ ତା'ର ନିଜସ୍ୱ ଦର୍ଶନ ଅଛି । ଦର୍ଶନକୁ ନେଇ ଧର୍ମ ହୁଏ ଗତିଶୀଳ । ଦର୍ଶନ ବିହୀନ ଧର୍ମ ପଙ୍ଗୁ, ନିର୍ଜୀବ ପରି । ଏହି ପରିପ୍ରେକ୍ଷୀରେ ମହିମା ଧର୍ମ ଦର୍ଶନ ଉପରେ ଆଲୋକପାତ କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ଓ ଲକ୍ଷ୍ୟ । ତେଣୁ ମହିମା ଧର୍ମର ଅନ୍ୟାନ୍ୟ ବିଭାଗଗୁଡ଼ିକକୁ ଏ ପ୍ରବନ୍ଧରୁ ପରିତ୍ୟାଗ କରାଯାଇଛି ।

ମହୁମାଛି ପ୍ରତ୍ୟେକ ଫୁଲରୁ ମଧୁ ଶୋଷଣ କରି ଯେପରି ମଧୁକୋଷ ସୃଷ୍ଟି କରେ ସେହିପରି ମହିମା ସ୍ୱାମୀ ସବୁ ଧର୍ମ ଦର୍ଶନରୁ ସାର ନିର୍ଯ୍ୟାସ ଆଣି ମହିମା ଧର୍ମକୁ କରି-ଛନ୍ତି ବୃଦ୍ଧିମନ୍ତ । କେତେକ ସମାଲୋଚକ ମତ ଦିଅନ୍ତି ଯେ ମହିମା ଧର୍ମ ବୌଦ୍ଧଧର୍ମର ରୂପାନ୍ତର । କିନ୍ତୁ ଏହି ଯୁକ୍ତି ସଂପୂର୍ଣ୍ଣ ଭାବରେ ଅମୂଳକ, କାରଣ ଦୁଇଟି ଧର୍ମ ମଧ୍ୟରେ ଆକୃତିରେ ସାମ୍ୟ ଥାଇପାରେ କିନ୍ତୁ ପ୍ରକୃତିରେ ନୁହେଁ । ଉଦାହରଣ ସ୍ୱରୂପ ଗୋଟିଏ ମାଆ ପେଟରୁ ଜନ୍ମଲାଭ କରିଥିବା ଦୁଇ ଭାଇ ସମାନ ହୋଇପାରନ୍ତି ଆକୃତିରେ କିନ୍ତୁ ପ୍ରକୃତିରେ ନୁହେଁ । ମହିମା ଧର୍ମ ଦର୍ଶନ ନିମ୍ନରେ ପ୍ରଦତ୍ତ କେତୋଟି ମତକୁ ନେଇ ବଳିଷ୍ଠ ତଥା ଅନ୍ୟ ଧର୍ମର ଦର୍ଶନ ଠାରୁ ସ୍ୱତନ୍ତ୍ର ।

**ମହିମା ଧର୍ମରେ ଶୂନ୍ୟବାଦ :—**

ମହିମା ଧର୍ମରେ ଦୀକ୍ଷିତ ମହିମା ଧର୍ମର ସାଧୁ ସନ୍ୟାସୀମାନେ ଶୂନ୍ୟ ଉପାସକ । ବୌଦ୍ଧ ଧର୍ମାବଲମ୍ବୀମାନେ ମଧ୍ୟ ଶୂନ୍ୟ ଉପାସକ । କେତେକ ସମାଲୋଚକ ମତବ୍ୟକ୍ତ କରନ୍ତି ଯେ ମହିମା ଧର୍ମର ଶୂନ୍ୟବାଦ ବୌଦ୍ଧଧର୍ମ ଶୂନ୍ୟବାଦରୁ ଆନୀତ କିନ୍ତୁ ମହିମା ଧର୍ମର ଶୂନ୍ୟବାଦକୁ ଆମେ ଯେଉଁ ଅର୍ଥରେ ଗ୍ରହଣ କରୁ ତାହା ଏଥିରେ ଦେଖିବାକୁ ମିଳେନାହିଁ । ଶୂନ୍ୟ ଅର୍ଥ ନିର୍ଗୁଣ, ନିରାକାର, ନିରଞ୍ଜନ ଅଲେଖ ବା ଶ୍ରେଷ୍ଠ ଆତ୍ମା । ଶୂନ୍ୟବାଦ ସମସ୍ତ ଜାଗତିକ ଓ ବ୍ୟାବହାରିକ ଇଚ୍ଛାର ଉର୍ଦ୍ଧ୍ୱରେ । ପଞ୍ଚସଖା ଯୁଗର ବଳରାମ, ଜଗନ୍ନାଥ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତ ପ୍ରଚ୍ଛନ୍ନ ବୌଦ୍ଧ ଭାବରେ କଳ୍ପିତ । ସେମାନଙ୍କ ଲେଖା ତଥା ତାଙ୍କ ପୂର୍ବସୂରୀ ସାରଳା ଦାସଙ୍କ ମହାଭାରତରେ ଯେଉଁ ଶୂନ୍ୟବାଦ ଦେଖାଯାଏ ତାହା ନିର୍ଗୁଣ ବା ନିରାକାର ନୁହେଁ । ସେମାନଙ୍କର ଶୂନ୍ୟବାଦ ହେଉଛି ସଗୁଣ ମଧ୍ୟରେ ନିର୍ଗୁଣର ଉପାସନା । ମହିମା ଧର୍ମର ଶୂନ୍ୟବାଦ ଦର୍ଶନ, ବୌଦ୍ଧ ଧର୍ମ ଶୂନ୍ୟବାଦ ଦର୍ଶନ ମଧ୍ୟରେ ସାମ୍ୟତା ଲକ୍ଷ୍ୟ କରାଯାଏ ନାହିଁ । ଓଡ଼ିଶାର ଭକ୍ତ କବି ଅନ୍ଧ କନ୍ଧ ବିପ୍ଳବୀ ଭୀମ ଭୋଇ ମହିମା ଧର୍ମର ଉପାସକ । ସେ ମହିମା ଧର୍ମର ଶୂନ୍ୟବାଦ ଉପରେ ମତଦେବାକୁ ଯାଇ ତାଙ୍କ ବିରଚିତ ଗ୍ରନ୍ଥରେ କୁହନ୍ତି—

ମହାଶୂନ୍ୟେ ଶୂନ୍ୟ କିଛୁ ନାହିଁ ଜାଣ ବ୍ରହ୍ମଟି ସାର ନିର୍ଗୁଣ
ନାହିଁ ରୂପରେଖ ଅରୂପ ଶରୀର ଜ୍ଞାନ ନୟନରେ ଚିହ୍ନ ।

ସତ୍ୟାନୁରକ୍ତି :—

ପରିବର୍ତ୍ତନଶୀଳ ସଂସାରରେ ଯାହାର ଅତୀତ ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ସ୍ଥାୟୀ ତାହାହିଁ ସତ୍ୟ । ତେଣୁ ବୈଦିକ ଦର୍ଶନ କୁହେ—"ସତ୍ୟମେବଜୟତେ" ଯାହା ସତ୍ୟ ତାହାର ପରାଜୟ ନାହିଁ । ଏହି ସତ୍ୟର ଅନୁସନ୍ଧାନକାରୀ ମହିମା ସ୍ୱାମୀ । ତାଙ୍କ ଧର୍ମର ନାମ ମହିମା ଧର୍ମ । ସତ୍ୟୋପଲବ୍‌ଧି, ସତ୍ୟାଚରଣ ମହିମା ସ୍ୱାମୀ ତଥା ତାଙ୍କର ଲକ୍ଷ । ଭୀମଭୋଇ ସତ୍ୟ ଉପରେ ଜୋର ଦେଇ ତାଙ୍କର ଶ୍ରେଷ୍ଠକାବ୍ୟ ସ୍ତୁତିଚିନ୍ତାମଣିରେ ଅନେକ ପଦ ରଚନା କରିଛନ୍ତି । ଚତୁର୍ଥ ବୋଲିର ଗୋଟିଏ ପଦରେ କୁହନ୍ତି:—

ଜପ ତପ ଯଜ୍ଞ ମନ୍ତ୍ର ବେଦ ଶାସ୍ତ୍ର ବ୍ୟାକରଣ ଆସୁଛି ଝରି
ସୁସତ୍ୟ ଦାହାଣି ବୃକ୍ଷଲଚ ଯୋଚ ନାମବ୍ରହ୍ମମୂଳ ବେଢ଼ି ।

କର୍ମଯୋଗ:—

କର୍ମଯୋଗ ଉପରେ ମହିମା ଧର୍ମର ପ୍ରାଧାନ୍ୟ ଅଛି । ଶ୍ରୀମଦ୍ ଭାଗବତ ଗୀତାରେ କର୍ମଯୋଗର ବର୍ଣ୍ଣନା ଅଛି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କର୍ମଯୋଗ ଉପରେ ବୁଝାଇଛନ୍ତି । ସନ୍ୟାସ ବ୍ରତ ଅବଲମ୍ବନ କଲେ ବା ଜ୍ଞାନୀ ହୋଇଗଲେ ସିଦ୍ଧିଲାଭ ହୁଏନାହିଁ । କର୍ମ ବିନା ମନୁଷ୍ୟ ପଙ୍ଗୁ ହୋଇଯାଏ । କର୍ମ ଦ୍ୱାରା ମଣିଷର ଶରୀର ରକ୍ଷା ହୁଏ । କର୍ମ କହିଲେ ଯଥାର୍ଥରେ ସତ୍‌କର୍ମ । ପରୋପକାର ନିମିତ୍ତ କର୍ମହିଁ ସର୍ବୋତ୍ତମ । ସତ୍ୟବାଦୀ ଯୁଗର ଦରିଦ୍ରର ବନ୍ଧୁ ଗୋପବନ୍ଧୁ କର୍ମ ସଂପର୍କରେ ସଚେତନ କରାଇଥିଲେ—

ମଣିଷ ଜନମ ନୁହଇଁ କେବଳ ବର୍ଷ, ମାସ, ଦିନ, ଦଣ୍ଡ,
କର୍ମେ ଜିଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ ।

କର୍ମ ଜୀବନର ମାନଦଣ୍ଡ । କର୍ମ ସଂପର୍କରେ ଭୀମଭୋଇ କୁହନ୍ତି—

ବ୍ରହ୍ମମଧେ ସାର ଧର୍ମ ଧନୁର୍ଦ୍ଧର କର୍ମ ଅଟେ ଖାରବର
ଏକ ସ୍ଥାନେ ଥାଇ ସକଳ ଶରୀରେ ପୂରି ଅଛି ଜନପୁର ।

ମହିମା ଗୋସାଇଁ କର୍ମଯୋଗରେ ବିଶ୍ୱାସୀ । ତାଙ୍କ ଜୀବନକାଳ ମଧ୍ୟରେ ସେ କେବେ କର୍ମରୁ ବିରତ ହୋଇ ନାହାନ୍ତି ।

ଭକ୍ତିମାର୍ଗ :—

ଭକ୍ତି ମାଧ୍ୟମରେ ମୁକ୍ତି ମହିମା ଧର୍ମର ଲକ୍ଷ୍ୟ କିନ୍ତୁ ପ୍ରଛନ୍ନ ବୌଦ୍ଧ ପଞ୍ଚସଖା-ମାନଙ୍କର ମୁକ୍ତି କାମ୍ୟ ଜ୍ଞାନଯୋଗ ମାଧ୍ୟମରେ । ମହିମା ଗୋସାଇଁ ଯେ ଜ୍ଞାନଯୋଗକୁ ହେୟ ମନେ କରୁଥିଲେ ତା ନୁହେଁ ସେ ଭକ୍ତିକୁ ମୁଖ୍ୟ ଜ୍ଞାନଯୋଗକୁ ଗୌଣ ଭାବରେ ଗ୍ରହଣ କରିଥିଲେ । କଠୋର, ସନ୍ତମ ଭକ୍ତି ହିଁ ମହିମା ଧର୍ମର ମୁଖ୍ୟ ଲକ୍ଷ୍ୟ ।

ଭକ୍ତି ଯେ କରିବ କି ଲଜ୍ଜା ତାହାର ଲଜ୍ଜା କଲେ ନ ମିଳଇ
ନାମ ବ୍ରହ୍ମ ବିନୁ କିଛି ନ ଜାଣଇ କାହାକୁ ତା ଭୟ ନାହିଁ ।

ବିଶୁଦ୍ଧା ଦ୍ୱୈତ ବ୍ରହ୍ମବାଦ ଦର୍ଶନ :—

ମହିମା ଧର୍ମ ସବୁ ଧର୍ମର ସାର ନିର୍ଯ୍ୟାସ ଗ୍ରହଣ କରି ସୂର୍ଯ୍ୟ ପରି ତେଜସ୍ୱାନ । ଶଙ୍କରଙ୍କ ଅଦ୍ୱୈତବାଦ, ରାମାନୁଜଙ୍କ ବିଶିଷ୍ଟ ଅଦ୍ୱୈତବାଦ, ବଲ୍ଲଭାଚାର୍ଯ୍ୟଙ୍କ ଶୁଦ୍ଧ ଦ୍ୱୈତବାଦ ଏବଂ ମାଧ୍ୱାଚାର୍ଯ୍ୟଙ୍କର ଦ୍ୱୈତବାଦର ବିଶଦ୍ ଆଲୋଚନା କରି ନିଜର ଦର୍ଶନକୁ ସେଥିରୁ ପୃଥକ୍ କରି ନୂତନ ନାମ ଦେଲେ ତାହା ବିଶୁଦ୍ଧାଦ୍ୱୈତ ବ୍ରହ୍ମବାଦ ଦର୍ଶନ । ମହିମା ଧର୍ମ ଦର୍ଶନ ଅନ୍ୟ ଧର୍ମ ଦର୍ଶନ ଠାରୁ ଉର୍ଦ୍ଧ୍ୱରେ । ବ୍ରହ୍ମ କହିଲେ ଯାହା ସଂସାରଠାରୁ ବିନିର୍ମୁକ୍ତ ଶାନ୍ତ ଶୁଦ୍ଧ ଓ ନିର୍ଗୁଣ । ସେହି ବ୍ରହ୍ମ ପ୍ରାଣୀମାନଙ୍କୁ ସଚେତନ କରାଏ । ନିରାଲମ୍ବୋପନିଷଦରେ ବ୍ରହ୍ମ ସଂପର୍କରେ ବର୍ଣ୍ଣିତ ଅଛି ଯେ—

କିଂ ବ୍ରହ୍ମେତିଚ; ଅଖିଳୋପାଧି ବିନିର୍ମୁକ୍ତ ମନାଦ୍ୟନନ୍ତଂ ଶୁଦ୍ଧଂ ଶାନ୍ତଂ
ନିର୍ଗୁଣଂ ନିରବୟବଂ ନିତ୍ୟାନନ୍ଦମଖଣ୍ଡୈକରସଂ ଅଦ୍ୱିତୀୟଂ ଚୈତନ୍ୟଂ ବ୍ରହ୍ମ ।

ଶ୍ରୁତି ନିଷେଧ ଗୀତାରେ ବ୍ରହ୍ମ ସଂପର୍କରେ ଯାହା ଦେଖିବାକୁ ମିଳେ, ତାହାର ଆଦି ଅନ୍ତ ନାହିଁ ସେ ଅନାଦି । କିନ୍ତୁ ଓଡ଼ିଆ ଭାଗବତରେ ଜଗନ୍ନାଥ ଦାସ କୁହନ୍ତି—

ନମଇ ନୃସିଂହ ଚରଣ
ଅନାଦି ପରମ କାରଣ ।

ଜଗନ୍ନାଥ ଦାସଙ୍କ ଅନାଦି ଶବ୍ଦଟି ମହିମା ଧର୍ମର ଅନାଦି ଶବ୍ଦଠାରୁ ଭିନ୍ନ । ଅନାଦି ହେଉଛନ୍ତି ଆଦିବ୍ରହ୍ମ ସେ ନିର୍ଗୁଣ । ତେଣୁ ମହିମା ଧର୍ମରେ ଦୀକ୍ଷିତ ଭକ୍ତମାନେ ସନ୍ଧ୍ୟା ସକାଳରେ ସେହି ନିର୍ଗୁଣ ବ୍ରହ୍ମଙ୍କର ଶରଣ, ଭଜନ ଓ ଦର୍ଶନ କରନ୍ତି । ଅବଧୂତ ସନ୍ନ୍ୟାସୀ ବିଶ୍ୱନାଥ ବାବା ନିର୍ଗୁଣ ବ୍ରହ୍ମର ଶ୍ରେଷ୍ଠତ୍ୱ ପ୍ରତିପାଦନକରି କହନ୍ତି—

ବେଦାନ୍ତ ବର୍ଣ୍ଣିତ ଆତ୍ମା ପୁରୁଷ ନିର୍ଗୁଣ
ଚତୁର୍ବିଂଶ ତତ୍ତ୍ୱ ଅବ୍ୟକ୍ତରୁ ଉତପନ୍ନ ।

ପ୍ରତିମା ପୂଜା :—

ବୌଦ୍ଧଧର୍ମର ସୃଷ୍ଟି ପରେ ପରେ ପ୍ରତିମା ପୂଜା ପ୍ରତି ବିରୋଧ ଭାବ ସୃଷ୍ଟି ହୋଇଛି । କବୀର, ନାନକ ଆଦି ମହାପୁରୁଷମାନେ ବ୍ରାହ୍ମଣ ଓ ଦେବଦେବୀ ପୂଜାକୁ ଅସ୍ୱୀକାର କରିଥିଲେ । ଆଧୁନିକ ଯୁଗରେ ମହିମା ସ୍ୱାମୀ ପ୍ରତିମା ପୂଜାର ବିରୋଧ କରିଥିଲେ । ତେଣୁ କେତେଜଣ ମହିମା ଧର୍ମରେ ଦୀକ୍ଷିତ ଭକ୍ତ ପୁରୀ ଯାଇ ମୂର୍ତ୍ତି ପୂଜା ତଥା ଜଗନ୍ନାଥଙ୍କ ପୂଜା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ । ଯଜୁର୍ବେଦରେ ପ୍ରତିମା ପୂଜା ସମ୍ବନ୍ଧୀୟ ଏକ ବର୍ଣ୍ଣନା ଦେଖିବାକୁ ମିଳେ । ତାହା ହେଉଛି— ଯେଉଁଠାରେ ଯଶ ବା ମହତ୍ତ୍ୱ ନାହିଁ ସେଠାରେ ମୂର୍ତ୍ତି ପୂଜାର ଜ ଅ.କଶ୍ୟକତା ଅଛି । ଏହାର ସଂସ୍କୃତ ଶ୍ଳୋକଟି ହେଲା—

"ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍ ଯଶଃ ।"

ଉପସଂହାର :—

ମହିମା ଧର୍ମ ଏକ ସାର୍ବଜନୀନ ଧର୍ମ । ଏହା ସନାତନ ଧର୍ମର ପୁନରାବୃତ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ମହିମା ଧର୍ମରେ ମଣିଷ ପ୍ରତି ମଣିଷର ଅଛି ସ୍ନେହ, ଶ୍ରଦ୍ଧା ଓ ସୌଜନ୍ୟତା । ମହିମା ଧର୍ମାବଲମ୍ବୀମାନେ ଅହିଂସାକୁ ପରମ ଧର୍ମ ବୋଲି ଗ୍ରହଣ କରନ୍ତି । ଜାତି ଭେଦ ମାନନ୍ତି ନାହିଁ କିନ୍ତୁ ସେମାନେ ରାଜପରିବାର, ବ୍ରାହ୍ମଣ ଓ ରଜକ ଗୃହରେ ଭିକ୍ଷା କରନ୍ତି ନାହିଁ । ମହିମା ଦର୍ଶନକୁ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ଏହି ଧର୍ମ ସବୁ ଧର୍ମଠାରୁ ଉର୍ଦ୍ଧ୍ୱରେ ଏହା ନିଃସନ୍ଦେହ । ମହିମା ଧର୍ମରେ ଗୁରୁ ଶିଷ୍ୟର ଭେଦାଭେଦ ନାହିଁ । ଗୁରୁ ଶିଷ୍ୟକୁ ଓ ଶିଷ୍ୟ ଗୁରୁକୁ ଶରଣ କରିବାର ବିଧି ଅଛି । ଏହି ଧର୍ମରେ ବେଦାନ୍ତ ଦର୍ଶନ ଲକ୍ଷଣୀୟ —

ସର୍ବେ ଭବନ୍ତୁ ସୁଖୀନ
ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିତ୍ ଦୁଃଖ ଭାଗ୍ଭବେତ୍ ।



# ଜଗନ୍ନାଥ ସଂସ୍କୃତି
# ଓ
# ବିଶ୍ୱମୈତ୍ରୀଭାବ

• କୃଷ୍ଣଚନ୍ଦ୍ର ମିଶ୍ର

---

ପରମ ପୁରୁଷୋତ୍ତମ ଜଗତର ନାଥ ଜଗନ୍ନାଥ କେବଳ ଓଡ଼ିଶାର କାହିଁକି ସମଗ୍ର ଭାରତର ଶ୍ରେଷ୍ଠ ତୀର୍ଥ ପୀଠ ମଧ୍ୟରେ ତଥା ପୃଥିବୀରେ ଶ୍ରେଷ୍ଠ ଦେବତାରୂପେ ଏବେବି ପରି-ଗଣିତ ଓ ବିଶ୍ୱପୂଜିତ । ଭାରତର ହିନ୍ଦୁ ପୀଠ ଗୁଡ଼ିକ ମଧ୍ୟରେ ଜଗନ୍ନାଥଧାମ ସର୍ବପ୍ରଧାନ । ଏହି ମୂର୍ତ୍ତିର ସ୍ୱରୂପ କେବେଠାରୁ ଉତ୍ପନ୍ନ ତାହା ଠିକ୍ କରି କହିବା କଠିନ । ତେବେ ବୌଦ୍ଧଯୁଗର ବ୍ୟାପକ ମୂର୍ତ୍ତି ପୂଜାର ପ୍ରଚଳନକୁ ଏହାର ହେତୁ ବୋଲି ଗ୍ରହଣ କରି-ଯାଇପାରେ । ସେ ଯୁଗରୁ ଏ ପର୍ଯ୍ୟନ୍ତ ଅନେକ ଧର୍ମ ବିପ୍ଲବ ଘଟିଯାଇଥିଲେ ବି ଜଗନ୍ନାଥ ସଂସ୍କୃତି ଏବେ ବି ତିଷ୍ଠି ରହିଛି । ବରଂ ତଦ୍ଦ୍ୱାରା ଜଗତ୍‌ନାଥ ଜଗନ୍ନାଥଙ୍କ ମହିମାର ପରିପ୍ରକାଶ ଘଟିଛି । ୧୨ଶ ଶତାବ୍ଦୀରେ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ ସମୟରେ ବର୍ତ୍ତମାନର ଏଇ ବିରାଟ ମନ୍ଦିର (ଜଗନ୍ନାଥ ମନ୍ଦିର) ନିର୍ମିତ ବୋଲି ସାଧାରଣତଃ ଗ୍ରହଣ କରାଯାଇଛି ।

ଯୁଗେ ଯୁଗେ ଓଡ଼ିଶାର ପାଣିପବନ ମହିମାମୟ ଜଗନ୍ନାଥଙ୍କୁ ତାର ପୂଜା ନୈବେଦ୍ୟ ଦେଇ ଆସିଛି । ଓଡ଼ିଆ ମାନଙ୍କର ଜାତୀୟ ଜୀବନ, ସାମାଜିକ ଚଳଣି, ଧର୍ମ ସଂସ୍କୃତି ସବୁକିଛିରେ ଜଗନ୍ନାଥ ଚେତନାର ପ୍ରାଣ ପ୍ରକାଶିତ । ଜଗନ୍ନାଥହିଁ ଯୁଗେ ଯୁଗେ ଏ ଜାତିର ଆତ୍ମା ଓ ଦୁଃଖ ଯାତନାର ଆଶ୍ରୟ ହୋଇ ରହି ଆସିଛନ୍ତି । ଓଡ଼ିଶାର ସଂସ୍କୃତି କହିଲେ ଜଗନ୍ନାଥ ସଂସ୍କୃତି, ଧର୍ମ କହିଲେ ଜଗନ୍ନାଥ ଧର୍ମ ଓ ଇତିହାସ କହିଲେ ଜଗନ୍ନାଥହିଁ ଇତିହାସ ହୋଇଯାଇଛନ୍ତି । ଜଗନ୍ନାଥ କେବଳ ଆଧ୍ୟାତ୍ମିକ ଉପଲବ୍ଧିର ଦେବତା ହୋଇ ରହିନାହାନ୍ତି । ସେ ଏକ ସାମାଜିକ, ସାଂସ୍କୃତିକ ଓ ସାହିତ୍ୟିକ ଅନୁଷ୍ଠାନରେ ପରିଣତ ହୋଇ ଯାଇଛନ୍ତି, ଯାହା ଅକଳନୀୟ, ଅବର୍ଣ୍ଣନୀୟ ।

ଯୁଗ ଯୁଗ ଧରି ଏ ଜାତିର କଳା ସ୍ଥାପତ୍ୟ, ଭାସ୍କର୍ଯ୍ୟ, ସଙ୍ଗୀତ, ସାହିତ୍ୟ, ସଂସ୍କୃତି ଓ ବିବିଧ ଚିନ୍ତାଚେତନା ଜଗନ୍ନାଥ କେନ୍ଦ୍ରିକ ହୋଇ ଯାଇଛି । ଓଡ଼ିଶାର ସଂସ୍କୃତି ବୋଇଲେ ହିଁ ଶ୍ରୀଜଗନ୍ନାଥ । କାରଣ ଆଦି ସଂସ୍କୃତି, ବୌଦ୍ଧ ସଂସ୍କୃତି, ଜୈନ ସଂସ୍କୃତି ଓ ଆର୍ଯ୍ୟ ସଂସ୍କୃତି ଇତ୍ୟାଦି ସମସ୍ତ ଭାରତୀୟ ସଂସ୍କୃତିର ମିଳନ ପୀଠ ଏଇ ଜଗନ୍ନାଥ ଧାମ । ପୁଣି ଭାରତୀୟ ସଂସ୍କୃତି ହେଉଛି ଆର୍ଯ୍ୟ, ଦ୍ରାବିଡ଼ ଓ ଶାବର ସଂସ୍କୃତିର ଏକ ସମନ୍ୱିତ ରୂପ । ଏ ସଂସ୍କୃତିରେ ଧର୍ମ ଯେପରି ପ୍ରାଣବୀଜ ରୂପେ ବିବେଚିତ, ଜୀବନ ଯାତ୍ରା, ସାମାଜିକ ଚଳଣି ମଧ୍ୟ ସେହିପରି ଅନ୍ତର୍ଗର୍ଭିତ । ଏ ଧାରଣା ଭାରତର ସାମଗ୍ରିକ ସଂସ୍କୃତି ମଧ୍ୟରେ ଯେତିକି ଲୁକ୍କାୟିତ, ସେହି ସଂସ୍କୃତିର ପ୍ରତୀକ ଜଗନ୍ନାଥଙ୍କ ପ୍ରତିଷ୍ଠାରେ ସେତିକି ପ୍ରତିଫଳିତ । ଜଗନ୍ନାଥ ସଂସ୍କୃତି ହିଁ ଜଗନ୍ନାଥ ଚେତନା ଏବଂ ଏହି ଚେତନା ହିଁ ସମଗ୍ର ବିଶ୍ୱକୁ ଭାରତୀୟ ସଂସ୍କୃତିର ଶ୍ରେଷ୍ଠ ଅବଦାନ ତଥା ମାନବୀୟ ସଂସ୍କୃତିର ଚରମ ଅଭିବ୍ୟକ୍ତି । ଜନତାର ଜଗନ୍ନାଥ ତାହାର ପ୍ରତୀକ । ଏହି ଦର୍ଶନରେ ଶାନ୍ତି ମୈତ୍ରୀ ପ୍ରବୃତ୍ତିର ସାମ୍ୟବାଦ ନିହିତ, ଯେଉଁଠାରେ ବୃଥା ଅଭିମାନ, ଗର୍ବ ଦମ୍ଭର କଳୁଷତା ନାହିଁ, ଯାହା ସ୍ୱଚ୍ଛ ଓ ବିମଳ, ପୂତ ଓ ପବିତ୍ର, ଜୀବ ପ୍ରତି ସହାନୁଭୂତିସମ୍ପନ୍ନ ତାହା ହିଁ ଜଗନ୍ନାଥ ଧର୍ମର ସାରବସ୍ତୁ ଓ ଏହି ସଂସ୍କୃତିର ମୂଳବୀଜ ।

ପ୍ରଥମେ ଏହି ଜଗତର ନାଥଙ୍କ ପୂଜକ ଥିଲେ ଆଦିମ ଅଧିବାସୀମାନେ । ସେମାନେ ଅନାର୍ଯ୍ୟ ହେଲେ ହେଁ ଜଗନ୍ନାଥ ତାଙ୍କର ହାତରୁ ଜଳ ଗ୍ରହଣ କରୁଥିଲେ । ବୌଦ୍ଧଧର୍ମର ପ୍ରାବଲ୍ୟ କାଳରେ ଜଗନ୍ନାଥଙ୍କ ପୂଜାପଦ୍ଧତିରେ ସେମାନଙ୍କର ଛାପ ପଡ଼ିଲା । ତତ୍ପରବର୍ତ୍ତୀ କାଳରେ ୯ମ ଶତାବ୍ଦୀରେ ଶଙ୍କରାଚାର୍ଯ୍ୟଙ୍କ ଆଗମନ କାଳରେ ପୁନଃ ପ୍ରବର୍ତ୍ତିତ ବ୍ରାହ୍ମଣ୍ୟ ଧର୍ମରୁ ବହୁତ କିଛି ଜଗନ୍ନାଥ ଉପାସନାରେ ସ୍ଥାନ ପାଇଲା । ୧୨ଶ ଶତାବ୍ଦୀରେ ରାମାନୁଜ ଜଗନ୍ନାଥ ଦର୍ଶନ କରିଥିଲେ ଏବଂ ତାଙ୍କ ଧର୍ମାନୁଷ୍ଠାନର ରୀତି ନୀତି ଜଗନ୍ନାଥଙ୍କ ଠାରେ ପ୍ରବର୍ତ୍ତନ କରିଥିଲେ । ଗୁରୁ ନାନକ ମଧ୍ୟ ଏ ଧାମକୁ ଆସିଥିବାରୁ ତାଙ୍କ ଶିଖ ଧର୍ମର କିଛି ଅଂଶ ଜଗନ୍ନାଥଙ୍କ ଉପାସନା ପଦ୍ଧତିରେ ପ୍ରବର୍ତ୍ତନ କରିଗଲେ । ଚୈତନ୍ୟଙ୍କ ଅନେକ କାଳ ରହଣି ତାଙ୍କୁ ଅନେକାଂଶରେ ବୈଷ୍ଣବଙ୍କ ଆରାଧ୍ୟ ଦେବତା କରିଦେଲା । ଜଗନ୍ନାଥ ମନ୍ଦିରରେ ତଥା ମନ୍ଦିର ବାହାରେ ଥିବା ବିଭିନ୍ନ ଦେବାଦେବୀମାନଙ୍କ ପୂଜା ଦେଖିଲେ ବିଭିନ୍ନ ଧର୍ମ ସଂପ୍ରଦାୟର ଶାସ୍ତ୍ର ସମ୍ମତ ପୂଜା ପଦ୍ଧତି କିପରି ଜଗନ୍ନାଥ ଧାମରେ ଏକତ୍ରିତ ହୋଇପାରିଛି ତାହା ଅନୁମାନ କରିହେବ । ଦାରୁଦେବତା, ପରଂବ୍ରହ୍ମ, ସାକାର ନିରାକାର ଉପାସନାର କେନ୍ଦ୍ରବିନ୍ଦୁ ହିସାବରେ

ଜଗନ୍ନାଥ ସବୁ ଧର୍ମକୁ ଆବୋରି ନେଇଛନ୍ତି । ସର୍ବଧର୍ମ ସମନ୍ୱୟର ପ୍ରତୀକ । ସୌଭ୍ରାତୃ-ତ୍ୱର ଉତ୍ପତ୍ତିସ୍ଥଳ । ବିଶ୍ୱବ୍ରହ୍ମାଣ୍ଡର ସବୁ ଧର୍ମ, ସବୁ ସଂସ୍କୃତି, ସବୁ ପରଂପରା ସବୁ ଆଚାର ବ୍ୟବହାର ରୀତିନୀତିର ମୂଳପିଣ୍ଡ ସେ । ନିଜ ମାଟିକୁ ତେଜି ଜଗତ ସହିତ ନିଜକୁ ସାମିଲ କଲେ ହିଁ ଜଗନ୍ନାଥ ଏବଂ ଏହା ହିଁ ଜଗନ୍ନାଥ ପୂଜା ଆରାଧନାର ପରିଣତି । ସେଥିପାଇଁ କବି ଗାଏ "ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବତୁମେ" । ବିଶ୍ୱରେ ଶାନ୍ତି, ମୈତ୍ରୀ, ସଦିଚ୍ଛା ପ୍ରତିଷ୍ଠା ପାଇଁ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ରୂପକ ଆଦର୍ଶାବଳୀ ତାଙ୍କର ସର୍ବଧର୍ମ ସମନ୍ୱୟାତ୍ମକ ଦୃଷ୍ଟି ଭଙ୍ଗୀରେ ହିଁ ପ୍ରତିବିମ୍ବିତ । ତେଣୁ ବର୍ତ୍ତମାନ ପୁଦ୍ଧା ସେ କୌଣସି ଧର୍ମ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହେବାକୁ ସେ ଅସ୍ୱୀକାର କରିନାହାନ୍ତି । କାହାର ପ୍ରବେଶ ସେ ବାରଣ କରିନାହାନ୍ତି । ତେଣୁ ଜଗନ୍ନାଥ ଆପେ ଆପେ ଗଣଦେବତା ହୋଇପାରିଛନ୍ତି । ତାଙ୍କ ନିକଟରେ ହିନ୍ଦୁ ଜଗତର ଜାତି-ଭେଦ ଆପେ ଆପେ ଦୂର ହୋଇଯାଏ । ସେ ଖାଲି ରାମ ବା କୃଷ୍ଣ ନୁହନ୍ତି ସେ ମଧ୍ୟ ଭଗବାନ ବିଷ୍ଣୁଙ୍କର ନବମ ଅବତାର ବୁଦ୍ଧ । ଦୈନନ୍ଦିନ ପୂଜା ପୁଣି କରନ୍ତି ଗୌରବର୍ଣ୍ଣ ବ୍ରାହ୍ମଣଙ୍କ ସହିତ କୃଷ୍ଣବର୍ଣ୍ଣର ଶବରମାନେ । ଏହା ସାରା ବିଶ୍ୱରେ ଭ୍ରାତୃଭାବ ତଥା ବସୁଧୈବ କୁଟୁମ୍ବକର ଆଦର୍ଶରେ ପରିକଳ୍ପିତ । ପୁଣି ଜଗନ୍ନାଥ ବଳଭଦ୍ର ସୁଭଦ୍ରା, ଏହି ତ୍ରିମୂର୍ତ୍ତି, ତ୍ରିବର୍ଣ୍ଣଯୁକ୍ତ ମାନବ ସମାଜର ପ୍ରତୀକ । ସେ ହିଁ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ରାମ ଲକ୍ଷ୍ମଣ ସୀତା । ପୁଣି ବି ବୁଦ୍ଧ ଧର୍ମ, ସଂଘ । ଆଉ ମଧ୍ୟ ସମ୍ୟକ ଦର୍ଶନ, ସମ୍ୟକ ଜ୍ଞାନ ଓ ସମ୍ୟକ ଚରିତ୍ର ସେ । ସେ ସବୁର ମୂଳାଧାର । ନାନା ଧର୍ମର ବିଶ୍ୱାସରେ ସେ ନାନା ସ୍ଥାନରେ ଆସୀନ । ପୁଣି ପୃଥିବୀରେ କୁତ୍ରାପି ଭାଇଭଉଣୀଙ୍କୁ ଏକାଠି ପୂଜା କରାଯିବାର ଦେଖାଯାଏ ନାହିଁ । ଜଗନ୍ନାଥ ମନ୍ଦିରର ଏହା ହିଁ ବିଶେଷତ୍ୱ । ଅଶୋକଙ୍କ ଶିଳାଲେଖର "ସବ ମନସେ ମେ ପୂଜା" ତାଙ୍କର ଦୈନନ୍ଦିନ ଉପାସନାରେ ରୂପାୟିତ ହୋଇଥାଏ । ଜଗନ୍ନାଥଙ୍କ ପୂଜା ପଦ୍ଧତିରେ, ଯାହା ହସ୍ତବ ଆଦିରେ ମନ୍ତ୍ର, ସ୍ତୋତ୍ରାଦିରେ ଆଚାର ବ୍ୟବହାର ସର୍ବତ୍ର ଏକ ପ୍ରାମାଣିକ ସ୍ତର ବା ଚିନ୍ତନ ସତ୍ତାର ପରିଚୟ ମିଳିଥାଏ । ଏହି କାରଣରୁ ହିଁ ଜଗନ୍ନାଥ ସଂସ୍କୃତି ଭାରତୀୟ ଚିନ୍ତାଧାରାର ଏକ ପ୍ରାଚୀନତମ ଭଣ୍ଡାର ଅଟେ ।

ଦେବତା ଜଣକର ନୁହେଁ, ସେ ସମଗ୍ର ବିଶ୍ୱ ଜନତାର । ଫଳରେ ମୈତ୍ରୀ, ସଂହତି ଜଗନ୍ନାଥ ପୀଠର ଛନ୍ଦେ ଛନ୍ଦେ ବୋହି ଚାଲିଛି । ଲଳିତାକୁ କେନ୍ଦ୍ର କରି ଯେପରି ବିଶ୍ୱାବସୁ ଓ ବିଦ୍ୟାପତିଙ୍କର ସାମାଜିକ ସଂଯୋଗ ସେହିପରି ଜଗନ୍ନାଥଙ୍କୁ

କେନ୍ଦ୍ର କରି ଆର୍ଯ୍ୟ ଅନାର୍ଯ୍ୟର ମଧୁର ସମନ୍ୱୟ ଗଢି ଉଠିଛି । ସେ ହେଉଛନ୍ତି ସର୍ବ-ଜନୋପାସ୍ୟ, ସର୍ବ ଧର୍ମସେବା ପୁରୁଷୋତ୍ତମ । ସଙ୍କୀର୍ଣ୍ଣ ମତବାଦର ବହୁଊର୍ଦ୍ଧ୍ୱରେ ଥାଇ ମହାମାନବିକତାର ଅମର ଜ୍ୟୋତି ବିକୀରଣରେ ସେ ନିତ୍ୟରତ । ତେଣୁ ଶବର ବ୍ରାହ୍ମଣ ବା ଆର୍ଯ୍ୟ ଅନାର୍ଯ୍ୟଙ୍କ ଦ୍ୱାରା ଜଗନ୍ନାଥଙ୍କ ସେବା ପୂଜା ଏବେବି ନିର୍ବାହିତ । ଛୁଆଁ ଅଛୁଆଁର ପ୍ରତିବଂଧନକୁ ଅତିକ୍ରମ କରି ଏକାତ୍ମବୋଧର ଅଦ୍ୱୈତ ବନ୍ୟା ପ୍ରବାହିତ । ଏପରି କୌଣସି ଶ୍ରେଣୀ ବା ସଂପ୍ରଦାୟ ନାହିଁ ଯାହାପାଇଁ ଜଗନ୍ନାଥଙ୍କ ଆଗରେ ସ୍ଥାନ ନାହିଁ । ଏପରିକି ଯବନ କବି ସାଲବେଗ ହରିଦାସ ପ୍ରଭୃତି ଏବେବି ସନ୍ଥ ଜନ ଭାବେ ପୂଜିତ । ଯେତେଲୋକ ଜଗନ୍ନାଥଙ୍କ କୃପାରୁ ସନ୍ଥ ସାଧକ ହୋଇଛନ୍ତି ସେମାନଙ୍କ ମଧ୍ୟରେ ଆର୍ଯ୍ୟ, ଅନାର୍ଯ୍ୟ, ଶବର, ଚଣ୍ଡାଳ, ଯବନ ସମସ୍ତେ ଅଛନ୍ତି । ଅନ୍ୟାନ ଦେବ-ଦେବୀଙ୍କ ପୂଜା ପଦ୍ଧତିରେ ବ୍ରାହ୍ମଣ ମାନେ ଅଖଣ୍ଡ କ୍ଷମତା ପ୍ରାପ୍ତ ହୋଇଥିଲି ବେଳେ ଶବର ଦଇତା ମାନଙ୍କର ଓଡ଼ିଶାର ଶ୍ରେଷ୍ଠ ଦେବତା ଜଗନ୍ନାଥଙ୍କ ପୂଜା, ସେମାନଙ୍କର ପୂଜା ପଦ୍ଧତି ସହ ଜଗନ୍ନାଥ ପୂଜା ପଦ୍ଧତିର ସାମ୍ୟ, ତଥା ସେମାନଙ୍କ ପର୍ବ ପର୍ବାଣୀ ସହିତ ଜଗନ୍ନାଥଙ୍କ ପର୍ବ ପର୍ବାଣୀର ସମନ୍ୱୟ ମୂଳରେ ସାମ୍ୟ, ମୈତ୍ରୀ ଭାବ ଯେ ମୂଳକଥା ଏହା ଅସ୍ୱୀକାର କରାଯାଇ ନପାରେ ।

ମଣିଷ ସମାନ । ସମସ୍ତଙ୍କ ଦେହରେ ଏକାରକ୍ତ । ବିଶ୍ୱର ସମସ୍ତେ ଭ୍ରାତୃବନ୍ଧନରେ ଆବଦ୍ଧ, ଏହାହିଁ ଜଗନ୍ନାଥଙ୍କ ଚଳଣିରେ ପ୍ରତିବିମ୍ବିତ । ଦେବତା କଣର ନୁହେଁ ସେ ଗଣର । ତେଣୁ ଜଗନ୍ନାଥମନ୍ଦିର ପ୍ରସାଦ ଆବ୍ରାହ୍ମଣ ଚଣ୍ଡାଳ ସମସ୍ତଙ୍କର ପରମକୈବଲ୍ୟ । ଏହା ସମସ୍ତଙ୍କୁ ମମତା ଆଣିଦିଏ । ଜଗନ୍ନାଥଙ୍କ ରଥଯାତ୍ରା ବେଳେ ସ୍ୱୟଂ ଗଜପତିଙ୍କର ସୁନା ଝାଡ଼ୁକାଧରି ମେହେନ୍ତର ପରି ବଡ ଦାଣ୍ଡ ଛେରାପହଁରା ବିଶ୍ୱକୁ ଜଣାଇଦିଏ ଯେ ମହାପ୍ରଭୁଙ୍କ ସମ୍ମୁଖରେ ସେ ଜଣେ ପ୍ରଜାମାତ୍ର । ସେ ପୂର୍ବରୁ ନିରକ୍ଷର ଓ ସରଳ ଶବର ସଂପ୍ରଦାୟମାନଙ୍କ ମଧ୍ୟରେ ଆବିର୍ଭୂତ ହୋଇଥିଲେ । ପରବର୍ତ୍ତୀ ବହୁଶତାବ୍ଦୀ ଧରି ଭୋଗ ବିଳାସରେ ରହି ବି ସେ ସେହି ସାଧାରଣ ଶବର ସଂପ୍ରଦାୟ ସହିତ ଘନିଷ୍ଠ ସଂପର୍କ ବଜାୟ ରଖିଛନ୍ତି ।

ପୁଣି ଶୁଦ୍ର ମୁଖରେ ବେଦଗାନ ତାଙ୍କରି ଆଶୀର୍ବାଦର ଫଳ । ଦାସିଆ ବାଉରି ହାତରୁ ନଡ଼ିଆଗ୍ରହଣ କରିବା କମ୍ବଦନ୍ତୀ ସେହି ଆଦର୍ଶ ବହନ କରେ । ଶ୍ରୀୟା ଚଣ୍ଡାଳୁଣୀଙ୍କ ଘରେ ଲକ୍ଷ୍ମୀଙ୍କ ରହଣି ଠିକ୍ ସେହି ବିଶ୍ୱସାମ୍ୟ ଭାବର ଜ୍ୱଳନ୍ତ ନିଦର୍ଶନ ।

ପୁଣି ସ୍ୱୟଂ ଜଗନ୍ନାଥଙ୍କ ସମ୍ମୁଖରେ ରାଜାର ବି ଆସନ ପକାଇ ବସିବାର ଅଧିକାର ନାହିଁ । ସେ ଜଣେ ସାଧାରଣ ପ୍ରଜା ବା ଭକ୍ତପର । ତେଣୁ ଜଗତର ନାଥ ଜଗନ୍ନାଥ ଏକ ଦିଗରେ ଭକ୍ତି, ଉପାସନା, ଭଗବତ୍ ଆଶୀର୍ବାଦ ଓ ମାନବ ସମାଜର ଆଧ୍ୟାତ୍ମିକ ଉନ୍ନତି ତଥା ଅନ୍ୟ ଦିଗରେ ସଦିଚ୍ଛା, ମମତା ଓ ପରସ୍ପର ପ୍ରତି ସହନଶୀଳତାର ଅକ୍ଷୟ କୀର୍ତ୍ତିସ୍ତମ୍ଭ ରୂପେ ପରିକଳ୍ପିତ । ସେ ପ୍ରଜାର ରାଜା ପରି, ଭକ୍ତର ଭଗବାନ ପରି, ସଖାର ସଖାପରି । ତେଣୁ ଯବନ ସାଲବେଗ ତାଙ୍କ ଭକ୍ତ ହୋଇଛନ୍ତି । ଜବରଦସ୍ତ ଯବନର ଘରଣୀ ହୋଇଥିବା ପୁରୀର ରାଜମହିଷୀଙ୍କର ପ୍ରକାରେ ବି ଜଗନ୍ନାଥଙ୍କର ଅମୃତ ମଣୋହି ହୋଇଛି । ବେଶ୍ୟାଶକ୍ତ ବଳରାମ ଦାସଙ୍କ ଦୁଃଖରେ ସାମିଲ ହୋଇ ସେ ସମୁଦ୍ର କୂଳକୁ ଦୌଡ଼ିଯାଇଛନ୍ତି; ତେଣୁ ତାଙ୍କ ନିକଟରେ ଭେଦାଭେଦ କାହିଁ ? ପୁଣି ଯାଜପୁରଆ ଦୀନ ହୀନ ବନ୍ଧୁ ଲାଗି ସିଂହାସନରୁ ଓହ୍ଲାଇ ଆସି କ୍ଷୁଧା ନିବାରଣର ଦାୟିତ୍ୱ ବହନରେ ମାନବିକତାର କି ଚରମ ପରାକାଷ୍ଠା ନରହିଛି ? ତେଣୁ ଜଗନ୍ନାଥ ଚେତନାର ମୂଳମନ୍ତ୍ର ହୋଇଯାଇଛି ।

"ନ ତ୍ୱାହଂ କାମୟେ, ରାଜାଂ ନ ସ୍ୱର୍ଗଂ ନାପୁନର୍ଭବଂ
କାମୟେ ଦୁଃଖ ତପ୍ତାନାଂ ପ୍ରାଣିଯାମାର୍ତ୍ତି ନାଶନମ୍ ।"

ଭଗବତ୍ ଗୀତାରେ ଭଗବାନ କହିଛନ୍ତି—'ମୁଁ ହେଉଛି ସକଳ ଭୂତର ବନ୍ଧୁ ।' ବିଶ୍ୱର ଆଦିମୂଳ ପରମାତ୍ମା ହେଉଛନ୍ତି ସମସ୍ତଙ୍କର ଆତ୍ମା, ସମସ୍ତଙ୍କର ବନ୍ଧୁ । ତେଣୁ ଜଗନ୍ନାଥ ହେଉଛନ୍ତି ଜଗବନ୍ଧୁ ବା ଜଗତର ବନ୍ଧୁ । କେବଳ ବ୍ରାହ୍ମଣ୍ୟ ପରଂପରାରେ ନୁହେଁ, ଜୈନ୍ୟ ଓ ବୌଦ୍ଧ ପରଂପରାରେ ମଧ୍ୟ ସଖାଭାବ, ସାମ୍ୟଭାବ ଓ ମୈତ୍ରୀ ଚେତନାକୁ ଆଧ୍ୟାତ୍ମ ଜୀବନରେ ଅଗ୍ରାଧିକାର ପ୍ରଦାନ କରାଯାଇଛି । "ଆତ୍ମାବତ୍ ସର୍ବଭୂତେଷୁ"ଭାବର ଅନ୍ୟ ରୂପହିଁ ମୈତ୍ରୀ । ତେଣୁ ସାମ୍ୟଧର୍ମ ଓ ମୈତ୍ରୀ ଚେତନାର ମୂଳ ପିଣ୍ଡରୂପେ ଜଗନାଥ ଭାରତୀୟ ଆଧ୍ୟାତ୍ମ୍ୟ ଗଗନକୁ ଚିର ଭାସ୍ୱର କରିଛନ୍ତି । ଶବର, ବ୍ରାହ୍ମଣ, ବୌଦ୍ଧ, ଜୈନ, ଶିଖ, ସକଳ ଧର୍ମଧାରାର ତଥା ବ୍ରାହ୍ମଣ, ଶବର, ଯବନାଦି ସକଳ ମଣିଷଧାରାର ସମନ୍ୱୟ ବିନ୍ଦୁରୂପେ ଏହି ଧର୍ମ ନିଜସ୍ୱ ସଂଭୂତିରେ ବିଦ୍ୟମାନ । ତେଣୁ ଉଦାରତା, ମୈତ୍ରୀ, ବିଶ୍ୱଭାତୃତ୍ୱ: ସର୍ବଧର୍ମ ସମନ୍ୱୟ ଏହି ଉପାସନାର ମୂଳ ଲକ୍ଷ୍ୟ । ଜଗନ୍ନାଥ ସଂସ୍କୃତି ଆଧ୍ୟାତ୍ମିକ ଭାବଧାରା ସହିତ ମନଚୈତନ୍ୟକୁ ପୂର୍ଣ୍ଣ-କରେ ଶାନ୍ତିର ଦ୍ୟୋତକରେ । ମହାଭାରତ ଯୁଦ୍ଧରେ କୃଷ୍ଣଙ୍କର ଅସ୍ତ୍ରନଧରିବାର ପ୍ରବୃତ୍ତିଟି ତାଙ୍କ ଅସ୍ତ୍ର ଧାରଣର ପ୍ରଧାନ ଅଙ୍ଗ ହସ୍ତ ପାପୁଲିର ବିଲୋପ ଜନିତ ଅହିଂସା ଧ୍ୱଜା ଉଡ଼ାଉଥିବାରେ ହିଁ ପ୍ରତିପାଦିତ ।

ବିଶ୍ୱରେ ଚିର ଶାନ୍ତି ପ୍ରତିଷ୍ଠାର ବାଣୀ "ନିଜର ଯାହା ଶ୍ରେଷ୍ଠ, ତାହା ଅନ୍ୟକୁ ବିତରଣ କର, ଅନ୍ୟର ଶ୍ରେଷ୍ଠାଂଶ ଆହରଣ କର, ନିଜେ ଭଲରେ ବଞ୍ଚି ରହି ଅନ୍ୟକୁ ସୁବିଧା ଦିଅ।" ଏହି ଆତ୍ମୋତ୍କର୍ଷପୂରିତ ବାଣୀ ଜଗନ୍ନାଥଙ୍କ ପ୍ରତ୍ୟେକ କାର୍ଯ୍ୟକ୍ରମରେ ଅହରହ ପ୍ରତିଧ୍ୱନିତ ହୋଇଥାଏ। ଯାହା କବିସୂର୍ଯ୍ୟଙ୍କ ରଚନାରେ ଠିକ୍—

"କେହି ସରିକ, ପ୍ରଭୁ ପଣେ ନୀଳାଦ୍ରି କେଶରୀକି<br>ଯାଂଠାରେ ସ୍ଫୁରିଛି ଦୁଃଖିଜନ ଦୟା<br>ନଖ ଠାରୁ ଶୀର୍ଷ ସରିକି।"

ଶୁଣାଯାଇଥାଏ। ସେଥିପାଇଁ ଭାରତୀୟ ଧର୍ମ ହୃଦ ନୀଳାଚଳ ହେଉଛି ପ୍ରକୃତ କ୍ଷେତ୍ରରାଜ। ତେଣୁ କୁହାଯାଇଥାଏ— "ସର୍ବେଷାମପି କ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମ।"

ସେହି ନିରପେକ୍ଷ ସାକ୍ଷୀ ସଦୃଶ ରୂପକଳ୍ପରେ ଭକ୍ତମାନେ ଜଗନ୍ନାଥଙ୍କୁ ଦେଖି ଆସୁଛନ୍ତି। ତାଙ୍କର ରହସ୍ୟାଚ୍ଛନ୍ନ ଅଙ୍ଗପ୍ରତ୍ୟଙ୍ଗହୀନ କଳେବର ବ୍ୟକ୍ତ ଓ ଅବ୍ୟକ୍ତର ଭାବଦ୍ୟୋତକ। ସେହି ଚକାନୟନ ହିଁ ବିଶ୍ୱର ନିର୍ବିକାର ଦ୍ରଷ୍ଟା। ତେଣୁ ଏହି ତତ୍ତ୍ୱ କେବଳ ଏକ ଦାର୍ଶନିକ ଭଙ୍ଗୀ ନୁହେଁ। ବ୍ୟକ୍ତି ତଥା ସାମାଜିକ ଜୀବନରେ ବିଶ୍ୱମୈତ୍ରୀ ଭାବର ଏକ ଦୃଷ୍ଟିକୋଣ ମଧ୍ୟ। ତେଣୁ ଭାଗବତ କହେ—

"ଦୁଷ୍ଟ ନିବାରି ସନ୍ଥ ପାଳୁ<br>ତୁ ନାଥ ପରମ ଦୟାଳୁ।"

ସେ କେବଳ ହିନ୍ଦୁର ନହୋଇ ବିଶ୍ୱଜନତାର ହୋଇଥିବାରୁ ତାଙ୍କର ମାଧ୍ୟମରେ ହିଁ ମୈତ୍ରୀ ସଂହତି ଜାତି ଜାତି ମଧ୍ୟରେ ଧର୍ମ ଧର୍ମ ମଧ୍ୟରେ ଗଢ଼ି ଉଠିଛି ଏବଂ ଯୁଗେ ଯୁଗେ ଏହି ମାନବଧର୍ମକୁ ପ୍ରଚାର କରି ଆସିଛି। ତେଣୁ ତା ମୁଖର କଥା ଭାଗବତରେ—

"କାଳ କରାଉଥାଏ ମୁହିଁ<br>ମୋ ବିନୁ ଆନ ଗତି ନାହିଁ।"

ପୁଣି ଜଗନ୍ନାଥଙ୍କ ଘଣ୍ଟଘୋଷ ବୈଷମ୍ୟ ନିବାରକ ସାମ୍ୟଶାନ୍ତି ମନ୍ତ୍ର ପ୍ରଚାରକ—

"ଶ୍ରୀ ମହାପ୍ରସାଦ ଗଦା ପଦ ଘଣ୍ଟ ଘୋଷ<br>ଭକ୍ଷଣେ ଶ୍ରବଣେ କଳିଙ୍କି ଥି ବିଷ ନାଶ ହେ (କୋଃବ୍ରାଃପୁ)

ତେଣୁ ବୌଦ୍ଧ, ଜୈନ, ବୈଷ୍ଣବ ପ୍ରଭୃତି ସମସ୍ତେ ଆସିଛନ୍ତି । ତାଙ୍କୁ ନିଜର କରିନେବା ସକାଶେ ଚେଷ୍ଟା କରିଛନ୍ତି । କିନ୍ତୁ ସେ କାହାର ବ୍ୟକ୍ତିଗତ ନହୋଇ ସମସ୍ତଙ୍କର ସେହିପରି ହୋଇ ରହି ଯାଇଛନ୍ତି ।

ସାଧାରଣତଃ ଅନ୍ୟାନ୍ୟ ଦେବାଦେବୀ ପତିପତ୍ନୀ ରୂପେ ପୂଜିତ ହେଉଥିବେଳେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଭାଇଭଉଣୀର ପ୍ରତୀକ ରୂପେ ସମଗ୍ର ଜଗତର ଭାତୃତ୍ୱ ଓ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ପାଇଁ ଏହା ଆହ୍ୱାନ ବୋଲି କହିବାକୁ ହେବ । ସ୍ୱାର୍ଥ ପାଇଁ ମଣିଷ-ଶ୍ରେଣୀ ସୃଷ୍ଟି କରିଥିଲା । ତେଣୁ ମୈତ୍ରୀ ଦେବତା ସମସ୍ତଙ୍କୁ ସମାନତା ପ୍ରଦାନ କରିଛୁ । ଜଗନ୍ନାଥ ସମସ୍ତଙ୍କୁ ନିଜର ପରିବାରଭୁକ୍ତ କରି ନେଇଛନ୍ତି । ଓଡ଼ିଆର ଯାହା ସମସ୍ୟା, ହିନ୍ଦୁର ଯାହା ସମସ୍ୟା, ତାହାହିଁ ମଣିଷ ସମାଜର ସମସ୍ୟା । ସେଥିପାଇଁ ଏ ଜଗତର ନାଥଙ୍କର ଏ ବିଶ୍ୱମୈତ୍ରୀର ଶିକ୍ଷା ।

ଜଗନ୍ନାଥ ଉଦାରତାର ପ୍ରତୀକ । ଏଠାରେ ସବୁଧର୍ମର ମିଶ୍ରଣର ସମନ୍ୱିତ ରୂପ ପରିଗ୍ରହ ଲାଭ କରିଛୁ । ସେ ପଦବୀ, କ୍ଷମତା, ଅସ୍ପୃଶ୍ୟାର ବହିଃ ବିକ୍ଷୋଭକାରୀ । ତେଣୁ ତାଙ୍କ ପାଖରେ ଆବ୍ରାହ୍ମଣ ଚଣ୍ଡାଳ ସମସ୍ତେ ସମାନ ଆସନ ଲାଭ କରିଛନ୍ତି । ଭାରତରେ ପୁରୁଷୋତ୍ତମ ହିଁ ଗୋଟିଏ ମାତ୍ର ପୀଠ ଯେଉଁଠି ପ୍ରାଚୀନତମ ବିବାଦର ବିଲୁପ୍ତତା ଘଟିଛୁ ।

ଅବଶ୍ୟ ପ୍ରଶ୍ନ ହୋଇପାରେଯେ ଜଗନ୍ନାଥଙ୍କର ଏପରି ମାନବିକତାରେ ଅନ୍ୟ ଜାତିର ମନ୍ଦିରକୁ ପ୍ରବେଶ ଅଧିକାର କାହିଁ ? ତେବେ ଏହାର ଉତ୍ତରରେ ରଥଯାତ୍ରାର ପ୍ରସଙ୍ଗକୁ ହିଁ ଉପସ୍ଥାପିତ କରାଯାଇପାରେ ! ପୁଣି ତାଙ୍କର ନିର୍ମାଣ ଶୈଳୀ ଯଥା ଦାରୁରେ ନିର୍ମିତ ଠାକୁର ପ୍ରମାଣ କରନ୍ତି ଯେ ଚେତନ ଓ ଜଡ଼ ମଧ୍ୟରେ ମୈତ୍ରୀ ସ୍ଥାପନ ଓ ଜଗତକୁ ଦର୍ଶନ ହିଁ ଏହାର ପ୍ରାଣସ୍ୱର । କାରଣ କାଠର ଗୋଟିଏ ପାଖ ଜଳୁଥିଲେ ମଧ୍ୟ ଅନ୍ୟ ପାଖ ପ୍ରତିକ୍ରିୟା ବିହୀନ ହୋଇ ସେହିପରି ଅଣ୍ଡା ଥାଏ । ତେଣୁ ଏହି ସହନ-ଶୀଳତା ହିଁ ଜଗନ୍ନାଥଙ୍କର ସମଗ୍ର ମାନବ ସମାଜକୁ ବାର୍ତ୍ତା ।

ସମସ୍ତ ବ୍ୟାବହାରିକ ଅଗ୍ରଗତି ପଦ୍ଧତି ପ୍ରମାଣ କରେ ଜଗନ୍ନାଥ ସଂସ୍କୃତି ସମଗ୍ର ମାନବ ସମାଜରେ ମୈତ୍ରୀର ସଂସ୍କୃତି ଅଟେ । ସେ ନିଜକୁ ସ୍ୱର୍ଗୀୟ ବିଭୂତିରେ ବିଭୂଷିତ କରି ପାର୍ଥିବ ଜନତାର ଧୂଳି ଧୂସରିତ ଜୀବନ ଭିତରେ ଏକାକାର କରି

ନାଙ୍କୁ ସଂପୂର୍ଣ୍ଣ ମାନବୀକରଣ କରିଦେଇଛନ୍ତି । ତେଣୁ ଦେବତାଙ୍କର ସ୍ନାନ, ଭୋଜନ, ଶୟନ, ଜାଗରଣ, ପ୍ରସାଧନ, ଆମୋଦପ୍ରମୋଦ ଓ ଚଳଚଳଣ ଠାରୁ ଆରମ୍ଭ କରି ଧୂପ ନୈବେଦ୍ୟ ସବୁ ଯେପରି ମଣିଷ ସମାଜର ଅନୁରୂପ ହୋଇ ଗଢି ଉଠିଛି । ସେ ନବକଳେବର ହୁଅନ୍ତି, ଶୁଦ୍ଧ ଶ୍ରାଦ୍ଧ ପାଳନ କରନ୍ତି, ଜ୍ୱର ରୋଗାକ୍ରାନ୍ତ ହୁଅନ୍ତି ଠିକ୍ ମାନବ ପରି ।

ଜଗତର ନାଥ ଜଗନ୍ନାଥ, ଏହି ଦାର୍ଶନିକ ନାମକରଣ ହିଁ ପ୍ରମାଣ କରିଥାଏ ଯେ ଏଥିରେ ଶାନ୍ତି, ମୈତ୍ରୀ ପ୍ରଗତିର ସାମ୍ୟବାଦ ନିହିତ । ଯେଉଁଠି ବୃଥା ଦମ୍ଭ, ଗର୍ବ, ଅଭିମାନ ନାହିଁ ଏବଂ ଜୀବ ପ୍ରତି ସହାନୁଭୂତି ସଂପନ୍ନ ମନୋଭାବ ନିହିତ ତାହାହିଁ ଜଗନ୍ନାଥ ଧର୍ମର ସାରକଥା ରୂପେ ପରିକଳ୍ପିତ । ତେଣୁ "ନନ୍ଦିଘୋଷ"ର ସଂପାଦକ ଯଥାର୍ଥତଃ ଲେଖିଛନ୍ତି— ବିଶ୍ୱମୈତ୍ରୀ ଏବଂ ଅଖଣ୍ଡ ଆଶାର ପ୍ରତୀକ ।" ମହାପୁରୁଷ ବୁଦ୍ଧଙ୍କ ନିସୃତ ପ୍ରଥମ ଉପଦେଶ ଚକ୍ର 'ଧର୍ମଚକ୍ର ପ୍ରବର୍ତ୍ତନ ସୂତ୍ର'ରେ ରହିଛି—

"ହେ ଭିକ୍ଷୁଗଣ ! ସମ୍ୟକ୍ ଦୃଷ୍ଟି, ସମ୍ୟକ୍ ସଂକଳ୍ପ, ସମ୍ୟକ୍ ବାକ୍ୟ,ସମ୍ୟକ କର୍ମ ସମ୍ୟକ୍ ଜୀବିକା, ସମ୍ୟକ୍ ଚେଷ୍ଟା, ସମ୍ୟକ ସ୍ମୃତି ଓ ସମ୍ୟକ୍ ସମାଧି ଏହି ଆର୍ଯ୍ୟ ଅଷ୍ଟାଂଗୀକ ମାର୍ଗହିଁ ଦୁଃଖ ନିରୋଧଗାମିନୀ ପ୍ରତିପାଦ୍ୟ ବା ଦୁଃଖ ନିରୋଧର ଉପାୟ । + + + + +

ଜଗନ୍ନାଥଙ୍କ ଶ୍ରୀ ମନ୍ଦିର ଉପରିଭାଗରେ ଶୋଭିତ ନୀଳଚକ୍ର ହିଁ ଧର୍ମ ଚକ୍ର, ଯାହା ଦୁଃଖ ନିରୋଧର ଉପାୟ ଓ ବିଶ୍ୱମୈତ୍ରୀର ପ୍ରତୀକ ।

ଏ ସବୁ ପରିପ୍ରେକ୍ଷିରେ ଜଣେ ଓଡ଼ିଆ ଅଧ୍ୟାପକ ଓଡ଼ିଶା ବାହାରେ ଏସଂପର୍କରେ କହିଥିବା ଏକ ଉପାଦେୟ ବାର୍ତ୍ତା ମନକୁ ଆସେ । ସେ କହିଥିଲେ—

"ବର୍ତ୍ତମାନ ମାନବ ଚରିତ୍ରରେ ପ୍ରାୟ ପ୍ରତ୍ୟେକେ ସ୍ତରରେ ଯେଉଁ ବିଭ୍ରାଟ ଓ ବୈଷମ୍ୟ ଦେଖା ଦେଇଛି, ତାହାକୁ ଦୂର କରି ଶାନ୍ତି ଓ ସଦ୍‌ଭାବ ସୃଷ୍ଟି କରିବାକୁ ହେଲେ ଜଗନ୍ନାଥ ଧର୍ମର ପ୍ରୟୋଜନ ଯଥେଷ୍ଟ ରହିଅଛି । ପ୍ରଭୁଜଗନ୍ନାଥ ସତ୍ୟ ଓସଦ୍‌ଭାବର ପ୍ରତୀକ ।"

ଆଜି ଏହା ଏକ ଅପୂର୍ବ ସାଂସ୍କୃତିକ ଚେତନା ଜାଗ୍ରତ କରିଛି । ତାହା ହେଲା ବହୁମତ ମଧ୍ୟରେ ସମନ୍ୱୟ ଓ ସହନଶୀଳତା, ଯାହା ହିନ୍ଦୁ ସଂସ୍କୃତିର ସର୍ବଶ୍ରେଷ୍ଠ

ବାର୍ତ୍ତା । ତେଣୁ ମନେହୁଏ ସାଂପ୍ରତିକ ଜାଗତିକ ଅଶାନ୍ତିର ସମାଧାନ ପାଇଁ ବିଶ୍ୱ-ସମାଜକୁ ଭାରତୀୟ ସଂସ୍କୃତିର ଏହାହିଁ ସର୍ବଶ୍ରେଷ୍ଠ ବାଣୀ ।

ଆଜି ପୃଥିବୀର ଅନେକ ଦେଶରେ ଜଗନ୍ନାଥଧର୍ମର ପ୍ରସାରଘଟିଛି । ପୃଥିବୀର ଅନେକ ସ୍ଥାନରେ ରଥଯାତ୍ରା ଆଜି ମହାସମାରୋହରେ ପାଳିତ ହେଉଛି । ପୃଥିବୀ ତେଣୁ ଧିରେ ଧିରେ ଅସହାୟତା, ଅଶାନ୍ତିର ନିଗଡ଼ ବନ୍ଧନରୁ ମୁକ୍ତି ପାଇଁ ଜଗନ୍ନାଥଙ୍କ ଶରଣ ପଶୁଛି । ତେଣୁ ଶେଷରେ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା ଆଜିର ଅସହାୟତାର ସନ୍ଧିକ୍ଷଣରେ ସେ ତାଙ୍କର ବିଶ୍ୱମୈତ୍ରୀ ବାର୍ତ୍ତାରେ ମାନବ ସମାଜକୁ ଉଦ୍‌ବୁଦ୍ଧ କରି ଚିରଶାନ୍ତି ସ୍ଥାପନ ଅବସରରେ ମହାମହିମାମୟ ହୋଇ ରହି ଆଲୋକ ବିକୀରଣ କରି ସାଧାରଣ ଜନତାର ପରମ ପ୍ରଭୁଭାବରେ ସେହିପରି ପୂଜା ନୈବେଦ୍ୟ ଗ୍ରହଣ କରୁଥାନ୍ତୁ ।



"Literature is a kind of intellectual light which, like the light of sun, may some times enable us to see what we do not like."

Samuel Johnson.

# ସାରଳା ମହାଭାରତରେ ଓଡ଼ିଆ ସମାଜର ଚଳଣି

• କୃଷ୍ଣଚନ୍ଦ୍ର ମହାପାତ୍ର

ସାହିତ୍ୟ ସମାଜର ଅଭିବ୍ୟକ୍ତି । ଯୁଗେ ଯୁଗେ ସାହିତ୍ୟ ସମାଜର ପ୍ରତିଛବି ବହନ କରେ । ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ପରିବର୍ତ୍ତନଶୀଳ । ସାମାଜିକ ପରିସ୍ଥିତି ଦ୍ୱାରା ସେ ଅନବରତ ପ୍ରଭାବିତ । ଫଳତଃ ସାହିତ୍ୟ ମଧ୍ୟ ଯୁଗରୁଚି ନେଇ ପରିବର୍ତ୍ତନଶୀଳ । ସାହିତ୍ୟ ବ୍ୟକ୍ତିର ଅନୁଭୂତି, ଭାବ, କଳ୍ପନାକୁ ରୂପାୟିତ କରିବା ସଂଗେ ସଂଗେ ସମାଜର ରୀତି, ନୀତି, ଗ୍ଲଚଳଣି , ହାବ, ଭାବ, ଇତ୍ୟାଦିକୁ ଅନୁରଂଜିତ କରେ ।

ଏସବୁ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟର ଆଦି ମହାକାବ୍ୟ ସାରଳା ମହାଭାରତକୁ ବିଚାର କରିଯାଇପାରେ, ଏହା ଯଦିଓ ପଞ୍ଚଦଶ ଶତାବ୍ଦୀରେ ରଚିତ ତଥାପି ଏଥିରେ ସେ ଯୁଗର ତଥା ବହୁ ପୂର୍ବରୁ ଗଢ଼ିଆସୁଥିବା ଓଡ଼ିଆ ସମାଜର ଚିତ୍ର ଦେଖିବାକୁ ମିଳେ । ସାରଳା ଦାସ ସଂସ୍କୃତ ମହାଭାରତର ଅନୁବାଦକ ନୁହନ୍ତି । ସେ ଜଣେ ସାଧାରଣ ପଲ୍ଲୀ-ବାସୀ । ତେଣୁ ତାଙ୍କ ସାହିତ୍ୟରେ ସେ ଯୁଗର ଚଳଣି ସ୍ପଷ୍ଟ ଭାବରେ ଅଙ୍କିତ ହୋଇଛି । ଫଳତଃ ତାଙ୍କ ମହାକାବ୍ୟ ଏକ ସ୍ୱତନ୍ତ୍ର ଆସନ ଦାବୀ କରିବା ସଙ୍ଗେ ସଙ୍ଗେ ତାଙ୍କର ମୌଳିକତାକୁ ପ୍ରତିପାଦନ କରେ ।

ସାରଳା ମହାଭାରତରେ ବର୍ଣ୍ଣିତ ବହୁ ସାମାଜିକ ଚଳଣି ମଧ୍ୟରୁ ପୁତ୍ର ଜନ୍ମୋତ୍ସବ ଅନ୍ୟତମ । ଯୁଧିଷ୍ଠିରଙ୍କ ଜନ୍ମୋତ୍ସବ ଦୃଶ୍ୟରୁ ଓଡ଼ିଆ ସମାଜର ଚିତ୍ର ସୁସ୍ପଷ୍ଟ ।

ପୁତ୍ର ଉଦିତ ହୁଲୁବ କରାଇଲେ ନୃପମଣି
ପୁରଜନ୍ତ୍ର ମଙ୍ଗଳା ଦିଅଛି ଗୋସାମଣୀ ।" ଇତ୍ୟାଦି

(ସାରଳାମହାଭାରତ ଆଦିପର୍ବ)

ସାରଳା ଦାସଙ୍କ ମହାଭାରତରେ ବହୁ ସ୍ଥଳରେ ବିବାହ ବର୍ଣ୍ଣନା ରହିଛି । ଏବେ ମଧ୍ୟ ସେହି ରୀତି ଆଧୁନିକ ସମାଜରେ ପ୍ରଚଳିତ । ସୁରେଖା ପରିଣୟ ପ୍ରସଙ୍ଗରେ କବି

ଯେଉଁ ବର୍ଣ୍ଣନା କରନ୍ତି—

ମାଡ ଅହୁଅ ନାଗ୍ଧ ଅଇଲେ ବହନ ହୋଇ
ସୁବର୍ଣ୍ଣ କୁମ୍ଭଉପରେ ନଡୀକାଳମାନ ଥୋଇ

+ + +

ସାତଘରୁ ପଣି ପାଣି ତୋଳଣ ଆଣିଲେ
ମଙ୍ଗଳ ଗୀତ ଗାଇଣ ନବରେ ପଶିଲେ ।

(ମଧ୍ୟପର୍ବ)

ସୁରେଖା ବିବାହ ପ୍ରସଙ୍ଗରେ "ବିଚନ୍ତ କର୍ମମାନ କାନ୍ଥରେ ଲେଖନ୍ତି", ସନ୍ତ୍ରୁଘରେ "ଚନ୍ଦ୍ର ପ୍ରଥମା ଲେଖା ଆଜିମଧ୍ୟ ଓଡ଼ିଆ ବାହାଘରେ ଦେଖିବାକୁ ମିଳେ । ଓଡ଼ିଆ ବାଖ୍ୟ ଘରର "ବେଦୀ ଗୁମୁଣ୍ଡିଆ ସଜକର ବେଗେ' ଲବଣ ଚଉଁସ୍ତି, ଜ୍ଞାତକ୍ରୀଡା, ପଞ୍ଚ୍ୟଗ୍ରାସ ପ୍ରଭୃତିର ବର୍ଣ୍ଣନା ଠିକ୍ ଗାଉଁଲି ବାହାଘର ପରି । ବିବାହ ପରି ଉତ୍ସବମାନଙ୍କରେ ବଂଧୁମାନଙ୍କୁ ନିମନ୍ତ୍ରଣ କରିବା, ଗୁଆ ଦେବା ପ୍ରଥା ଏବେ ବି ପ୍ରଚଳିତ । ଭାନୁମତୀ ସ୍ୱୟମ୍ବର ବେଳେ ରାଜାମାନଙ୍କୁ କେବଳ ଅକ୍ଷତ ଦେଇ ନିମନ୍ତ୍ରଣ କରାଯାଇଥିଲା ଅଥଚ ଯୁଧିଷ୍ଠିରଙ୍କ ରାଜସୂୟ କାଳରେ ରାଜା ମାନଙ୍କୁ ଅକ୍ଷତ ଓ ଗୁବାକ ଦେଇ ନିମନ୍ତ୍ରଣ କରିଥିଲେ । ବିବାହ ଆଦି ଉତ୍ସବର ଆଡମ୍ବର ଏବେ ବି ପ୍ରଚଳିତ ।

ଅତିଥି ସେବା ଗୃହସ୍ଥର ଏକ ମହାନ କର୍ତ୍ତବ୍ୟ । କି ରାଜା କି ପ୍ରଜା ସବୁ ଶ୍ରେଣୀର ଲୋକଙ୍କ ପକ୍ଷରେ ଅତିଥି ଯଥୋଚିତ ସମ୍ମାନର ପାତ୍ର । ସାରଳା ଦାସ ଏହାକୁ ସୁନ୍ଦର ଭାବରେ ବର୍ଣ୍ଣନା କରିବାକୁ ଯାଇ ଯୁଧିଷ୍ଠିରଙ୍କ ମୁଖରେ କହିଛନ୍ତି—

"ଯୁଧିଷ୍ଠି ବୋଇଲେ ତପୀ ଶୁଣ ମୋ ବଚନ
ଅତିଥି ବସାଇ କେହ୍ନେ କରିବ ଭୋଜନ
ଅତିଥି ବସାଇ ଯେହୁ କରଇ ଭୋଜନ
ତାହାର ଦୁର୍ଗତିବାର ଅଟଇ ଅକାରଣ ।" ଇତ୍ୟାଦି

(ସାରଳା ମହାଭାରତ, ବନ ପର୍ବ)

ସାରଳା ଦାସ ବଂଧୁଚର୍ଚ୍ଚାର ସୁନ୍ଦର ବର୍ଣ୍ଣନା ଦେଇଛନ୍ତି । ରାଜସୂୟ ଯଜ୍ଞ ଅନୁଷ୍ଠାନ ପୂର୍ବରୁ ଶ୍ରୀକୃଷ୍ଣ ପାଣ୍ଡବଙ୍କ ଗୃହକୁ ଯାଇଥିଲେ ଏବଂ ତାଙ୍କୁ ଦେଖି କୁନ୍ତୀ

ଆନନ୍ଦରେ ଅଭ୍ୟର୍ଥନା କରୁଥିଲେ । ସ୍ୱୟଂ ଦ୍ରୌପଦୀ ବିଭିନ୍ନ ବ୍ୟଞ୍ଜନ ପାକ କରିଥିଲେ ଏବଂ କୁନ୍ତୀ ପରଷି ଥିଲେ । ଆତ୍ମୀୟ ଗୃହକୁ ଆସିଲେ ଏପରି ହାର୍ଦ୍ଦିକ ଭାବରେହିଁ ଚର୍ଚ୍ଚା କରାଯାଇଥାଏ ।

ଗୁରୁଜନମାନଙ୍କୁ ଲୋକେ ଭକ୍ତି ସମ୍ମାନ ପ୍ରଦର୍ଶନ କରୁଥିଲେ । ଗୁରୁଜନ ପହଞ୍ଚିବା ମାତ୍ରେ ଦଣ୍ଡାୟମାନ ହେବା, ପ୍ରଣାମ, ବିନୟ ପ୍ରଦର୍ଶନ, ଆପଦ ପ୍ରକ୍ଷାଳନ ଆଦି ସାଧାରଣ ସୌଜନ୍ୟ ଦେଖାଯାଇଥିଲା ।

ବନ୍ଧୁ ବନ୍ଧୁର ଗୃହରୁ ବିଦାୟ ନେଇଯିବାବେଳେ କିଛିଦୂର ବଳାଇ ଦେଇ ଯିବାର ଚଳଣି ଉତ୍କଳୀୟ ସମାଜରେ ରହିଥିଲା । ଶ୍ରୀକୃଷ୍ଣ ଓ ବଳରାମ ହସ୍ତିନାରୁ ବିଦାୟ ଗ୍ରହଣ କରି ଦ୍ୱାରକା ଯାତ୍ରା କଲାବେଳେ ଦୁର୍ଯ୍ୟୋଧନ ଓ ଧୃତରାଷ୍ଟ୍ର ସେମାନଙ୍କୁ କିଛିଦୂର ପର୍ଯ୍ୟନ୍ତ ଯାଇ ବିଦାୟ ଦେଇଥିଲେ । ଦ୍ରୌପଦୀ ପରିଣୟ କାଳରେ ଧୃତରାଷ୍ଟ୍ର ପ୍ରଭୃତିଙ୍କୁ ବିଦାୟ ଦେବାପାଇଁ ରାଜା ଦ୍ରୁପଦ ବହୁଦୂର ପର୍ଯ୍ୟନ୍ତ ଯାଇଥିଲେ । ବନ୍ଧୁଙ୍କର ଆଗମନ ସମ୍ବାଦ ପାଇଲେ ତାଙ୍କୁ ପାଛୋଟି ଆଣିବା ବିଧିଥିଲା । ଧୃତରାଷ୍ଟ୍ର ପ୍ରଭୃତିଙ୍କର ଆଗମନ ସମ୍ବାଦ ଶ୍ରବଣ କରି ତାଙ୍କୁ ପାଛୋଟି ଆଣିବା ପାଇଁ ରାଜା ଦ୍ରୁପଦ ପୁତ୍ରଦ୍ୱୟଙ୍କୁ ପ୍ରେରଣ କରିଥିଲେ ।

ସାରଳା ଦାସଙ୍କ ଯୁଗରେ ବାଲ୍ୟ ବିବାହର ପ୍ରଥାଥିଲା ବୋଲି ଅନୁମାନ କରାଯାଇପାରେ । ସାରଳା ଦାସ ଏହାର ସମର୍ଥକ ଥିଲେ । କାରଣ ସେ କହୁଥିଲେ, ପିତୃ ଗୃହରେ ନାରୀ ରଜୋବତୀ ହେବା ଏକ ଅକ୍ଷମଣୀୟ ଅପରାଧ । ସେଥିପାଇଁ ଦାସେ ଲେଖିଛନ୍ତି—

> "ଦୋହିତା ହୋଇଂ ଯେବେ ପିତା ଘରେ ରଜୋବତୀ
> ତାହାର ପିତୃ ଲୋକେ ଯେ ଶୋଣିତ ପିବନ୍ତି ।"
>
> (ଆଦିପର୍ବ)

ପାରଂପରିକ ଉତ୍ସବମାନଙ୍କ ମଧ୍ୟରେ ପୁଷ୍ପବତୀ ଉତ୍ସବ ପାଳିତ ହେଉଥିଲା । ଏହି ସମୟରେ ଗଣକମାନଙ୍କ ଶୁଭାଶୁଭ ବିଚାର, ବ୍ରାହ୍ମଣ ବରଣ, ଦେବ ଦେବୀ ପୂଜା ଓ କନ୍ୟା ବନ୍ଦାପନା ଇତ୍ୟାଦି କରାଯାଉଥିଲା । ସାରଳାଦାସ ଦ୍ରୌପଦୀ ଓ ଉତ୍ତରାଙ୍କ ରଜୋବତୀ ସମୟର ଚିତ୍ରରେ ଏହି ସମସ୍ତ ବିଧିବିଧାନର ମନୋଜ୍ଞ ଚିତ୍ର ପରିବେଷଣ

କରିଛନ୍ତି । ରଜୋବତୀ ନାରୀଙ୍କୁ ସ୍ପର୍ଶ କରିବା ପାପ ଅଟେ । ଏଦ୍ୱାରା ସୁବିସ୍ତୃତ ଦୀର୍ଘ ତାଲିକା କବି ପ୍ରଦାନ କରିଛନ୍ତି । ସ୍ତ୍ରୀ ମଧ୍ୟ ରଜୋବତୀ ଅବସ୍ଥାରେ କୌଣସି ଶୁଭକାର୍ଯ୍ୟ କରିନଥାଏ ଓ ଦେବାଦେବୀ ମନ୍ଦିରକୁ ପ୍ରବେଶ କରିନଥାଏ । ରଜୋବତୀ ସ୍ତ୍ରୀ କୌଣସି ବୃକ୍ଷ ବା ଲତାକୁ ସ୍ପର୍ଶକଲେ ତାହା ଝାଉଁଳି ପଡ଼ିଥାଏ । ସେକାଳର ଉତ୍କଳୀୟ ସମାଜରେ ନାରୀଙ୍କୁ କିପରି କଲ୍ୟାଣ କରି ଯାଉଥିଲି ତାହାର ଚିତ୍ର ସାରଳା ମହାଭାରତରେ ମିଳେ । ସାରଳାଙ୍କ ଭାଷାରେ, ଗାନ୍ଧାରୀ କୁନ୍ତୀଙ୍କୁ, "ଅହୃଅ ସୁଲକ୍ଷଣୀ ହୁଅ" ବୋଲି କଲ୍ୟାଣ କରିଥିଲେ । ଧୃତରାଷ୍ଟ୍ର ତାହାଙ୍କୁ "ପୁତ୍ରବନ୍ତୀ ଯଶୋବନ୍ତୀ" ହୁଅ ବୋଲି ଆଶୀର୍ବାଦ ଦେଇଥିଲେ ।

ସେ ଯୁଗରେ ପାପ ପୁଣ୍ୟର ବିଗ୍ଚର ଥିଲି । ପରଦ୍ରବ୍ୟ, ପରଦାର, ହତ୍ୟା ଇତ୍ୟାଦିକୁ ପାପ ବୋଲି ଗଣନା କରାଯାଉଥିଲା । ତେଣୁ ମହାଭାରତକାର ଉପଦେଶ ଛଳରେ କହୁଛନ୍ତି—

"ପରଦାର, ପରଧନେ ଲୋଭ ନକରିବୁ
ବିବାହିତା ନାରୀ ସଙ୍ଗେ କେବଣଂ ରହିବୁ ।"

ଏବଂ ପାପର ବର୍ଣ୍ଣନା ଦେବାକୁ ଯାଇ କହୁଛନ୍ତି—

"ହତ୍ୟା ପରଦାରା ଅଟଇ ମହାପାପ
ଏମାନ ଗୋପ୍ୟାନ କରି ନୁହଇନା ପାର୍ଥ ।"
(ମଧ୍ୟପର୍ବ)

ପାପ ପୁଣ୍ୟର ସୁବିଗ୍ଚର ଥିବାରୁ ଲୋକମାନେ ଧର୍ମ ଭୀରୁ ଥିଲେ । ଧର୍ମ ପ୍ରତି ଥିଲି ଅଟଳ ଭକ୍ତି, ପ୍ରଗାଢ଼ ବିଶ୍ୱାସ । ସେଥିପାଇଁ ବିରାଟ ପର୍ବରେ କବି ଦ୍ରୌପଦୀଙ୍କ ମୁଖରେ କୁହାଇଛନ୍ତି—

"ଧର୍ମ ଲଂଘିବା ପାଇଁ ଅଟେ ଯେଉଁ ପ୍ରାଣୀ
ଆୟୁକ୍ଷୟ ଯାଏ ତାର ଶିରୀ ହୁଏ ହାନି"

ପୁନଶ୍ଚ ମଧ୍ୟ ପର୍ବରେ କବି କହୁଛନ୍ତି—

"ଧର୍ମରେ ଥିଲେ ବାବୁରେ ସ୍ୱବୃନ୍ଦନେ ଥାଇ
ଅଧର୍ମ କଥା ସେ କାଳେହେଂ ନରହଇ ?"

ସାରଳା ଦାସ ତାଙ୍କ କାଳର ଓଡ଼ିଆଙ୍କ ଖାଦ୍ୟପେୟର ଦୀର୍ଘ ତାଲିକାମାନ ଦେଇଛନ୍ତି । ରାଜା ଦ୍ରୁପଦ ଦ୍ରୌପଦୀଙ୍କ ବିବାହ ସମୟରେ ଉପସ୍ଥିତ ବ୍ୟକ୍ତିମାନଙ୍କୁ ଯେଉଁ ଭୋଜନ ଦେଇଥିଲେ ତାହାର ବର୍ଣ୍ଣନା ପାଠକଲେ ଓଡ଼ିଆ ସମାଜର ଖାଦ୍ୟ-ପେୟର ପରିଚୟ ମିଳେ । ଆଧୁନିକ ଯୁଗ ପରି ସେ କାଳରେ ପତ୍ରିର (ଖାଇବା ପାଇଁ) ବ୍ୟବହାର ଥିଲା ।

ଲୋକେ ସାଧାରଣତଃ ସ୍ନାନ ତର୍ପଣାଦି କର୍ମ ପରେ ଭୋଜନ କରୁଥିଲେ । ଭୋଜନ ପୂର୍ବରୁ ମଧ୍ୟ ହସ୍ତପଦ ଧୌତ ରୀତି ପ୍ରଚଳିତ ଥିଲା । ଭୋଜନ ଶେଷ ପରେ ତାମ୍ବୁଳାଦି ସେବନର ବ୍ୟବସ୍ଥା ଥିଲା । ଯେପରି—

"ମଣୋହି ସାରଣ ଯେ ଆଚ୍ଛୋଦନ ଗ୍ରନ୍ଥେ
କର୍ପୂର ତାମ୍ବୋଳ ଯେ ଭୁଞ୍ଜିଲେ କୁରୁରାଯ୍ୟେ"

ସାରଳା ମହାଭାରତରେ ତତ୍କାଳୀନ ଓଡ଼ିଆର ବେଶଭୂଷା ସୁସ୍ପଷ୍ଟ ଅବଶ୍ୟ ଏଥିରେ କବି ବିଭିନ୍ନ ବସ୍ତ୍ର (ଅମ୍ଟେଂଲା ଶାଢ଼ୀ, ଅମଲାନ ବସ୍ତ୍ର, ଦେବାଙ୍ଗ ପାଟ, ପଖାଳକରି ଇତ୍ୟାଦି), ବିଭିନ୍ନ ଅଙ୍ଗରାଗ (କଜ୍ଜ୍ବଳ, କୁଙ୍କୁମ ମୃଗ ନାଭି କସ୍ତୁରୀ ଇତ୍ୟାଦି ନାନା ସୁଗନ୍ଧି) ବିଭିନ୍ନ ଅଳଂକାର (ତାଡ, ଗୁମ୍ଫା, ବାହୁଟି, ଜଗଦଳା, କଙ୍କଣ, ନେପୁର ଆଦି) ର ବର୍ଣ୍ଣନା କରିଛନ୍ତି । ଏତଦ୍‌ଭିନ୍ନ ବ୍ରାହ୍ମଣ, ଶବର, ଗୋପାଳ, ଯୋଦ୍ଧା ଓ ସୈନିକ ମାନଙ୍କର ବେଶ ଆଦିକୁ ବହୁ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ।

କୃଷକ ସାରଳା ଦାସ ସାରଳା ମହାଭାରତରେ ତତ୍କାଳୀନ କୃଷି ଓ କୃଷକର ଚିତ୍ରଦେବା ସ୍ୱାଭାବିକ । କୃଷି ଓ କୃଷକର ଉନ୍ନତି ପାଇଁ କବି ଭୀଷ୍ମଙ୍କ ମୁଖରେ ପାଣ୍ଡବ ମାନଙ୍କୁ କହିଚନ୍ତି—

"କୃଷି କର୍ମ ଜନ ମାନଙ୍କୁ ନଡଣ୍ଡିବୁ ଧନ
ବର୍ଦ୍ଧିତ କରାଇବୁ ପରଜା ଜନମାନ ।"

ସାରଳା ମହାଭାରତ ବହୁ ଲୋକ ସଂସ୍କୃତିର ବର୍ଣ୍ଣନାରେ ଭରପୂର । ଅପୁତ୍ରିକ ଦୋଷ ଆମ ଭାରତୀୟ ଶାସ୍ତ୍ରରେ ଗୁରୁତର ଦୋଷ ଭାବରେ ପରିଗଣିତ । ଅପୁତ୍ରିକ ମୁଖ ଚାହିଁଲେ ଯଶ ମିଳେ ନାହିଁ । ତେଣୁ ସାରଳାଦାସ ଏହାର ବର୍ଣ୍ଣନାରେ କହିନ୍ତି—

"ଅପୁତ୍ରିକ ହୋଇ ମରନ୍ତି ଯେବଣ ପ୍ରାଣୀ
ଧାତକାରେ ନାଣକାଗ୍ନି ତାହାଙ୍କର ଶାନ୍ତି ଦିଅଇ ଆଣି"
(ଆଦିପର୍ବ)

ଓଡ଼ିଆ ସମାଜର ଚଳଣିରେ ବହୁ ପର୍ବ ପର୍ବାଣୀ, ଓଷା, ବ୍ରତ ଆଦି ପାଳିତ ହେଉଥିଲା । ସାରଳା ଦାସ ଏହାର ନିଖୁଣ ବର୍ଣ୍ଣନା କରିଛନ୍ତି । କାର୍ତ୍ତିକ ପୂର୍ଣ୍ଣିମାର ବର୍ଣ୍ଣନା ଦେବାକୁ ଯାଇ କବି ଲେଖିଛନ୍ତି—

"କାର୍ତ୍ତିକ ମାସ ଶୁକଳ ପକ୍ଷ ପଉର୍ଣ୍ଣମୀ
ଆକା ମା ବଇ ସ୍ନାହାନେ ଗଲେ କୋଣ୍ଡ ଶ୍ୱେକ ସ୍ୱାମୀ ।"
(ଆଦିପର୍ବ)

କୁମାରୋତ୍ସବ, ଚନ୍ଦନ ଯାତ୍ରା ଆଦିର ଅବିକଳ ଚିତ୍ର କବି ଦେଇଛନ୍ତି । ଚନ୍ଦନ ଯାତ୍ରାର ବର୍ଣ୍ଣନା ଦେବାକୁ ଯାଇ କବି କହିଛନ୍ତି—

"ବୈଶାଖ ଶୁକ୍ଳ ତୃତୀୟା ଅଟେ ଚନ୍ଦ୍ରବାର

+ + +

ଚନ୍ଦନ ଯାତ୍ରା ଉତ୍ସବ ସେ ଦିନକୁ ଯୋଗ ।

+ + +

ବିଜେ ପ୍ରତିମାକୁ ନେଇ ବସାଇଲେ ନାବେ
ସମସ୍ତ ସମ୍ଭାର ଘେନି ବିଜେ ଧର୍ମ ଦେବେ ।" ଇତ୍ୟାଦି
(ବିରାଟ ପର୍ବ)

ସାରଳା ଦାସ ସେକାଳର ଶବ ସଂସ୍କାର ରୀତି ଓ ଶୁଦ୍ଧି କ୍ରିୟାର ବିଧି ବର୍ଣ୍ଣନା କରିଛନ୍ତି ଯାହା ଆଧୁନିକ ରୀତି ସହ ସାମ୍ୟ ରକ୍ଷାକରେ । ଶୁଦ୍ରମୁନିଙ୍କ ଭାଷାରେ—

"ଚନ୍ଦନ ଅଗରୁ ସରଳ କାଷ୍ଠ ଆବର ଦେବଦାରୁ
ଅଗ୍ନି ଆରୋପଣ କଲେ ତେଜ ସେ ବସ୍ତାରୁ ।

+ + +

ଶ୍ରାଦ୍ଧ କର୍ମ ସେ ସେ କଲେ ଶମଶାନେ
ଘୃତ ପାରଣା କଲେ ଏକାଦଶ ଦିନେ ।"

(ଆଦିପର୍ବ)

ଉପସଂହାରରେ କହିବାକୁ ଗଲେ ସାରଳା ମହାଭାରତ ଓଡ଼ିଶାର ଲୋକ ସଂସ୍କୃତି, ଲୋକାଚାର, ଲୋକ ବିଶ୍ୱାସ, ସାଡମାଡ ଆଦିର ଗନ୍ତାଘର । ଏହା ସେ ଯୁଗର ଚଳଣିକୁ କାହିଁକି ଓଡ଼ିଆ ଜାତିର ଆବାହମାନ କାଳରୁ ଏ ପର୍ଯ୍ୟନ୍ତ ଗଢ଼ିଆସୁଥିବା ଚଳଣିକୁ ଅତି ଜୀବନ୍ତ ଭାବେ ଉପସ୍ଥାପିତ କରିଛି । ଅବଶ୍ୟ ଆଜିର ତଥାକଥିତ ଆଧୁନିକ ଯୁଗରେ ସେ ସବୁ ଚଳଣି ମଧ୍ୟରୁ ଅଧିକାଂଶ ଲୁପ୍ତ ହେଲେବି ସେଗୁଡ଼ିକୁ ଅସ୍ୱୀକାର କରିଯାଇ ନପାରେ । ଆଜି ବି ଓଡ଼ିଶାର ଅଧିକାଂଶ ପୁରପଲ୍ଲୀରେ ସେ ସବୁ ଚଳଣିର ବ୍ୟବହାର ଅପ୍ରତିହତ । ତେଣୁ ଯଥାର୍ଥରେ କୁହାଯାଇଛି—

"ଯାହା ନାହିଁ ଭାରତେ, ତାହା ନାହିଁ ଭାରତେ"



Writing is not literature unless it gives to the reader a pleasure which arise not only from the things said, but from the way in which they are said; and that pleasure is only given when the words are carefully or curiously or beautifully put together in to sentences.

—Stopford Brooke—

# ରୀତିଯୁଗର ପୃଷ୍ଠଭୂମି ଓ ଉପେନ୍ଦ୍ର ଭଞ୍ଜ

• ଶ୍ରୀ କୃଷ୍ଣଚନ୍ଦ୍ର ପ୍ରଧାନ

ସ୍ରଷ୍ଟା, ସମୟର ପ୍ରତିନିଧି । ଯେକୌଣସି ଜାତିଗୋଷ୍ଠୀର କବି ସେହି ସମୟର ସାମାଜିକ, ରାଜନୀତିକ, ଆର୍ଥନୀତିକ ଅବସ୍ଥାର ବିଶ୍ୱସ୍ତ ଚିତ୍ରକର । ଅଧିକାଂଶ ସମୟରେ କବିର ବ୍ୟକ୍ତିଗତ ଜୀବନ ମଧ୍ୟ ତା ସୃଷ୍ଟିରେ ପ୍ରତିଫଳିତ ହୋଇଥାଏ । ତେଣୁ ଜଣେ କବିର ସୃଷ୍ଟି ପର୍ଯ୍ୟାଲୋଚନାବେଳେ ତାର ବ୍ୟକ୍ତିଗତ ଜୀବନ ଓ ପରିବେଶ ପ୍ରତି ଦୃଷ୍ଟି ଦେବା ଆବଶ୍ୟକ । ଏହି ପରିପ୍ରେକ୍ଷୀରେ ରୀତିଯୁଗର ଶ୍ରେଷ୍ଠକବି ଉପେନ୍ଦ୍ର ଭଞ୍ଜଙ୍କୁ ଆଲୋଚନା କରାଯାଇପାରେ ।

ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତାଗଣ ରୀତିଯୁଗର ସମୟ ସୀମାକୁ ୧୬୫୦ ଖ୍ରୀରୁ ୧୮୫୦ ଖ୍ରୀ ପର୍ଯ୍ୟନ୍ତ ଧରିନେଇଛନ୍ତି । ଏହି ସମୟରେ ଓଡ଼ିଶାର ରାଜନୀତିକ ଆକାଶ ଥିଲା ଘୋର ଅନ୍ଧକାରମୟ । ଓଡ଼ିଶାର ଶେଷସ୍ୱାଧୀନ ନରପତି ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ପରେ ଆଫଗାନମାନେ ଏହାର ଶାସନ କ୍ଷମତା ହାତକୁ ନେଲେ । ଏହାପରେ କ୍ଷମତା ମୋଗଲ ମାନଙ୍କ ହସ୍ତକୁ ଯାଇଥିଲା । ପ୍ରାଦେଶିକ ରାଜାମାନଙ୍କ ମଧ୍ୟରେ ମତାନୈକ୍ୟ, ବିଶ୍ୱାସଘାତକତା ଓ ପରସ୍ପର ପ୍ରତି ଦ୍ୱେଷଭାବ ମୁସଲମାନ ଶାସକ ମାନଙ୍କୁ ସେମାନଙ୍କ ଶାସନର ମୂଳଭିତ୍ତି ଦୃଢ଼ କରିବା ନିମିତ୍ତ ସୁଯୋଗ ଯୋଗାଇଥିଲା । ଏହି ସମୟରେ ମୁସଲମାନ ଶାସକ ମାନେ ରାଜନୀତିକ ଆଧିପତ୍ୟ ସଙ୍ଗେ ସଙ୍ଗେ ସାମାଜିକ ଆଧିପତ୍ୟ ମଧ୍ୟ ହାସଲ କଲେ । ଏହାପରେ ଓଡ଼ିଶା ମରହଟ୍ଟା ଶାସନାଧୀନ ହୋଇଥିଲା । ମରହଟ୍ଟାମାନେ ଥିଲେ ଅତ୍ୟାଚାରୀ ଓ ଲୁଣ୍ଠନକାରୀ । ଏହିପରି ଏକ ପୃଷ୍ଠଭୂମି ଉପରେ ଗଢି ଉଠିଲା ଓଡ଼ିଶାର ରୀତିଯୁଗୀୟ ସାହିତ୍ୟ । କେନ୍ଦ୍ର ଶାସକଙ୍କ ଆଡମ୍ବରପୂର୍ଣ୍ଣ ସାଜସଜ୍ଜା ଓ ବିଳାସ ବ୍ୟସନକୁ ଲକ୍ଷକରି ପ୍ରାଦେଶିକ ରାଜାମାନେ ସେହିପରି ବିଳାସୀ ହେବାକୁ ଚେଷ୍ଟାକଲେ । କେନ୍ଦ୍ର ଶାସକଙ୍କ ଦରବାରରେ

କୌଣସି ସାହିତ୍ୟଚର୍ଚ୍ଚା ହୋଇ ନପାରିଥିଲେ ମଧ୍ୟ ସାମନ୍ତ ରାଜମାନଙ୍କର ଦରବାର ହୋଇଉଠିଲା ସଂସ୍କୃତ ଚର୍ଚ୍ଚାର ପୀଠସ୍ଥଳୀ । ଏଣୁ ରାଜାମାନଙ୍କ ବିଳାସ ବ୍ୟସନ ପାଇଁ ସୁରାର ଯେପରି ପ୍ରୟୋଜନ ହେଲା, ମନୋରଞ୍ଜନ ନିମିତ୍ତ ସେହିପରି ସୃଷ୍ଟି ହେଲା ରସ ସାହିତ୍ୟ । ମୁସଲମାନ ଶାସକଙ୍କର ଓ ପ୍ରାଦେଶିକ ରାଜାମାନଙ୍କର ଆଡମ୍ବର ପ୍ରିୟତା ବିଳାସବ୍ୟସନ ପ୍ରତିଫଳିତ ହେଲା ସାହିତ୍ୟରେ । ରାଜପ୍ରାସାଦ ଓ ପ୍ରମୋଦ ସରୋବରର ରମଣୀୟ ଚିତ୍ର ତେଣୁ ଉପେନ୍ଦ୍ରଙ୍କ ସୃଷ୍ଟିରେ ପରିଦୃଷ୍ଟ ହୋଇଥାଏ ଯଥା—

କହିବାର ନୋହେ ସେ କଟକ ଛଟକକୁ/ ରତ୍ନ ଝଟକରେ ହସେ ଆନ କଟକକୁ ସେ /

X X X X X X

ଯେତେ କୋଟି ସୁବର୍ଣ୍ଣ ଯାହାକୁ ମିଳେ ତହିଁ / ତେତେ ଗୋଟି କଳଶ ସେ ମନ୍ଦିରେ ବସାଇ ସେ / + + + / ଖଣ୍ଡ ପରଶୁ ଧାରଣ ପୁର ପରିସ୍କାରେ/ ନ ବହନ୍ତି ଶାମୁକା ମୁକୁତା ବନ୍ଧନରେ ଯେ / ଯଉଁ ହେମ କମନୀୟ କମଳରେ ହୋଇ / ଚେ଼ ରାହିଣ ବାରବାନେ ଚୁକପାତ ନାହିଁ ଯେ / + + + / ସରସୀ ଶୋଭିତ ଅନାଇ ମନ ନେଇ ଶୋଭିତ / ତଟ ଘଟନା ବଜ୍ର ମୟରେ ପକ୍ଷୀପନ୍ତି ବର୍ମିତ / X X X / ପାବଚ୍ଛ ସ୍ୱଚ୍ଛ ସ୍ଫଟିକରେ ନୀରପୂର ପ୍ରତୀତ / ସୁବେଣୀ ସ୍ମରଣ ଭାବକ ତହିଁ ତ୍ରିବେଣୀଖ୍ୟାତ ।

(ଲାବଣ୍ୟବତୀ)

ଏହି ବର୍ଣ୍ଣନାରୁ ତତ୍‌କାଳୀନ ରାଜାମାନଙ୍କର ପ୍ରାସାଦର ଆଡମ୍ବରପ୍ରିୟତା ସଂପର୍କରେ ଏକସ୍ଥୂଳ ଧାରଣା ଆସିଥାଏ । ସମାଜର ପ୍ରତିଛବି ପ୍ରତିଫଳିତ ହୋଇଥାଏ ସାହିତ୍ୟରେ । ଉପେନ୍ଦ୍ରଙ୍କ ସାହିତ୍ୟରେ ସମାଜର ଏହିପରି ରୂପ ବହୁପରିମାଣରେ ଦେଖିବାକୁ ମିଳିଥାଏ ।

ରୀତିଯୁଗ ମୁସଲମାନ ଶାସକଙ୍କ ଯୁଗ । ତେଣୁ ରୀତି ଯୁଗ ସାହିତ୍ୟରେ ମୁସଲମାନୀ ପ୍ରଭାବ ଦୃଷ୍ଟି ଗୋଚର ହେବା ସ୍ୱାଭାବିକ । ଉପେନ୍ଦ୍ରଙ୍କ କାବ୍ୟ କବିତାରେ ଏହାର ଗଭୀର ପ୍ରଭାବ ପଡ଼ିଛି । ସେ ତାଙ୍କ କାବ୍ୟ ନାୟିକାଙ୍କୁ ଯେଉଁ ସବୁ ଅଳଂକାର ପିନ୍ଧାଇ ଦେଇଛନ୍ତି ତାହା ତତ୍‌କାଳୀନ ସମାଜରେ ମୁସଲମାନ ସ୍ତ୍ରୀମାନେ ବ୍ୟବହାର କରୁଥିଲେ ।

ପ୍ରାଦେଶିକ ରାଜାମାନେ ଅଧଃପତନର ଶେଷସୀମାକୁ ଖସି ଯାଇ ଥିଲେ । ପ୍ରଜାମାନଙ୍କ ପ୍ରତି ସେମାନଙ୍କର କୌଣସି କର୍ତ୍ତବ୍ୟ ନ ଥିଲା । ନିଜେ ବିଳାସ ବ୍ୟସନରେ ରହି

ନାରୀମାନଙ୍କୁ ଉପଭୋଗ କରି ଜୀବନ ବିତାଇ ଦେବା ଥିଲା ତାଙ୍କର ଲକ୍ଷ୍ୟ । ଏପରିକି ଉପେନ୍ଦ୍ର ଭଞ୍ଜଙ୍କ ପିତାମହ ଧନଞ୍ଜୟ ଭଞ୍ଜଙ୍କର ରମଣୀ ଉପଭୋଗ ଲିପ୍ସା ଥିଲା ପ୍ରବଳ । ଭଞ୍ଜବଂଶାବଳୀରେ ଅଛି—

"ବହୁତ ଜାତିରୁ ସ୍ତ୍ରୀରମାନ ଆଣିଲେ / ବଡ଼ ଯତ୍ନକରି ନହରରେ ରଖିଲେ / ଯା'ଘରେ ସୁନ୍ଦରୀ ସ୍ତ୍ରୀରମାନେତ ଥିଲେ / ବଳାତ୍କାର କରି ତାଙ୍କୁ ଘେନି ଆସିଲେ ।"

ଏହି ପରିବେଶରେ ଉପେନ୍ଦ୍ର ତାଙ୍କର କାବ୍ୟ କବିତା ରଚନା କରିଛନ୍ତି । ତେଣୁ ତାଙ୍କର କାବ୍ୟରେ ନାରୀଓ ଶୃଙ୍ଗାରିକତା ପ୍ରାଧାନ୍ୟ ଲାଭ କରିବା ବିଚିତ୍ର ନୁହେଁ । ଭୋଜରାଜା ଶୃଙ୍ଗାର ରସକୁ ପ୍ରାଧାନ୍ୟ ଦେଇ ଲେଖି ଥିଲେ—

ଶୃଙ୍ଗାରି ଚେତ୍ କବିଃ କାବ୍ୟେଜାତଂ ରସମୟଂଜଗତ୍<br>ସ ଏବ ବୀତରାଗଶ୍ଚେତ୍ ନୀରସଂ ସର୍ବମେବତତ୍ ।

ଅର୍ଥାତ୍ ରସମୟ କାବ୍ୟ ସୃଷ୍ଟି କରିବାକୁ ହେଲେ କବିକୁ ନିଶ୍ଚିତ ଭାବରେ ଶୃଙ୍ଗାରୀ ହେବାକୁ ପଡ଼ିବ । ସେ ଏଥିରେ ବୀତରାଗ ହେଲେ ସମସ୍ତ କାବ୍ୟ ନୀରସ ହୋଇଯିବ । ରୀତି ଯୁଗରେ ଅଧିକାଂଶ କବି ଥିଲେ ଦରବାରୀ କବି । ରାଜାମାନଙ୍କ ନିର୍ଦ୍ଦେଶରେ ସେମାନେ କାବ୍ୟ ରଚନା କରୁଥିଲେ । । ଶୃଙ୍ଗାର ରସକୁ ପ୍ରାଧାନ୍ୟ ଦେଇ କାବ୍ୟ ରଚନା କରିବା ନିମିତ୍ତ ସେମାନେ ଦରବାରୀ କବିମାନଙ୍କୁ ନିର୍ଦ୍ଦେଶ ଦେଉଥିଲେ । ଶୃଙ୍ଗାର ରସକୁ ମଧୁର ରସ ରୂପରେ କଳ୍ପନା କରାଯାଇଛି । ଆନନ୍ଦବର୍ଦ୍ଧନ ସେଥିପାଇଁ ଧ୍ୱନ୍ୟାଲୋକରେ କହିଛନ୍ତି—

ଶୃଙ୍ଗାର ଏବ ମଧୁରଃ ପର ପ୍ରହ୍ଲାଦନୋରସଃ<br>ତନ୍ମୟଂ କାବ୍ୟ ମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତି ।

ସଂସ୍କୃତ ସାହିତ୍ୟରେ ଶୃଙ୍ଗାର ରସର ଏକ ଉଲ୍ଲେଖଯୋଗ୍ୟ ଭୂମିକା ଥିଲା । ଉପେନ୍ଦ୍ର ଏହାଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିଲେ । ସେଥିନିମିତ୍ତ ରସିକ-ହାରାବଳୀରେ କହିଛନ୍ତି—

ବିଗ୍ଭରଣ କରିବ ଉତ୍ତମ ଗ୍ରନ୍ଥ ଗୀତ
ରସସାର ଶୃଙ୍ଗାର ତହିଁରେ ହେବ ସ୍ଥିତ ।

ଏହି ଦୃଷ୍ଟିରୁ ବିଗ୍ଭର କଲେ ଉପେନ୍ଦ୍ରଙ୍କୁ ଶୃଙ୍ଗାରୀ କବି କହି ସମାଲୋଚନା କରି ହେବ ନାହିଁ । ଯୁଗର ଚେତନାକୁ ସେ ପ୍ରକାଶ କରିଛନ୍ତି ତାଙ୍କ କାବ୍ୟରେ । ରୀତିଯୁଗର ସାମାଜିକ ପରିବେଶ ଓ ରାଜନୀତିକ ପରିବେଶର ସଫଳ ରୂପାୟନ ଦେଖି-ବାକୁମିଳେ ତାଙ୍କ ସୃଷ୍ଟିରେ । ଆଧୁନିକ ଜୀବନ ଓ ଜଗତକୁ ଆଖିଆଗରେ ରଖି ଉପେନ୍ଦ୍ର ସାହିତ୍ୟକୁ ଆଲୋଚନା କଲେ ନିର୍ଗୁଣ ହେବାକୁ ପଡ଼ିବ । କାରଣ ବର୍ତ୍ତମାନର ମୂଲ୍ୟବୋଧ ଓ ସେ ସମୟର ମୂଲ୍ୟବୋଧ ମଧ୍ୟରେ ଅନେକ ପାର୍ଥକ୍ୟ । ଆଧୁନିକ ମାନବର ଜୀବନ ଅଧିକ ଜଟିଳ । ବର୍ତ୍ତମାନର ପରିବେଶ ସହିତ ରୀତିଯୁଗର ପରିବେଶ କଦାପି ତୁଳନୀୟ ନୁହେଁ । ସପ୍ତଦଶ ଶତାବ୍ଦୀର ପାରିପାର୍ଶ୍ୱିକ ଅବସ୍ଥା ଓ ତାର ରାଜନୀତି ସମାଜନୀତି ବିଂଶ ଶତାବ୍ଦୀର ପାରିପାର୍ଶ୍ୱିକ ଅବସ୍ଥା ଓ ସମାଜନୀତି ଠାରୁ ଅନେକ ପୃଥକ୍ । ସେଥି ନିମିତ୍ତ ଉପେନ୍ଦ୍ର କାବ୍ୟ କବିତାକୁ ବିଗ୍ଭର କରିବାକୁ ଯିବା ପୂର୍ବରୁ ପ୍ରଥମେ ରୀତିଯୁଗୀୟ ବାତାବରଣ ଓ କବିଙ୍କ ବ୍ୟକ୍ତିଗତ ଜୀବନ ସହିତ ପରିଚିତ ହେବା ଉଚିତ୍ ।

— ୦ —

# ପଞ୍ଚସଖା ସାଧନା : ବହୁଧର୍ମ-ଧାରଣାର ଅପୂର୍ବ ସମନ୍ୱୟ

• ପ୍ରଦୀପ୍ତ କୁମାର ପଣ୍ଡା

---

ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ଓଡ଼ିଆ ସାହିତ୍ୟରେ ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଯଶୋବନ୍ତ, ଓ ଅନନ୍ତ ପ୍ରଭୃତି ଯେଉଁ ପଞ୍ଚ ମହାମନୀଷୀଙ୍କ ଆବିର୍ଭାବ ଘଟିଥିଲା । ସେମାନଙ୍କଦ୍ୱାରା ରଚିତ ସାହିତ୍ୟର କାଳ, ଧର୍ମଧାରଣା, ତତ୍ତ୍ୱ ଓ ଦର୍ଶନ ଆଦି ସମ୍ପର୍କରେ ବହୁ ବାଦ ବିସଂବାଦ ରହିଅଛି । କିନ୍ତୁ ଓଡ଼ିଶାର ପୀଠ ଦେବତା ଜଗନ୍ନାଥ ଆଆଂତି ସମସ୍ତ ବିବାଦର ସମନ୍ୱୟାତ୍ମକ ପ୍ରତୀକ । ସେ ଆନ୍ତି ଏକାଧାରରେ ଶବରରପେନ୍ଦୁ, ବୌଦ୍ଧର ବୁଦ୍ଧ, ଜୈନର ଜୀନ, ଶୈବର ଶିବ, ଶାକ୍ତର ଶକ୍ତି ଓ ବୈଷ୍ଣବଙ୍କର ବିଷ୍ଣୁ । ଆମର ଆଲୋଚ୍ୟ ପଂଚସଖା ସାଧକଗଣ ଏହି ଜଗନ୍ନାଥଙ୍କୁ କେନ୍ଦ୍ର କରି ସୃଷ୍ଟି କରନ୍ତି ସେମାନଙ୍କର ସାହିତ୍ୟ ସମ୍ଭାର ।

ପଂଚସଖାଙ୍କ ଧର୍ମଧାରଣା ଉପରେ ଆଲୋକପାତକରି ସମାଲୋଚକ ଗଣ ସେମାନଙ୍କର ଏକଦେଶଦର୍ଶୀ ମତବାଦର ପରିଚୟ ପ୍ରଦାନ କରି ଅଛନ୍ତି । ଆଲୋଚକ ନଗେନ୍ଦ୍ରନାଥ ବସୁ ତାଙ୍କୁ "ପ୍ରଚ୍ଛନ୍ନ ବୌଦ୍ଧ" କହୁଥିବା ବେଳେ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ ସେମାନେ ବୌଦ୍ଧ ବୈଷ୍ଣବ । ପଣ୍ଡିତ ବିନାୟକ ମିଶ୍ର କହନ୍ତି ଯେ ସେମାନେ ଥିଲେ ସହଜିଆ ଯୋଗାଭ୍ୟାସୀ । ପୁଣି ଆଲୋଚକ ବଂଶୀଧର ମହାନ୍ତି ଏମାନଙ୍କୁ ଅନ୍ତର୍ମୁଖୀ ସାଧକ କହୁଥିବା ବେଳେ ନଗେନ୍ଦ୍ରନାଥ ପ୍ରଧାନଙ୍କ ମତରେ ସେମାନେ ଥିଲେ କବୀର ଓ ଦାଦୁ ଦୟାଲ ପ୍ରଭୃତିଙ୍କ ପରି ନିର୍ଗୁଣ ସାଧକ । ଆଲୋଚକ ମାନଙ୍କର ଏହି ସବୁ ମତାମତ ପଞ୍ଚସଖାଙ୍କଧର୍ମ ଧାରଣାର ଗୋଟିଏ ଗୋଟିଏ ଦିଗ । ସେମାନେ ପଂଚସଖା ଧର୍ମର ବ୍ୟାପ୍ତ ମାର୍ଗଟିକୁ ଆବିଷ୍କାର କରିପାରି ନାହାନ୍ତି ।

ପ୍ରକୃତ ପକ୍ଷେ ଦେଖିବାକୁ ଗଲେ ପଞ୍ଚସଖା ଗୋଷ୍ଠୀର ସାଧକମାନେ କୌଣସି ନିର୍ଦ୍ଦିଷ୍ଟ ଧର୍ମପରଂପରାର ଅନୁସରଣକାରୀ ନଥିଲେ । ସେମାନଙ୍କ ପ୍ରବର୍ତ୍ତିତ ଧର୍ମଧାରଣାରେ ସବୁଧର୍ମର ସାରତତ୍ତ୍ୱ ମିଶ୍ରିତ ହୋଇ ଏକ ସୁସମନ୍ୱୟ ପ୍ରତିଷ୍ଠା କରିପାରିଥିଲା । ପଞ୍ଚସଖା ଗୋଷ୍ଠୀର ସାଧକମାନେ ଥିଲେ ଏକା ଧାରରେ ବୌଦ୍ଧ, ଜୈନ, ନାଥ, ନିର୍ଗୁଣ ଉପାସକ ଓ ସର୍ବୋପରି ବୈଷ୍ଣବ ସାଧକ । ପ୍ରତ୍ୟେକ ଧର୍ମରପରଂପରାକୁ ସେମାନେ ସମ୍ମାନ ଦେଉଥିଲେ । କୌଣସି ନିର୍ଦ୍ଦିଷ୍ଟ ଧର୍ମର ନିଗଡରେବାନ୍ଧିହୋଇ ରହିବା ନିମିତ୍ତ ଇଚ୍ଛା-ପୋଷଣ କରୁନଥିଲେ ସେମାନେ । ବର୍ତ୍ତମାନ ସେମାନଙ୍କ ସାହିତ୍ୟର ଏହି ସମନ୍ୱୟାତ୍ମକ ଦିଗ କଥା ବିଚାର କରାଯାଉଛି ।

ବହୁ ବିଶିଷ୍ଟ ଆଲୋଚକମାନେ ପଞ୍ଚସଖାଙ୍କୁ ବୌଦ୍ଧଧର୍ମର ପ୍ରଚାରକ ବୋଲି ଆଖ୍ୟାୟିତ କରିଥାଆନ୍ତି । ଏହା ଯଦିଓ ପୂର୍ଣ୍ଣତଃ ସତ୍ୟ ନୁହେଁ ତଥାପି ସେମାନଙ୍କ ସାହିତ୍ୟରେ ବୌଦ୍ଧଧର୍ମର ମୂଳନୀତି ସର୍ବାଧିକ ଭାବରେ ଅନୁସୃତ ହୋଇଅଛି । ପ୍ରାକ୍ କାଳରେ କଳିଙ୍ଗ ଭୂମିରେ ବୌଦ୍ଧଧର୍ମର ବହୁପ୍ରତିଷ୍ଠା ଥିଲା । ଏପରିକି ଉତ୍କଳର ବଣିକ ତପସୁ ଓ ଭଲ୍ଲିକ ପୃଥିବୀର ସର୍ବପ୍ରଥମ ବୌଦ୍ଧ । ଉଡ୍ଡୀୟାନ, ପୁଷ୍ପଗିରି, ପ୍ରଭୃତି ବହୁ ବୌଦ୍ଧ ବିହାର ଓଡ଼ିଶାରେ ଥିଲା ।

ଏହି ସୁପ୍ରତିଷ୍ଠିତ ବୌଦ୍ଧଧର୍ମ ଓଡ଼ିଶାର ସଂସ୍କୃତିରେ ଦୀର୍ଘଦିନଧରି ଅପ୍ରତିହତ ପ୍ରଭାବ ପକାଇ ପାରିଥିଲା । 'ଚର୍ଯ୍ୟାପଦ' ପରେ ସାରଳା ଦାସଙ୍କ ମହାଭାରତରେ ବୌଦ୍ଧ-ଧର୍ମର ଉପଦେଶାତ୍ମକ ତଥ୍ୟମାନ ପରିଦୃଷ୍ଟ ହୁଏ ।

ଓଡ଼ିଆ ସାହିତ୍ୟରେ ପଞ୍ଚସଖାଙ୍କ ଆବିର୍ଭାବ କାଳ ଓଡ଼ିଶା ଇତିହାସରେ ଏକ ଅବକ୍ଷୟ କାଳ । ଏ ସମୟରେସହଜିଆ ବୌଦ୍ଧଧର୍ମର ପ୍ରଭାବ ସମାଜରେ ବ୍ୟଭିଚାର ର ମାତ୍ରାକୁ ବହୁ ପରିମାଣରେ ବଢାଇ ଦେଇଥିଲା । ଏହି ଭଳି ଏକ ବକ୍ଷ୍ୟମାଣ କାଳରେ ସମାଜ ଯେତେବେଳେ 'ତ୍ରାହି' 'ତ୍ରାହି' ଡାକ ଛାଡୁଥିଲା ସେହି ସନ୍ଧିକ୍ଷଣରେ ପଞ୍ଚସଖା ସାଧକଗଣ ଆବିର୍ଭୂତ ହୋଇ ଓଡ଼ିଶାବାସୀଙ୍କୁ ନୀତି ପୂର୍ଣ୍ଣ ଆଦର୍ଶର ଶିକ୍ଷାପ୍ରଦାନ କଲେ ମାତ୍ର ତାହାଥିଲା ପୂର୍ଣ୍ଣତଃ ଭଗବାନ୍ ବୁଦ୍ଧଙ୍କର ପ୍ରଦର୍ଶିତ ମାର୍ଗର ଅନୁସରଣ ।

'ଶୂନ୍ୟବାଦ' ବୌଦ୍ଧ ଧର୍ମର ଏକ ସୁପ୍ରତିଷ୍ଠିତ ପରଂପରା । ବୌଦ୍ଧଭିକ୍ଷୁ ନାଗା-ର୍ଜ୍ଜୁନ ଖ୍ରୀଷ୍ଟୀୟ ୨ୟ-୩ୟ ଶତକରେ ବୌଦ୍ଧଦର୍ଶନରେ ଶୂନ୍ୟବାଦ ପ୍ରଚାର କରିଥିଲେ ।

ଶୂନ୍ୟବାଦର ପ୍ରଧାନ ଗ୍ରନ୍ଥ ହେଉଛି— 'ମାଧ୍ୟମିକ ଶାସ୍ତ୍ର' । ଆଚାର୍ଯ୍ୟ ନାଗାର୍ଜ୍ଜୁନଙ୍କ ମତରେ ସୃଷ୍ଟିର ସମସ୍ତ ବସ୍ତୁହିଁ ଶୂନ୍ୟ । 'ଶୂନ୍ୟ'ର ଅର୍ଥ ବ୍ୟାଖ୍ୟାନ କରି ସେ କହିଲେ ! "ଅସ୍ତି ନାସ୍ତି ତଦୁଭୟାନୁଭୟ ଚତୁଃ କୋଟି ବିନର୍ମୁକ୍ତଂ ଶୂନ୍ୟ"— ଅର୍ଥାତ୍ ଏହି ଶୂନ୍ୟକୁ ଶୂନ୍ୟ କହିହେବ ନାହିଁ କି ଅଶୂନ୍ୟ ମଧ୍ୟ କହିହେବ ନାହିଁ ବା ଉଭୟ ଶୂନ୍ୟ ଅଶୂନ୍ୟ କହିହେବ ନାହିଁ । ପଞ୍ଚସଖା ସାହିତ୍ୟରେ ଆରାଧ୍ୟ ଦେବତା ଜଗନ୍ନାଥ ହେଉଛନ୍ତି ଏହି 'ଶୂନ୍ୟତା'ର ପ୍ରତୀକ । ମହାପୁରୁଷ ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ରେ ଶୂନ୍ୟବାଦର ଶୂନ୍ୟପୁରୁଷଙ୍କର ବର୍ଣ୍ଣନାରେ କହିଅଛନ୍ତି—

"ଭଲ ପଚାରିଲୁ ଗୁପତ ସଖି
ଶୂନ୍ୟ ପୁରୁଷ ଯେ ଶୂନ୍ୟରେ ବନ୍ଦୀ
ଶୂନ୍ୟ ପୁରୁଷ ଉଦାସରେ ରହେ
ଶୂନ୍ୟ ପୁରୁଷ ସବୁ ମାୟା ଭ୍ୟାସେ ।"

ଜଗନ୍ନାଥ, ବଳରାମ, ପ୍ରଭୃତି ଅନ୍ୟ ଚାରି ସଖାଙ୍କ ରଚନାରେ ମଧ୍ୟ ଏହି ଚେତନାର ସୂଚନା ମିଳିଥାଏ ।

'ପିଣ୍ଡ ବ୍ରହ୍ମାଣ୍ଡ ବାଦ' ବୌଦ୍ଧଧର୍ମର ଅନ୍ୟ ଏକ ତତ୍ତ୍ୱ । ବୌଦ୍ଧଗାନ ଓ ଦୋହାମାନଙ୍କରେ ପିଣ୍ଡ ଓ ବ୍ରହ୍ମାଣ୍ଡର ସବିଶେଷ ବର୍ଣ୍ଣନା ଦେଖିବାକୁ ମିଳେ । ବୌଦ୍ଧ ସାଧକମାନେ ଏହି ପିଣ୍ଡ ମଧ୍ୟରେ ବ୍ରହ୍ମାଣ୍ଡର କଳ୍ପନା କରି ପିଣ୍ଡର ସାଧନା ଫଳରେ ବ୍ରହ୍ମାଣ୍ଡର ସାଧନା କରାଯାଏ ବୋଲି ମତ ପ୍ରଦାନ କରିଥିଲେ । ଏହି ମତବାଦର ପ୍ରଭାବ ପଞ୍ଚସଖା ସାହିତ୍ୟର ଅନନ୍ୟ । ବଳରାମ ଦାସ 'ବିରାଟ ଗୀତା'ରେ କହିଅଛନ୍ତି—

"ବ୍ରହ୍ମାଣ୍ଡେ ଯେତେ ବିଧି ମତ । ପିଣ୍ଡରେ ଅଛନ୍ତି ସମସ୍ତ ।।
ପିଣ୍ଡ ବ୍ରହ୍ମାଣ୍ଡ ଏକ ମତ । ତୋ ଆଗେ କହିଦେଲି ତତ୍ତ୍ୱ ।।
ବ୍ରହ୍ମାଣ୍ଡେ ଚୁଉଦ ନଗର । ଏ ପିଣ୍ଡେ ସବ ହେଉ କର ।।"

ବଳରାମ ଦାସଙ୍କର ଏହି ପିଣ୍ଡବ୍ରହ୍ମାଣ୍ଡ ଦର୍ଶନ ପରି ଅନ୍ୟ ସାଧକମାନଙ୍କ ରଚନାରେ ମଧ୍ୟ ପିଣ୍ଡବ୍ରହ୍ମାଣ୍ଡର ବର୍ଣ୍ଣନା ପରିଲକ୍ଷିତ ହୁଏ । ପୁଣି ପଞ୍ଚସଖା ସାଧକଗଣ ଏହି ପିଣ୍ଡ ମଧ୍ୟରେ 'ନୀଳାଚଳ' ଧାମର ପ୍ରତିଷ୍ଠା କରି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ରୋହିଣୀକୁଣ୍ଡ , ରତ୍ନସିଂହାସନ ଆଦିର ବର୍ଣ୍ଣନା କରିଅଛନ୍ତି ।

ହିନ୍ଦୁବିଦ୍ୱେଷୀ ବୌଦ୍ଧମାନଙ୍କ ପରି ପଞ୍ଚସଖାମାନେ ପୁରୋହିତ ଗୋଷ୍ଠୀକୁ ଘୃଣା କରୁଥିଲେ । ନିଜକୁ ଶୂଦ୍ର ବା ହୀନ ବୋଲି ମନେକରୁଥିଲେ । ଜାତିଭେଦ ପ୍ରଥା ସେମାନଙ୍କର ନଥିଲା । ପୁଣି ଏହି ଅବହେଳିତ ଶୂଦ୍ରମାନଙ୍କୁ ବେଦ, ବେଦାନ୍ତ ଓ ପୁରାଣ ପଢିବାର ଅଧିକାର ହେମାନେ ଦେଇଥିଲେ । ଏପରିକି ବଳରାମ ଦାସ ମୂର୍ଖ ଜଡ ହରିଦାସଙ୍କ ମସ୍ତକରେ କର ସ୍ଥାପନ କରିବାରୁ ସେ ଉଚ୍ଚକଣ୍ଠରେ କହିଥିଲା—

"ଏମାନେ ଯେ ବ୍ରହ୍ମବିଦ୍ୟାକୁ ଛନ୍ତି ଗୋପ୍ୟ କରି
ଜାଲି ଦେବାର୍ଦ୍ଦିନ ବେଳେ କହିବ ବାଉରି ।"

ସର୍ବୋପରି ପଞ୍ଚସଖାଗଣ ବୌଦ୍ଧମାନଙ୍କ ପରି ଥିଲେ ବିଶ୍ୱ ପ୍ରେମୀ । ବୌଦ୍ଧ ସଂପ୍ରଦାୟର ସାଧକ ଯେଉଁଭଳି କହେ ଏ ବିଶ୍ୱର ଧୂଳିକଣା ପର୍ଯ୍ୟନ୍ତ, ମୁକ୍ତି ନପାଇବା ପର୍ଯ୍ୟନ୍ତ ମୁଁ ମୋକ୍ଷ ଆଶା କରେନାହିଁ, ଏଭଳି ପଞ୍ଚସଖା ସାଧକଗଣ ସେମାନଙ୍କର ଅବହେଳିତ ଜନତାଙ୍କର ଉନ୍ନତି କଳ୍ପେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ଅଚ୍ୟୁତାନନ୍ଦ ଗୋପାଳ, କୈବର୍ତ୍ତ, ପ୍ରଭୃତି ସାମାଜିକ ପ୍ରତିଷ୍ଠାହୀନ ଜାତିମାନଙ୍କର ଉନ୍ନତିକଳ୍ପେ ଓଗାଳ ଆଦି ରଚନା କରିଥିଲେ ।

ପଞ୍ଚସଖାଙ୍କ ଧର୍ମଧାରଣାରେ ମଧ୍ୟ ନାଥ ସାଧନାର ବିଶେଷକରି ଗୋରେଖନାଥଙ୍କ ଅପ୍ରତିହତ ପ୍ରଭାବ ଥିଲା । ଐତିହାସିକ ପ୍ରଭାତ ମୁଖାର୍ଜି ୮୪ ସିଦ୍ଧମାନଙ୍କ ମଧ୍ୟରୁ ଚୌରଙ୍ଗୀନାଥ, ଗୋରେକ୍ଷନାଥ ଓ ମତ୍ସ୍ୟେନ୍ଦ୍ରନାଥ ପ୍ରଭୃତିଙ୍କୁ ଓଡ଼ିଶାର ଅଧିବାସୀ ବୋଲି ପ୍ରମାଣିତ କରିଅଛନ୍ତି । ନାଥମାନେ ଥିଲେ ତାନ୍ତ୍ରିକ ଯୋଗୀ । ଯନ୍ତ୍ର, ମନ୍ତ୍ର, ତନ୍ତ୍ର ସାଧନା ସହିତ ଯୋଗସାଧନା ଥିଲା ସେମାନଙ୍କର ଧର୍ମାଚରଣର ମୂଳଭିତ୍ତି । ଅଚ୍ୟୁତାନନ୍ଦ 'ଗୁରୁଭକ୍ତିଗୀତା'ରେ ବୈଷ୍ଣବ ବୋଲି ଯାହାକୁ ଆଖ୍ୟା ପ୍ରଦାନ କରିଅଛନ୍ତି ତାହାର ସ୍ୱରୂପ ହେଲା—

"ମନ୍ତ୍ରଂ ଯନ୍ତ୍ରଂ ତନ୍ତ୍ରଂଚୈବ ଗୁପ୍ତା ଜ୍ୟୋତିରବାଡକଂ
ହଜ ସମାଧି ରସଗୁଣଂ ଚ ଯୋ ଜାନାତି ସବୈଷ୍ଣବଃ ।"

ଅଚ୍ୟୁତାନନ୍ଦଙ୍କର ଏ ବୈଷ୍ଣବ କଦାପି ନାଥ ପରଂପରାରୁ ଭିନ୍ନ ନୁହନ୍ତି । ସେ ନିଜେ ଗରୁଡ଼ଯନ୍ତ୍ର, ଶନିଯନ୍ତ୍ର ଓ ଚଉରାଶି ଯନ୍ତ୍ର ପ୍ରଭୃତି ଯନ୍ତ୍ରଗ୍ରନ୍ଥ ରଚନା କରିଛନ୍ତି । ପୁଣି ସେ ହ୍ଲୀଂ, କ୍ଲୀଂ, ଶ୍ଳୀଂ ପ୍ରଭୃତି ବୀଜମଂତ୍ରରେ ପ୍ରାର୍ଥନା ଦେଇଛନ୍ତି । ମଂତ୍ର, ଯଂତ୍ର,

ତଂଛ ବ୍ୟତୀତ ପଞ୍ଚସଖାଙ୍କ ସାହିତ୍ୟରେ ଯୋଗାଗ୍ଣରର ପ୍ରଭାବ ପରିଲକ୍ଷିତ ହୁଏ। ଅବଶ୍ୟ ନାଥ ଧର୍ମର ନବଚକ୍ର ସାଧନାକୁ ଏମାନେ ଷଡ଼ ଚକ୍ରରେ ପରିଣତ କରିଅଛନ୍ତି । ନାଥସାଧନାର ନବଚକ୍ର ହେଲେ ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ, ଆଜ୍ଞା, ପ୍ରଭାବ, ବ୍ରହ୍ମା, ରୁଦ୍ର ଓ ଇନ୍ଦ୍ରଚକ୍ର । କିନ୍ତୁ ପଞ୍ଚସଖା ଷଡ଼ଚକ୍ର ହେଲେ କୁଣ୍ଡଳୀନୀ, ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ବିଶୁଦ୍ଧାକ୍ଷ, ଆଜ୍ଞା ଓ ସହସ୍ରାର ଚକ୍ର । ଏତଦ୍ ବ୍ୟତୀତ ନାଥ ପରଂପରାର ଲଳନା, ରସନା, ଓ ଅବଧୂତିକା ପଞ୍ଚସଖାଙ୍କର ଇଅଁଳା, ପିଅଁଳା ଓ ସୁଷୁମ୍ନା ନାଡ଼ିରୂପେ ପରିଚିତ । ଏମାନେ ପୁଣି ଗଙ୍ଗା, ଯମୁନା ଓ ସରସ୍ୱତୀ । ଗୁରୁପାଦପଦ୍ମଧ୍ୟାନ, ଗୁର୍ବାଶୀର୍ବାଦ ସାଧନାପଥର ସହାୟକ ଥିବା ଉଭୟ ଗୋଷ୍ଠୀଦ୍ୱାରା ସମର୍ଥିତ । ଅଚ୍ୟୁତାନନ୍ଦଙ୍କ ବହୁ ବର୍ଣ୍ଣନାରେ ଏହା ପରିଲକ୍ଷିତ ହୁଏ । ତାଙ୍କର ନିତ୍ୟରସ,ବୃନ୍ଦାରାସ ଓ ଶୂନ୍ୟରାସ ପ୍ରଭୃତି ଗ୍ରନ୍ଥରେ ସହସ୍ରାରଚକ୍ର ଓ ଚକ୍ରସାଧନା ବିଷୟରେ ମଧ୍ୟ ବିଶେଷ ବିବରଣୀ ଲିପିବଦ୍ଧ ଅଛି । ସହସ୍ରାର ଚକ୍ରରେ ନିତ୍ୟ କୃଷ୍ଣ ଓ ନିତ୍ୟରାଧାଙ୍କର ଲୀଳା ହୋଇଥାଏ ! ଏହି ନିତ୍ୟରାଧା-କୃଷ୍ଣଙ୍କର ରୂପ, ଗୁଣ, ଆକାର, ପ୍ରକାର ଅନନ୍ୟ, ସେ ଶୂନ୍ୟରୂପୀ, ବ୍ରହ୍ମରୂପୀ, ଚିଦାନନ୍ଦରୂପୀ । ଏହି ସ୍ଥାନର ତୁଳନା ନାହିଁ । କୋଟି କୋଟି ଦୁର୍ଗା, ଶିବ, କୃଷ୍ଣ, ଏଠାରେ ପୂରି ରହିଛନ୍ତି, କୋଟି କୋଟି ଯୁଗ ମଧ୍ୟ ଏଠାରେ ବହିଯାଉଅଛି ।

ପଞ୍ଚସଖାଙ୍କ ଯୋଗାଗ୍ଣରରେ ଊର୍ମି, ଧୂର୍ମି, ଜ୍ୟୋତି, ଜ୍ୱାଲା, ବିନ୍ଦୁ ଅର୍ଦ୍ଧମାତ୍ରା, ପ୍ରଣବ,ଉଲଟ ବୃନ୍ଦାବନ ଓ ଉଲଟକମଳ ପ୍ରଭୃତିର ଚିତ୍ରମଧ୍ୟ ଏଥିରେ ରହିଅଛି । ଏହିସବୁ ବର୍ଣ୍ଣନାରୁ ପଞ୍ଚସଖାଙ୍କ ଉପରେ ନାଥପରଂପରାର ପ୍ରଭାବ ଅନୁମିତ ହୁଏ ।

ପଞ୍ଚସଖାଙ୍କୁ ଅନେକ ନିର୍ଗୁଣ ଶୂନ୍ୟସାଧକ କହିଥାନ୍ତି । କିନ୍ତୁ ସେମାନେ ଥିଲେ ଉଭୟ ନିର୍ଗୁଣ ଓ ସଗୁଣରସାଧକ । ଇଷ୍ଟଦେବ ଜଗନ୍ନାଥଙ୍କୁ ସେମାନେ ଶୂନ୍ୟ,ନିରାକାର ବା ନିର୍ବିକାର କହୁଥିଲା ବେଳେ ଦାରୁବ୍ରହ୍ମର ଉପାସନା କରନ୍ତି । ଜଗନ୍ନାଥଙ୍କର କୈବଲ୍ୟକୁ ସାକାର, ସଗୁଣବାଦୀଙ୍କ ପରି ମହାନିର୍ମାଲ୍ୟ ଜ୍ଞାନରେ ଗ୍ରହଣ କରନ୍ତି । ମୋଟ ଉପରେ ପଞ୍ଚସଖାଥିଲେ ସଗୁଣ ଓ ନିର୍ଗୁଣ ସାଧନାର ମଧୁର ସମନ୍ୱୟକାମୀ । 'ଗୁରୁଭକ୍ତିଗୀତା'ରେ ଅଚ୍ୟୁତାନନ୍ଦ କହନ୍ତି-''ଶୁଣ ଆହେ ଗୋପସୂତ ଭଗତିର କଥା, ସଗୁଣ ନିର୍ଗୁଣ ଦୁଇ ଯେବଣ ବ୍ୟବସ୍ଥା; ଦୁଇଯେ ଡେଣାରେ ପକ୍ଷୀ ଉଡ଼ିକରି ଯାଇ, ଦୁଇଯେ ଚକ୍ଷୁରେସେଇ ସଂସାରେ ଖେଳଇ ଏକ ଯେ ନଥିଲେ କଣା,ଦୁଇଗଲେ ଅନ୍ଧ; ଏଣୁକରି ସଗୁଣ ନିର୍ଗୁଣ ପାଶେ ବନ୍ଧା ।''

ପଞ୍ଚସଖାଙ୍କ ଧର୍ମଧାରଣାର ଶ୍ରେଷ୍ଠ ଦିଗ ହିସାବରେ ବୈଷ୍ଣବଧର୍ମର ସୂଚନା ମିଳି-ଥାଏ । ଚୈତନ୍ୟ ଓ ପ୍ରତାପରୁଦ୍ର ଥିଲେ ବୈଷ୍ଣବ । ରାଜାନୁଗତ୍ୟ ଲାଭକରିବାକୁ ଏ-ମାନେ ନିଜକୁ କେବଳ ବୈଷ୍ଣବ କହୁନଥିଲେ । ବିଷ୍ଣୁ ନାମସ୍ମରଣ,ଶ୍ରବଣ,ଗୁଣକୀର୍ତ୍ତନ,ପାଦ ସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ,ଆତ୍ମସମର୍ପଣ ପ୍ରଭୃତି ନବଧି ମାର୍ଗ ସହ ମନ୍ତ୍ର, ତନ୍ତ୍ର, ଯନ୍ତ୍ର, ଗୁପ୍ତ, ଜ୍ୟୋତି, ଅବାତ ହଂସ,ସମାଧି ଆଦିର ସମ୍ମିଶ୍ରଣ କରିବା ଏମାନଙ୍କ ସାଧନାର ମୂଳକଥା ଥିଲା । ସେମାନେ ଶୂନ୍ୟ ସାଧକ ଥାଇ ନାମତତ୍ତ୍ୱରେ ବିଶ୍ୱାସ କରୁ-ଥିଲେ । ହରିନାମ ବା କୃଷ୍ଣନାମକୁ କେବଳ ମୁକ୍ତିର ପଥବୋଲି ସେମାନେ କହୁଥିଲେ । ବୈଷ୍ଣବମାନଙ୍କ ନାମ କୀର୍ତ୍ତନ ପରି ନାମକୁ ସେମାନେ ମଧ୍ୟ ସମସ୍ତ ଜାଗତିକ ସତ୍ୟର ମୂଳବୋଲି ଭାବୁଥିଲେ । 'ଅଣାକାର ସଂହିତାରେ' ଅଚ୍ୟୁତାନନ୍ଦ ଏବିଷୟରେ କହିଛନ୍ତି—

ନାମକୁ ପାଇଲେ ରୂପ ଲୋଡ଼ା ନାହିଁ ସବୁରୂପ ସହିଁ ଠୂଳ,
ନାମକୁ ଚହ୍ନିଲେ ଧନ୍ଦା ଫିଟିଯିବ ସବୁ ନାମର ଯେ ମୂଳ ।"

କାଳର ଆବର୍ତ୍ତରୁ ମୁକ୍ତି ପାଇବାକୁ ହେଲେ ଗୋବିନ୍ଦନାମ ସ୍ମରଣ କରିବାର ଅପରି-ହାର୍ଯ୍ୟତା ବିଷୟରେ ଶିଶୁ ଅନନ୍ତ ଦାସ 'ହେତୁ ଉଦୟ ଭାଗବତ'ରେ କହିଅଛନ୍ତି –

"ବେଲହୁଁ ଗୋବିନ୍ଦ ସୁମର / ତୋ ପଛେ ଗୋଡ଼ାଉଛି କାଳ ।"

ଏତଦ୍ ବ୍ୟତୀତ ବୈଷ୍ଣବ ସୁଲଭ ଚରିତ, ଗାଥା ବା କଥା ଇତ୍ୟାଦିର ଶ୍ରବଣ ନିମିତ୍ତ ମଧ୍ୟ ପଂଞ୍ଚସଖା ଗୋଷ୍ଠୀ ସାଧାରଣ ମାନବ ସମାଜକୁ ଉପଦେଶ ଦେଇଛନ୍ତି । ହରି ଚରିତ ଶ୍ରବଣରେ କାଳ ନାଶ ହୁଏ ବୋଲି ଜଗନ୍ନାଥ 'ଭାଗବତ'ରେ କହିଛନ୍ତି—

"ହରିଚରିତ ଗୁଣଗାଥା, ଅମୃତର ସମସ୍ତ କଥା,
ଯାହା ଶୁଣନ୍ତେ ମୃତ୍ୟୁପାଶ,ସୂତାକ୍ଷଣକେ ହୋଇ ନାଶ ।'

(୩ । ୧୪ । ୧୨,୧୩)

ନାମତତ୍ତ୍ୱ ସହିତ ପଞ୍ଚସଖାଙ୍କ ସାହିତ୍ୟରେ ବୈଷ୍ଣବୀୟ କ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନାର ଚିହ୍ନ ମିଳେ । ନୀଳାଚଳ କ୍ଷେତ୍ରର ବର୍ଣ୍ଣନା ପଞ୍ଚସଖା ସାହିତ୍ୟରେ ଅନନ୍ୟ । ଏହାକୁ ସେମାନେ ନିତ୍ୟସ୍ଥଳ, ବିଷ୍ଣୁଙ୍କର ନିତ୍ୟଲୀଳାଭୂମି ପ୍ରଭୃତିରୂପେ ଏବଂ ଜଗନ୍ନାଥଙ୍କୁ ନିତ୍ୟ ବିଷ୍ଣୁରୂପେ ବର୍ଣ୍ଣନା କରିଛନ୍ତି । ବଳରାମଙ୍କ 'ଭାବସମୁଦ୍ର' "ଜଗମୋହନ ରାମାୟଣ" ଅଚ୍ୟୁତଙ୍କର

ବହୁ ଗ୍ରନ୍ଥ, ଯଶୋବନ୍ତଙ୍କ 'ପ୍ରେମଭକ୍ତି ବ୍ରହ୍ମଗୀତା' ପ୍ରଭୃତିରେ ନୀଳାଚଳଧାମର ବର୍ଣ୍ଣନା ଚମତ୍କାର । ଯଶୋବନ୍ତ ଦାସ ପ୍ରେମ ଭକ୍ତି ଗୀତାରେ କହନ୍ତି—

"ଦେଖ ଏ ନିତ୍ୟ ନୀଳାଚଳ, ସକଳ ତୀର୍ଥଙ୍କର ଆଳ;
ଗୋପ ମଥୁରା ବୃନ୍ଦାବନ, ଦ୍ୱାରକା ଆଦି ଯେତେ ସ୍ଥାନ;
ସକଳ ସ୍ନେହ ସ୍ଥାନେ ପାଇ, ଆବର କାଶୀ ମଧ୍ୟ ହୋଇ;
କୋଟିଏ ତୀର୍ଥ ଏ କ୍ଷେତ୍ରରେ, ମହିମା କହିଲେ ନସରେ ।"

( ପ୍ରା.ଚୀ. ପୃ. ୪୦ )

ବୈଷ୍ଣବଧର୍ମର ଉପାସ୍ୟଦେବତା କୃଷ୍ଣଙ୍କୁ ଏମାନେ ପୂଜା କରୁଥିଲେ । କିନ୍ତୁ ସେ କୃଷ୍ଣ ଗୌଡ଼ୀୟ ପ୍ରେମମାର୍ଗୀ ବୈଷ୍ଣବ ନୁହନ୍ତି । ଚୈତନ୍ୟ ଓ ଷଡ଼ଗୋସ୍ୱାମୀ ପ୍ରବର୍ତ୍ତିତ ବୈଷ୍ଣବ ମାର୍ଗ ହେଉଛି—

କୃଷ୍ଣପ୍ରେମାମୃତେନାତ୍ମା ଦେହଃ ପ୍ରେମାଶ୍ରୁ ବାରଭିଃ
ଯସ୍ୟାଭି ଷିଚ୍ୟତେ ନିତ୍ୟଂ ବୃଷ୍ଣ ଭକ୍ତ ସନତ୍ୟ ତୋ
କୃଷ୍ଣାନନ୍ଦେନ ପୂର୍ଣ୍ଣାତ୍ମା କୃଷ୍ଣାନନ୍ଦେନ ପୂର୍ଣ୍ଣଧୀଃ
କୃଷ୍ଣାନନ୍ଦମୟଂ ସର୍ବଂ ଯପଶ୍ୟତି ସ ବୈଷ୍ଣବଃ ।"

ପଞ୍ଚସଖା ଗୋଷ୍ଠୀ କିନ୍ତୁ ରାମ, କୃଷ୍ଣ, ଶିବ, ହରି ସମସ୍ତଙ୍କୁ ଦେଖୁଥିଲେ ଜଗନ୍ନାଥଙ୍କ ଠାରେ । ସେମାନେ ଜଗନ୍ନାଥଙ୍କୁ ଅରୂପ, ରୂପ, ଅଦ୍ୱୈତ, ଦ୍ୱୈତ ଓ ନିର୍ଗୁଣ, ସଗୁଣ ଆଦି ସମସ୍ତ ଆଧାରର ମିଶ୍ରଣ ବୋଲି ମନେ କରୁଥିଲେ । ଦେବଦୁର୍ଲଭ ପ୍ରଭୃତି କବି ବା ଷଡଗୋସ୍ୱାମୀ ପ୍ରଭୃତି ପ୍ରଚାରକମାନେ ଯେଉଁଭଳି ପରକୀୟା ଭାବରେ ସ୍ତ୍ରୀ ରୂପରେ ପୁରୁଷ କୃଷ୍ଣଙ୍କ ଉପାସନାକୁ ପ୍ରାଧାନ୍ୟ ଦେଉଥିଲେ ପଞ୍ଚସଖାଗୋଷ୍ଠୀ କିନ୍ତୁ ତାର ପୃଷ୍ଠ-ପୋଷକ ନଥିଲେ । ଆତ୍ମା ଓ ପରମାତ୍ମାର ଯୋଗକୁ ସେମାନେ ରାଧା-କୃଷ୍ଣର ମିଳନ ବୋଲି କହୁଥିଲେ ଓ ଏହାକୁ ବେଦାନ୍ତବାଣୀରେ ବ୍ୟାଖ୍ୟା କରୁଥିଲେ । 'ବେଦାନ୍ତସାର ଗୁପ୍ତଗୀତା'ରେ ବଳରାମ ଦାସ ଏ ସଂପର୍କରେ କହନ୍ତି—

"ଆତ୍ମାକୁ ପ୍ରତିଷ୍ଠା ବେଶ କରି । ଶ୍ରୀରାଧା ଅଙ୍ଗରେ ବିହରି
କୃଷ୍ଣେ ଆସ୍ୱାଦ ରସ ଦେଇ । ଏହାକୁ ପ୍ରେମ ଭକ୍ତି କହି ।"

କୃଷ୍ଣ ପ୍ରେମ ଭକ୍ତିର ସ୍ୱରୂପକୁ ଯେଉଁପରି ଭାବରେ ପଞ୍ଚସଖାମାନେ ଯୋଗ ପରଂପରାର ସାଧନ ପ୍ରଣାଳୀ ମଧ୍ୟଦେଇ ବ୍ୟାଖ୍ୟାନ କରିଯାଇଛନ୍ତି । ପରବର୍ତ୍ତୀ-

କାଳରେ ସମାଲୋଚକମାନଙ୍କ ଦୃଷ୍ଟିରେ ସେଥିପାଇଁ ସେମାନେ ହେଲେ ଉତ୍କଳୀୟ ବୈଷ୍ଣବଧର୍ମର ପ୍ରତିଷ୍ଠାତା ।

ପରିଶେଷରେ ଏତିକି କୁହାଯାଇପାରେ ଯେ ପଞ୍ଚସଖା ଗୋଷ୍ଠୀର ସାଧକମାନେ ଥିଲେ ସମନ୍ୱୟବାଦୀ । ଭାବ, ସାଧନା, ଦୈବୀଶକ୍ତିଲବ୍ଧ, ଗଭୀର ଆଧ୍ୟାତ୍ମିକତା, ବ୍ରହ୍ମାନୁଶୀଳନ ଓ ସର୍ବୋପରି ପ୍ରବଳ ପ୍ରବଣତାରୁ ପଞ୍ଚସଖାମାନେ ଯେଉଁ ପାରଗତା ହାସଲ କରିଥିଲେ ତାର ଫଳସ୍ୱରୂପ ଉତ୍କଳୀୟ ଧର୍ମପରଂପରାରେ ଏକ ମହାକଂଦଳର ମୀମାଂସା କରି ସମନ୍ୱୟ ରେଖା ଟାଣି ଦେଇଗଲେ । ତେଣୁ ଅଧ୍ୟାପକ ଚିତ୍ତରଞ୍ଜନ ଦାସଙ୍କ ମତରେ ପଞ୍ଚସଖାଙ୍କୁ ବୌଦ୍ଧବୈଷ୍ଣବ କିମ୍ବା ପ୍ରଚ୍ଛନ୍ନବୌଦ୍ଧ ବା ନିର୍ଗୁଣ ସାଧକ ଆଦି କୌଣସି ନିର୍ଦ୍ଦିଷ୍ଟ ମାର୍କା ବା ଛାପ ଦେଇହେବ ନାହିଁ । ପଞ୍ଚସଖା ସାହିତ୍ୟ ଥିଲା ଉତ୍ତାଳ ତରଙ୍ଗାକୁଳ ବିଶାଳବାରିଧି ଯହିଁରେ ବହୁଧର୍ମର ନଦୀ ଆତ୍ମଗୋପନ କରି ନିଜର ସତ୍ତା ପର୍ଯ୍ୟନ୍ତ ହରାଇ ବସିଥିଲେ ।



# ଓଡ଼ିଆ କାବ୍ୟ-କବିତାରେ ଅଳଙ୍କାର

• ଚିନ୍ମୟୀ ମହାପାତ୍ର

'ଇଷ୍ଟାର୍ଥବ୍ୟବଚ୍ଛିନ୍ନା ପଦାବଳୀ'କୁ କାବ୍ୟର ଶରୀର ବୋଲି କାବ୍ୟାଦର୍ଶରେ ଉଲ୍ଲେଖ କରାଯାଇଛି । କେବଳ ଭାରତୀୟ ଅଳଙ୍କାର-ଶାସ୍ତ୍ର ନୁହେଁ, ପାଶ୍ଚାତ୍ୟ କାବ୍ୟ ଦର୍ଶନ ମଧ୍ୟ ଉତ୍କୃଷ୍ଟ ଶବ୍ଦାବଳୀର ସୁନ୍ଦର ପ୍ରୟୋଗକୁହିଁ କବିତା ବୋଲି ସ୍ୱୀକାର କରେ । ସାହିତ୍ୟର ରୂପସଜ୍ଜା ବା ଅଙ୍ଗସଜ୍ଜା ଚିନ୍ତାଧାରାରୁ ହିଁ ଜନ୍ମନିଏ ଅଳଙ୍କାର । ପ୍ରାଚୀନ ଭାରତୀୟ ଆଳଙ୍କାରିକମାନେ କାବ୍ୟକୁ ଏକ ରମଣୀରୂପେ ପରିକଳ୍ପନା କରିଥିଲେ ଓ 'ନ କାନ୍ତମପି ନିର୍ଭୂଷଂ ବିଭାତି ବନିତାମୁଖମ୍' ପରି ବିନା ଅଳଙ୍କାରରେ କାବ୍ୟ ରମଣୀର ଅବୟବ ସୁଶୋଭିତ ହୋଇ ପାରେ ନାହିଁ ବୋଲି ଧାରଣା ପୋଷଣ କରୁଥିଲେ ।

ଅଳଙ୍କାରର ସଂଜ୍ଞା ନିରୂପଣ କରିବାକୁ ଯାଇ ବୈୟାକରଣ ମାନେ କହନ୍ତି, ''ଅଳଂ କରୋତି ଇତି ଅଳଙ୍କାରଃ ।'' ଅର୍ଥାତ୍ ଯାହା ଭୂଷିତ ବା ଶୋଭିତ କରେ, ତାହା ଅଳଙ୍କାର । ଭାମହ ଅଳଙ୍କାର-ସମ୍ପ୍ରଦାୟର ପ୍ରବର୍ତ୍ତକ । କିନ୍ତୁ ତାଙ୍କର ବହୁ ପୂର୍ବରୁ ଭରତଙ୍କ ସମୟରୁ ଏହି ସଂପ୍ରଦାୟର ସ୍ଥିତି ପରିଲକ୍ଷିତ ହୁଏ । ଭରତଙ୍କ 'ନାଟ୍ୟଶାସ୍ତ୍ର'ରେ ଉପମା, ରୂପକ, ଦୀପକ ଓ ଯମକ ଏହି ଚାରୋଟି ଅଳଙ୍କାରର ଉଲ୍ଲେଖ ମିଳେ । ଭାମହଙ୍କ 'କାବ୍ୟାଳଙ୍କାର' ଗ୍ରନ୍ଥ ଅଳଙ୍କାର ସମ୍ପର୍କୀୟ ସର୍ବପ୍ରଥମ ସୁବ୍ୟବସ୍ଥିତ, ସୁଚିନ୍ତିତ ଓ କ୍ରମବଦ୍ଧ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ମାତ୍ର ସେ ସ୍ୱୀୟ ଗ୍ରନ୍ଥରେ ମେଧାବିନ୍ ନାମକ ପୂର୍ବାଚାର୍ଯ୍ୟଙ୍କ ନାମ ଉଲ୍ଲେଖକରି ତାଙ୍କର ଉଚ୍ଛ୍ୱସିତ ପ୍ରଶଂସା ଗାନ କରିଛନ୍ତି । ସୁତରାଂ, ଭାମହଙ୍କ ପୂର୍ବରୁ ଅଳଙ୍କାର-ସଂପ୍ରଦାୟର ବିକାଶ ଆରମ୍ଭ ହୋଇଯାଇଥିଲା ଓ ମେଧାବିନ୍ ସେହି ବିକାଶ-ପଥର ଅନ୍ୟତମ ପଥ-ନିର୍ଦ୍ଦେଶକ ବୋଲି ମନେହୁଏ ।

ଭରତଙ୍କ ପରେ ଭର୍ତ୍ତୃହରି, ଭାମହ, ଦଣ୍ଡୀ, ଉଦ୍‌ଭଟ, ରୁଦ୍ରଟ, ମମ୍ମଟ, ରୁଯ୍ୟକ, ଜୟଦେବ, ଅପ୍ୟୟ ଦୀକ୍ଷିତ, ବିଶ୍ୱନାଥ କବିରାଜ ପ୍ରଭୃତି ଅଳଙ୍କାରର ସ୍ୱରୂପ ଓ ମହତ୍ତ୍ୱ ସଂପର୍କରେ ଉଲ୍ଲେଖ ଯୋଗ୍ୟ ଆଲୋଚନ କରିଛନ୍ତି ।

ସମସ୍ତ ଅଳଙ୍କାରକୁ ଦୁଇଭାଗରେ ବିଭକ୍ତ କରାଯାଇ ପାରେ ଯଥା— ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର । ଶବ୍ଦାଳଙ୍କାର ପ୍ରଧାନତଃ ଶବ୍ଦାଶ୍ରିତ । ଏହା ବାହ୍ୟ, ଶରୀର ସମ୍ବନ୍ଧୀ, ପ୍ରଥମ ପ୍ରତ୍ୟକ୍ଷରେ ଦୃଷ୍ଟ । ଅନୁପ୍ରାସ, ଯମକ, ପୁନରୁକ୍ତବଦାଭାସାଦି ଏହି ଶ୍ରେଣୀର । ଯେଉଁ ଅଳଙ୍କାର ଅର୍ଥର ଗୌରବ-ପ୍ରକାଶକ ଓ ସୌନ୍ଦର୍ଯ୍ୟ-ବର୍ଦ୍ଧକ, ତାହା ଅର୍ଥାଳଙ୍କାର । ଉପମା, ରୂପକ, ବ୍ୟତିରେକ, ବିଭାବନା, ବିଶେଷୋକ୍ତି, ଅପହ୍ନୁତି, ଦୃଷ୍ଟାନ୍ତ, ଉତ୍ପ୍ରେକ୍ଷାଦି ଅର୍ଥାଳଙ୍କାର ଶ୍ରେଣୀଭୁକ୍ତ । ଅର୍ଥ ଆତ୍ମାତୁଲ୍ୟ ଅଭ୍ୟନ୍ତର ବିଷୟୀ, ପଶ୍ଚାତ୍ ଅନୁଭବେଦ୍ୟ । ଓଡ଼ିଆ ସାହିତ୍ୟରେ ଏ ଉଭୟର ପ୍ରଚୁର ପ୍ରୟୋଗ ହୋଇଛି । ଏପ୍ରସଙ୍ଗରେ ଓଡ଼ିଆ ସାହିତ୍ୟର ଆଦି କାଳଠାରୁ ଅଧୁନିକ କାଳ ପର୍ଯ୍ୟନ୍ତ ଏକ ବିହଙ୍ଗମ ଦୃଷ୍ଟିପାତ କରାଯାଇ ପାରେ ।

ପ୍ରାକ୍ ସାରଳାକାଳୀନ କଳ୍ପିତ ସାହିତ୍ୟ ମୁଖ୍ୟତଃ ଧର୍ମ-ଦର୍ଶନ-ସଂବଳିତ ହେଲେ ହେଁ ସଂପୂର୍ଣ୍ଣ ନିରାଭରଣ ନୁହେଁ । ଏ ଦ୍ୱାର ସ୍ରଷ୍ଟାମାନେ ଗୋଟିଏ ଗୋଟିଏ ରୂପକୁ କବିତାର ଉପାଦାନ ରୂପେ ଗ୍ରହଣ କରିଛନ୍ତି । କୁଇପା, ଓ 'କାଆଁତରୁବର', 'କାହ୍ନୁପା' 'ଚଉଗନ୍ଦେହ', ଭଙ୍ଗ ତରଙ୍ଗ କ ସୋସଇ ସାଅର' ଇତ୍ୟାଦି ଉପମା ଓ ରୂପକର ପ୍ରୟୋଗ କରି ରସୋତ୍ତୀର୍ଣ୍ଣ ସାହିତ୍ୟର ସୃଷ୍ଟି କରି ଯାଇଛନ୍ତି । ନାଥ-ସାହିତ୍ୟ ପ୍ରାୟତଃ ନୀରସ, ତତ୍ତ୍ୱାଶ୍ରୟୀ । ତଥାପି ମରୁରେ ଓଏସିସ୍ ପରି ଏ ସାହିତ୍ୟରେ ସ୍ଥାନେ ସ୍ଥାନେ ଅଳଙ୍କୃତ ପଦ ଯୋଜନା ପରିଦୃଷ୍ଟ ହୁଏ ନାଥ-ଧର୍ମର ଆଦିଗ୍ରନ୍ଥରୂପେ ପରିଗୃହୀତ 'ଶିଶୁବେଦ'ରୁ ଦୃଷ୍ଟାନ୍ତ ଦିଆଯାଇପାରେ-"ଯେହ୍ନେକ ବନ ନ ହଲଇ ନୀର / ତେହ୍ନେକ ମନପବନ ଥିର ।" 'କଳସା ଚଉତିଶା'ରେ ସ୍ୱଭାବୋକ୍ତି ଅଳଙ୍କାରର ପ୍ରାଧାନ୍ୟ ରହିଛି । ତଥାପି ସ୍ଥଳବିଶେଷରେ "ଲାବଣ୍ୟଚନ୍ଦ୍ର ବଦନୀ ଲକ୍ଷ ଲକ୍ଷ୍ମୀଗୁଣ" ପରି ଉପମା ଗର୍ଭିକ ଅଳଙ୍କାରର ବିରଳ ବ୍ୟବହାର ମଧ୍ୟ ହୋଇଛି ; ଶୈବଗଦ୍ୟକାବ୍ୟ 'ରୁଦ୍ରସୁଧାନିଧି'ରେ ଆଳଙ୍କାରିକ-ପ୍ରାଚୁର୍ଯ୍ୟ କାହାରିକୁ ଅବିଦିତ ନୁହେଁ । ବିଭିନ୍ନ ଅଳଙ୍କାର-ଯୋଜନାରେ ଏହାକୁ ମଧ୍ୟଯୁଗୀୟ ରୀତି ସାହିତ୍ୟର ମୁଖବନ୍ଧ ରୂପେ ଗ୍ରହଣ କରାଯାଇପାରେ ।

ମାତ୍ର ଉତ୍କଳୀୟ-ସାରସ୍ୱତ-ବାଣୀପୀଠରେ ବାଣୀ-ଅର୍ଚ୍ଚନାକରି ଓଡ଼ିଆ ସାହିତ୍ୟର ଯଥାର୍ଥ ପ୍ରାଣ-ପ୍ରତିଷ୍ଠା କରିଥିଲେ ଶୂଦ୍ରମୁନି ସାରଳା ଦାସ । ତାଙ୍କର ବିପୁଳ-ସୃଷ୍ଟି-ସମ୍ଭାର ସରଳ, ଲୋକକଥିତ ଓଡ଼ିଆ ଭାଷାରେ ହିଁ ରଚିତ । ତତ୍‌କୃତ 'ମହାଭାରତ' ସଂସ୍କୃତ ମହାଭାରତର ବିଷୟବସ୍ତୁକୁ ଅନୁସରଣ କରିଥିଲେ ହେଁ ସ୍ୱରୂପତଃ ଏହା ସ୍ୱତନ୍ତ୍ର ମହା-

କାବ୍ୟ । ଏହି ବିଶାଳ ସୃଷ୍ଟି ମଧ୍ୟ ସୁଚିନ୍ତିତ ଅଳଙ୍କରଣ-ପ୍ରବୃତ୍ତିର ପ୍ରଭାବରୁ ମୁକ୍ତ ରହି-ପାରି ନାହିଁ । ଏଥିରେ ମଧ୍ୟ ସ୍ୱଭାବୋକ୍ତିର ପ୍ରାଧାନ୍ୟ ପରିଲକ୍ଷିତ ହୁଏ ତଥାପି ଅନେକ ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାରର ସମାବେଶ ଏହାର କାବ୍ୟିକ ମହିମା ବିସ୍ତାରରେ ସହାୟକ ହୋଇଛି । ଦୃଷ୍ଟାନ୍ତ ସ୍ୱରୂପ 'ମଧ୍ୟପର୍ବ'ରେ ଚନ୍ଦ୍ରାବତୀଙ୍କ ରୂପ-ବର୍ଣ୍ଣନାରୁ କେତୋଟି ପଙ୍କ୍ତି ଉଦ୍ଧାର କରାଯାଇପାରେ—"ଲଳିତ ଭ୍ରୂଲତା କି କାମ ଦେବର ଧନୁ" । ଏଠାରେ ଉତ୍ପ୍ରେକ୍ଷା ଅଳଙ୍କାରର ପ୍ରୟୋଗ ହୋଇଅଛି । ପ୍ରକୃତ ବସ୍ତୁରେ ଅପ୍ରକୃତ ବସ୍ତୁର 'ସମ୍ଭାବନା କରାଗଲେ ଉତ୍ପ୍ରେକ୍ଷା ଅଳଙ୍କାର ହୁଏ । ଏଠାରେ ପ୍ରକୃତ ବସ୍ତୁ 'ଭ୍ରୂଲତା'କୁ ଅପ୍ରକୃତ ବସ୍ତୁ 'କାମଦେବରଧନୁ' ବୋଲି ସମ୍ଭାବନା କରା-ଯାଇଛି । ଉତ୍ପ୍ରେକ୍ଷାବାଚକ ଶବ୍ଦ 'କି'ର ଉଲ୍ଲେଖ ଥିବାରୁ ଏହା ବାଚ୍ୟୋତ୍ପ୍ରେକ୍ଷା/ ନାସା ପଟାନ୍ତର କଣସୁ ଘଟନ ଶୋଭା / ତିଳ ଫୁଲ ପଟାନ୍ତର କରନ୍ତି ମୁହିଁ ଅବା / ଅଳ୍ପ ଦିନେ ସେ ପୃଷ୍ଠ ଭୂମିରେ ଲୋଟଇ / ତେଣୁକରି ପଟାନ୍ତର ସେ ପୁଷ୍ପ ନଘଟଇ ।" ଏଠାରେ ପ୍ରତୀପ ଅଳଙ୍କାରର ବ୍ୟବହାର ହୋଇଅଛି । ସାରଳାଙ୍କ ଉପମା-ଉପମେୟର ସଂଯତ ବିନ୍ୟାସ ଓ ନୂତନ ରୂପ-କଳ୍ପନାର କାବ୍ୟିକ କମନୀୟତା ଅନନ୍ୟ-ସାଧାରଣ ।

ସାରଳାଙ୍କ ପରବର୍ତ୍ତୀକାଳରେ ଏକ ଉଲ୍ଲେଖଯୋଗ୍ୟ ରଚନା ପରମ୍ପରାର ପ୍ରତି-ନିଧି ହେଉଛନ୍ତି ବୈଷ୍ଣବ ପଞ୍ଚସଖା— ଜଗନ୍ନାଥ, ବଳରାମ, ଅନନ୍ତ, ଅଚ୍ୟୁତ ଓ ଯଶୋବନ୍ତ । ଏମାନେ ଯୋଗ-ମିଶ୍ରିତ ଭକ୍ତି ମାର୍ଗର ସାଧକ ଓ ମୁଖ୍ୟତଃ ସେହି ମାର୍ଗର ତତ୍ତ୍ୱକୁ ରଚନାରେ ରୂପାୟିତ କରିଛନ୍ତି । ମାତ୍ର ସେମାନଙ୍କର ସୃଷ୍ଟି ସଂପଦ କେବଳ ଦର୍ଶନର ନୀରସ ବ୍ୟାଖ୍ୟାନ ମାତ୍ର ନୁହେଁ; ହଠଯୋଗ, ପିଣ୍ଡବ୍ରହ୍ମାଣ୍ଡ ବାଦ ଓ ଭାଗବତ ତତ୍ତ୍ୱର ପରିବେଷଣକୁ ମଧ୍ୟ ସେମାନେ ସରସ ସାହିତ୍ୟରେ ପରିଣତ କରିପାରିଛନ୍ତି । କଳ୍ପନା-ପ୍ରବଣତା, ବର୍ଣ୍ଣନା-ବୈଚିତ୍ର ଆଖ୍ୟାୟିକା-ଯୋଜନା ସଙ୍ଗେ ସଙ୍ଗେ ଉପମାଦି ଅର୍ଥାଲଙ୍କାରର ସଂଯତ ବିନ୍ୟାସ ଏ କ୍ଷେତ୍ରରେ ଅନ୍ୟତମ ସହାୟକ ହୋଇଛି । ବଳରାମଙ୍କ 'ଦାଣ୍ଡି ରାମାୟଣ,, ଜଗନ୍ନାଥଙ୍କ 'ଶ୍ରୀମଦ୍ଭାଗବତ' ଓ ଯଶୋବନ୍ତଙ୍କ ଗୀତଗୋବିନ୍ଦଚନ୍ଦ୍ର,ରେ ଏହି ପ୍ରବୃତ୍ତି ଅଧିକ ମାତ୍ରାରେ ପ୍ରକାଶିତ । 'ଦାଣ୍ଡି ରାମାୟଣ'ରେ ପ୍ରଯୁକ୍ତ ଅଳଙ୍କାର ଗୁଡ଼ିକ ପରବର୍ତ୍ତୀକାଳ ସାହିତ୍ୟର ପ୍ରଭାବ ପରି ପ୍ରତୀତ ହୁଅନ୍ତି । ଯେପରିକି, "ବଇଦେହୀ କପାଳରେ ଚିତା ଦେଲେ ନେଇ / ଚନ୍ଦ୍ରମା ଉପରେ କି ଅରୁଣ ଶୋଭା ପାଇ ।"

ଜଗନ୍ନାଥଙ୍କ 'ଭାଗବତ'ରେ ତତ୍ତ୍ୱର ବ୍ୟାଖ୍ୟାକୁ ସହଜ ବୋଧ କରିବାନିମିତ୍ତ ବହୁ

ଉପମାର ପ୍ରୟୋଗ ହୋଇଛି । ତାଙ୍କର ଉପମା-ଯୋଜନା ଅଧିକତର ବାସ୍ତବ, ଜୀବନ୍ତ ଓ ମୌଳିକ—"ଜୀବନ ଧନୁ ଧନ କ୍ଷୀଣ / ଦରିଦ୍ର କୁଷ୍ଠମ୍ଭ ଯେସନ / X X X / ଛଉଏ ଛଅ ପ୍ରାୟେ ହୋଇ / ସ୍ୱକାଙ୍କ ପ୍ରାପ୍ତ ହସେ ମହି ।" (ଦଶମସ୍କନ୍ଧ)

ଓଡ଼ିଆ ସାହିତ୍ୟର ଆଦିକାଳରୁ ସାହିତ୍ୟରେ ଅଳଙ୍କାରର ବ୍ୟବହାର ପରିଲକ୍ଷିତ ହୋଇଥାଏ ସତ୍ୟ, ମାତ୍ର ସାହିତ୍ୟ ଅଳଙ୍କରଣର ଶୀର୍ଷସୀମାରେ ଉପନୀତ ହୁଏ ରୀତି-ସାହିତ୍ୟରେ । ରୀତିକାବ୍ୟର ସୃଷ୍ଟି-ପ୍ରେରଣା ମୂଳରେ ନିହିତ ସଂସ୍କୃତ କାବ୍ୟ-ପରମ୍ପରା ଏ ପ୍ରବୃତ୍ତିକୁ ଉତ୍ସାହିତ କରିଛି । ଏ ଯୁଗରେ ଅଳଙ୍କରଣ କାବ୍ୟ-ରଚନାର ଏକମୁଖୀ ଆବଶ୍ୟକତା ରୂପେ ବିବେଚିତ ହୋଇଥିଲା । ରୀତିକାବ୍ୟର ନାୟିକାପରି ରୀତିକାବ୍ୟ-ନାୟିକା ଅଳଙ୍କାର-ସମନ୍ୱିତା । ରୀତିକାବ୍ୟ-ପରମ୍ପରାର ସର୍ବଶ୍ରେଷ୍ଠ କବିବର ଉପେନ୍ଦ୍ର ଭଞ୍ଜ ପ୍ରସିଦ୍ଧ ସଂସ୍କୃତ କବିମାନଙ୍କ ଆଦର୍ଶ ଅନୁସରଣ କରି ସେମାନଙ୍କ ବ୍ୟବହୃତ ବିଭିନ୍ନ ଅଳଙ୍କାର ଓଡ଼ିଆ ସାହିତ୍ୟରେ କୃତିତ୍ୱର ସହ ବ୍ୟବହାର କରିଛନ୍ତି । ଶବଦ-ସମୁଦ୍ର ପାର ହୋଇଥିବା ଉପେନ୍ଦ୍ର କେବଳ ଯେ ଲୋମ ବିଲୋମ, ଅନୁପ୍ରାସ, ଯମକ, ଏକାକ୍ଷର, ଦ୍ୱିଅକ୍ଷର ପ୍ରଭୃତି ଶବ୍ଦାଳଙ୍କାର ବା ଗଦାବନ୍ଧ, ପଦ୍ମବନ୍ଧ, ନାଗବନ୍ଧ ଇତ୍ୟାଦି ଚିତ୍ରାଳଙ୍କାର ପ୍ରୟୋଗ କରି ଶବ୍ଦ-ବୈଦଗ୍ଧ୍ୟର ପରିଚୟ ଦେଇଛନ୍ତି, ତାହା ନୁହେଁ; ବହୁ ମନୋରମ ଉପମା ଗର୍ଭିତ ଅଳଙ୍କାର-ଯୋଗରେ 'ଉପମା ଭଞ୍ଜସ୍ୟାରସ୍ୟ' ଉକ୍ତିକୁ ମଧ୍ୟ ସାର୍ଥକ କରିଛନ୍ତି । ଉପେନ୍ଦ୍ରଙ୍କ ଉପମା ସମସ୍ତ ସମୟରେ ଦେହର ସୀମା ଅତିକ୍ରମ କରି ଦେହାତୀତ ସ୍ତରକୁ ଉନ୍ନୀତ ହୋଇଯାଇଛି । ଲାବଣ୍ୟବତୀର ଚିକ୍କଣ କେଶକୁ ଦେଖି କବି ମନରେ ଦେହୋତ୍ତର ଉପମାନର ଧାରଣାସୃଷ୍ଟି ହୋଇଛି—"ଚରମେ ପଞ୍ଚ ମନୋରମ ଦିଶେ/ ଧଧେ କି ନଦୀ ଧନ ଦୁଇପାଶେ/ ପ୍ରଭାକୁଛି ଦେଖି ମୁଖଚନ୍ଦ୍ରର/ ପଳାଇ ଯାଇଛି କି ଅନ୍ଧକାର ।" (ଲାବଣ୍ୟବତୀ)

ନୈଷଧ, ବାଣ, ସୁବନ୍ଧୁ ଇତ୍ୟାଦିଙ୍କ ଅଳଙ୍କାରିକ କାବ୍ୟ ସରଣୀର ସୁଯୋଗ୍ୟ ଉତ୍ତରସାଧକ ଉପେନ୍ଦ୍ର । ତଦୀୟ କାବ୍ୟ-ରମଣୀ ବହୁ ବିଚିତ୍ର ଅଳଂକାରରେ ପ୍ରାୟତଃ ଆବୃତା । ତେଣୁ ସେ ସ୍ପଷ୍ଟ ସୂଚାଇ ଦେଇଚନ୍ତି—"ଯେହୁ ଜାଣେ ଅଳଂକାର ଲକ୍ଷଣ;/ ସେହି କରୁ ଏ ଛାନ୍ଦ ବିବେଚନ ।"

କେବଳ ଉପେନ୍ଦ୍ରଙ୍କ ସୃଷ୍ଟି ନୁହେଁ, କଲ୍ଲୋଳ କବି ଦୀନକୃଷ୍ଣଙ୍କ କବିତା-ସୁନ୍ଦରୀ ମଧ୍ୟ ବହୁ ଅଳଙ୍କାର ବିଭୂଷିତା । ବିଦଗ୍ଧ କବି ଅଭିମନ୍ୟୁ ସ୍ୱୀୟ କାବ୍ୟକୁ 'ଯମକାଦି ଚିତ୍ରକାବ୍ୟ ପ୍ରବନ୍ଧେ ପ୍ରବନ୍ଧ' କରିବାର ସଂକଳ୍ପ ନେଇଛଂନ୍ତି ଓ ସଂକଳ୍ପ-ପାଳନରେ ସଫଳ ହୋଇଛଂନ୍ତି ମଧ୍ୟ । ବ୍ରଜନାଥ, ବଳଦେବ ପ୍ରମୁଖ ପରବର୍ତ୍ତୀ ଶ୍ରେଷ୍ଠକବିଗଣ ମଧ୍ୟ ପରମ୍ପରାର ଅନୁବର୍ତ୍ତନ କରି ନିଜ ନିଜ କାବ୍ୟାଙ୍ଗନା ମାନଙ୍କୁ ସମୁଚିତ ଅଳଙ୍କାର-ଯୁକ୍ତା କରିଛଂନ୍ତି ।

ମାତ୍ର, ଅଳଙ୍କରଣ ସଂପୂର୍ଣ୍ଣ ପ୍ରୟାସ-ଲବ୍ଧ ନୁହେଁ । ଭାବର ସୂକ୍ଷ୍ମତାକୁ ଭାଷାର ସ୍ଥୂଳରୂପ ମାଧ୍ୟମରେ ପ୍ରକାଶ କରିବା ସମୟରେ ଅନେକତ୍ର କବିର ବିନା ପ୍ରୟାସରେ ମଧ୍ୟ ରଚନା ଅଳଙ୍କୃତ ହୋଇଥାଏ । ତେଣୁ ଆଧୁନିକ କବି ତଥା ସମାଲୋଚକବର୍ଗ ଅଳଙ୍କରଣ, ବିଶେଷତଃ ଶବ୍ଦାଳଙ୍କାର ପ୍ରୟୋଗର ବିରୋଧୀ ହେଲେ ହେଁ କେତେକତ୍ର ଆଧୁନିକ କବିତାରୁ ମଧ୍ୟ ଅଳଙ୍କାରର ଦୃଷ୍ଟାନ୍ତ ମିଳିଥାଏ ।

କବିବର ରାଧାନାଥଙ୍କ କାବ୍ୟାବଳୀ ସୁନ୍ଦର ଅଳଙ୍କାର ରାଜିର ସମାବେଶରେ ଅଧିକତର ବୈଚିତ୍ର୍ୟମଣ୍ଡିତ । ତାଙ୍କର ଉପମା-ଯୋଜନାରେ ଚମତ୍କାରିତା ପରିଲକ୍ଷଣୀୟ "ଗୋଟିଏ ପଲ୍ଲବ ହଲୁନାହିଁ ଡ଼ାଳେ/ ନିଶ୍ଚଳ ପାଦପପନ୍ତି/ ଊର୍ଦ୍ଧ୍ୱବାହୁ ଧ୍ୟାନେ ମଗ୍ନ ଯତି ଯଥା/ ଉଭା ହୋଇ ବିରାଜନ୍ତି । (ଉପମା) ଜ୍ୟୋତିର୍ମୟ ବପୁ ଜକ ଜକ ହୋଇ/ ଊର୍ଦ୍ଧ୍ୱେ ଜଳୁଛନ୍ତି ତାରା/ ସାଧୁ ଆତ୍ମା ଅବା ଅନନ୍ତେ ବିହରେ/ମର୍ତ୍ତ୍ୟେ ତେଜି ଦେହ-କାରା ।" (ଉତ୍ପ୍ରେକ୍ଷା)—ପାର୍ବତୀ । ପୁଣି ତାଙ୍କର ବ୍ୟଙ୍ଗ-ରସାଣିତ ଖଣ୍ଡକାବ୍ୟ 'ଦରବାର'ରେ ବ୍ୟାଜସ୍ତୁତି ଅଳଙ୍କାରର ପ୍ରୟୋଗ ପ୍ରଚୁର ।

ରାଧାନାଥଙ୍କ ସମସାମୟିକ ସ୍ୱଭାବକବି ଗଙ୍ଗାଧର ମଧ୍ୟ କାବ୍ୟରେ ବହୁ ଅଳଙ୍କାର ପ୍ରୟୋଗ କରିଛନ୍ତି । ଉପମା, ରୂପକାଦି ଅର୍ଥାଲଙ୍କାରର ଦୃଷ୍ଟାନ୍ତ ତାଙ୍କ ସୃଷ୍ଟିର ଛନ୍ଦେ ଛନ୍ଦେ ପରିସ୍ଫୁଟ; ବକ୍ରୋକ୍ତି, ଶ୍ଳେଷ, ଯମକାଦି ଶବ୍ଦାଶ୍ରିତ ଅଳଙ୍କାର ମଧ୍ୟ ଦୁର୍ଲ୍ଲଭ ନୁହେଁ । 'ପ୍ରଣୟ ବଲ୍ଲରୀ'ରେ ଦୁଷ୍ମନ୍ତ ଓ ଶକୁନ୍ତଳାଙ୍କ କଥୋପକଥନରେ ବକ୍ରୋକ୍ତି-ବିନ୍ୟାସ ଅତ୍ୟନ୍ତ ହୃଦ୍ୟ । "ଉଠି ଯେସନ୍ତେ ଜଳଧାର ପଶ୍ଚିମ ଆଶାରେ/ ଅସ୍ତାଚଳ ପ୍ଲାବିଦିଏ ଅଜସ୍ର ଆଶାରେ ।" (ତପସ୍ୱିନୀ) ଉକ୍ତିଟିରେ ପ୍ରାନ୍ତ ଯମକ ଅଳଙ୍କାରର ପ୍ରୟୋଗ ହୋଇଛି ।

ଏଣୁ ଆଧୁନିକ ଯୁଗର ପ୍ରାରମ୍ଭ ମାତ୍ର, ଅତ୍ୟାଧୁନିକ କାଳର କବିତାରେ ମଧ୍ୟ ଉପମା, ରୂପକାଦି ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବିବିଧ ଅଳଙ୍କାରର ପ୍ରୟୋଗ ପରିଲକ୍ଷିତ ହୁଏ । ଉଦାହରଣ ସ୍ୱରୂପ—

"ନୀଳକଣ୍ଠ ହୃଦ ମୋର ! କହିବୁ କି ଆସେ ମେବେ ଝଡ଼,/ କମ୍ପା ଜାଗେ ପ୍ରାଣେ ଏତେ ଭାଙ୍ଗିବାର ବାସନା ନିବିଡ଼ ।/ଭାଙ୍ଗିବାର ଦକ୍ଷ ଯଜ୍ଞ......ବ୍ୟଭିଚାରୀ ବ୍ୟସନ-ପ୍ରାସାଦ !/ଭରିବାର ପ୍ରତି ପାଦେ ସାମାନ୍ୟେ ଆହି ପ୍ରୀତିର ପ୍ରସାଦ !/ସତ୍ୟତାର ସତୀ ବହି ସ୍କନ୍ଧ ଦେଶେ, ହେ ମୋର ହୃଦୟ ! / ଭ୍ରମିବାକୁ ଇଚ୍ଛା ତୋର ଆଜୀବନ ଏ ଭୁବନମୟ ।" (ହେ ମୋର ହୃଦୟ—ଦୁର୍ଗାଚରଣ ପରିଡ଼ା)

ଏଠାରେ 'ହୃଦୟ'ଠାରେ 'ନୀଳକଣ୍ଠ'ର ଆରୋପ, 'ବ୍ୟଭିଚାରୀ ବ୍ୟସନ-ପ୍ରାସାଦ'ରେ 'ଦକ୍ଷଯଜ୍ଞ' ଓ 'ସତ୍ୟତା'ଠାରେ 'ସତୀ'ର ଆରୋପର କାରଣ ହୋଇଛି । ତେଣୁ ଏହା ପରମ୍ପରିତ ରୂପକ ଅଳଙ୍କାରର ଦୃଷ୍ଟାନ୍ତ ।

"ବକ୍ଷେ ପୂରାଇ ପାଷାଣ କି କେବେ ବୁଝେ ଝରଣାର ବ୍ୟଥା
ମିଶ୍ର ଗାଡ଼ିର ଡ୍ରାଇଭର୍ କାହୁଁ ବୁଝିବ ମୋ ମନ କଥା ।"
(ବାହୁଡ଼ା—ଦୁର୍ଗାମାଧବ ମିଶ୍ର)

ପାଷାଣ ଝରଣାର ବ୍ୟଥା ନବୁଝିବା ଏକ ସାମାନ୍ୟ ବା ସାଧାରଣ ସତ୍ୟ । ଏହାଦ୍ୱାରା 'ମିଶ୍ର ଗାଡ଼ିର୍ ଡ୍ରାଇଭର' କବିଙ୍କ ମନକଥା ନବୁଝିବା ବିଶେଷ ସତ୍ୟଟି ସମର୍ଥିତ ହେବାରୁ ଅର୍ଥାନ୍ତରନ୍ୟାସ ଅଳଙ୍କାର ହୋଇଛି ।

"କରୁଛ କି ଏବା ତୁମେ ବସି / ପୃଥିବୀର ଅମୂଲ୍ୟ ପରିମାପ, / ଜନନେ ଓ ମରଣେ ତାଲିକା,/ହେ ସ୍ଥବିର କୁଳବୃକ୍ଷ ପେଗୁ?/ଦେଖୁଥିବ ନିଶ୍ଚେ ତୁମେ ବସି/ଏ ମର୍ତ୍ତ୍ୟର ଜ୍ଞାନପାପୀ କ୍ରୀଡ଼ା,/ହତ୍ୟା, ମୃତ୍ୟୁ, ଦୁର୍ଗ ପ୍ରଜନନ/ଚିରନ୍ତନ ମାନବ ଯାତ୍ରୀର ।/ପରୁ ସଡ଼ା ଆଉଁଷିଣା ମନୁଷ୍ୟର ଶବ/ପରୁ ଶବ ଶ୍ୱାନ-ଶୃଗାଳର/ଉଦ୍ଭିଦ ଓ ନକ୍ଷତ୍ର ଲୋକର/ଜନ୍ମ-ମୃତ୍ୟୁ ଲୀଳା-ପ୍ରହେଳିକା/ଦେଖୁଥିବ ନିର୍ବିକାରେ ବସି ।"
(ପେଗୁ— ଚନ୍ଦ୍ରାମଣି ବେହେରା)

ଏଠାରେ ପେଗୁ ପ୍ରତି 'ସ୍ଥବିର' ଓ 'କୁଳବୃକ୍ଷ ବିଶେଷଣ ଉଦ୍ଦେଶ୍ୟମୂଳକ ଭାବେ ପ୍ରୟୋଗ କରାଯାଇଛି । ତେଣୁ ପରିକର ଅଳଙ୍କାର ହେଲା ।

ଶବ୍ଦାଳଙ୍କାରର ଦୃଷ୍ଟାନ୍ତ ମଧ୍ୟ ଆଧୁନିକ କବିତାରେ ଅଲଭ୍ୟ ନୁହେଁ । ଯମକ, ଏକାକ୍ଷର ପରି କ୍ଲିଷ୍ଟ ଶବ୍ଦାଳଙ୍କାରର ବ୍ୟବହାର ଆଧୁନିକ ଯୁଗରେ ଅବଶ୍ୟ ପରିହୃତ ହୋଇଛି । ମାତ୍ର କବିତାକୁ ଛନ୍ଦମୟ, ଉଦ୍ଦୀପନାମୟୀ କରିବାପାଇଁ ଅନୁପ୍ରାସ ପରି ସରଳ ଶବ୍ଦାଳଙ୍କାରର ବ୍ୟବହାର ଏବେ ମଧ୍ୟ ହେଉଛି ।

ଆମେ ଯେଉଁମାନେ ନଷ୍ଟନୀଡ଼ର ଭ୍ରଷ୍ଟଦଳ/ବିହଙ୍ଗମ—/ରୁକ୍ଷ ମେଘର ଦକ୍ଷ ଦ୍ୱାରେ ପକ୍ଷ ପିଟି ସୃଷ୍ଟି କରୁଛୁ ଦୃଷ୍ଟି ଝଡ଼ /ଭୂମ ମର୍ମର ଦ୍ୱର୍ମ୍ୟ ତଳର ବର୍ମଗ୍ରନ୍ତି/ପାଶୋଣ ଭୂମରେ ମନ୍ତ୍ର ଆଖିର ଇସାର ଧାର/ବର୍ଷ । ତାହଲେ ଗ୍ରସ୍ତାକରେ/ଆମେ ଯେଉଁମାନେ କାଁଷ୍ଟ୍ରକରୁଁ ଏ ରାଜିସାରା । (ଆମେ ଯେଉଁମାନେ—ମନୋଜଦାସ) ଏଠାରେ ବୃତ୍ତ୍ୟ-ନୁପ୍ରାସ ଅଳଙ୍କାର ପ୍ରଯୁକ୍ତ । କବି ରାଧାମୋହନ ଗଡ଼ନାୟକଙ୍କ କବିତାରେ ଶବ୍ଦାଳ-ଙ୍କାରର ବହୁଳ ବ୍ୟବହାର ହୋଇଛି ।

"କବିତା ବନିତା, କବି ତା' ପିତା"—କବି-ପିତା ତା'ର ମାନସ-ସନ୍ତାନ କାବ୍ୟ ସୁନ୍ଦରୀକୁ କେବେହେଲେ ବିଧବା ରୂପରେ ଦେଖିବାକୁ ଚାହେଁ ନାହିଁ । ସେ ଚାହେଁ ତାହାକୁ ସାଳଙ୍କାରା, ଲୀଳା-ବିଳୋଳା, ଲଳିତ-ଲାବଣ୍ୟଶୀଳା କରି ତୋଳିବାକୁ । ସ୍ରଷ୍ଟା ପ୍ରାଣର ସୌନ୍ଦର୍ଯ୍ୟ-ବିଳାସ ଏହି ଅଳଙ୍କରଣ ପ୍ରବୃତ୍ତି ମଧ୍ୟରେ ପ୍ରତିଫଳିତ । କବୀନ୍ଦ୍ର ରବୀନ୍ଦ୍ରଙ୍କ ମତରେ କାବ୍ୟରେ ଅଳଙ୍କାର ଛବି ସ୍ୱରୂପ । ସେ କହନ୍ତି, ଭାଷା ଯାହା ପ୍ରକାଶ କରି ନପାରେ, ରେଖା ତାହା ରୂପ ଦିଏ । ଉପମା ଓ ରୂପକ ମାଧ୍ୟମରେ ଭାବ ସମୂହ ପ୍ରତ୍ୟକ୍ଷ ହୁଏ । କେବଳ ପ୍ରାଚ୍ୟ କାବ୍ୟ-ଦର୍ଶନ ଯେ ଅଳଙ୍କାରକୁ ସ୍ୱାଗତ ଜଣାଏ, ତାହା ନୁହେଁ; ଅନେକ ପାଶ୍ଚାତ୍ତ୍ୟ କାବ୍ୟଶାସ୍ତ୍ରବିତ୍ ମଧ୍ୟ ଅନୁରୂପ ମତ ପ୍ରଦାନ କରିଥାନ୍ତି ।

କାବ୍ୟରେ ଅଳଙ୍କାର ଭାବ ଓ ଭାଷାର ଭୂଷଣ । ଏହା ଭାବ ଓଅଭିବ୍ୟକ୍ତି ଉଭୟକୁ ଅଧିକତର ସୌନ୍ଦର୍ଯ୍ୟାନ୍ୱିତ କରିଥାଏ । ଅଳଙ୍କାରକୁ କାବ୍ୟର ଆତ୍ମା ରୂପେ ଗ୍ରହଣ କରିବା ଭ୍ରାମକ ହୋଇପାରେ ; ମାତ୍ର ନିରଳଙ୍କାର କାବ୍ୟର ଉତ୍କର୍ଷ ନିଶ୍ଚିତ ଭାବରେ ଅପକୃଷ୍ଟ ହୋଇଥାଏ । ପାଠକକୁ କାବ୍ୟ ପ୍ରତି ଆକୃଷ୍ଟ କରିବା ନିମିତ୍ତ ସର୍ବ ପ୍ରଥମେ ସୁସଜ୍ଜିତ ବାହ୍ୟ ରୂପର ଆବଶ୍ୟକତା ରହିଛି । କାବ୍ୟର ଅନ୍ତର୍ନିହିତ ରସାଦିର ଉପ-ଲବ୍ଧି ପୂର୍ବରୁ ପ୍ରଥମେ ପାଠକ ବା ଉପଭୋକ୍ତା କାବ୍ୟର ବାହ୍ୟ ରୂପକୁ ହିଁ ପ୍ରସନ୍ନ ଚିତ୍ତରେ ଉପଭୋଗ କରିବା ପ୍ରୟୋଜନ । ଅନ୍ତଃସଲିଳା ଫଲ୍‌ଗୁ ଅପେକ୍ଷା ବହିଃସ୍ରୋତା ଜାହ୍ନବୀର ଧାରା ଜନ ମନକୁ ଆକୃଷ୍ଟ କରିଥାଏ । ପ୍ରଥମେ ବାହ୍ୟ ସୌନ୍ଦର୍ଯ୍ୟ ହିଁ ପାଠକକୁ କାବ୍ୟ ଅଧ୍ୟୟନ କରିବାର ପ୍ରେରଣା ପ୍ରଦାନ କରିଥାଏ । ତତ୍‌ପରେ ପାଠକ ରସ ଓ ଗୁଣର ଉପଭୋଗ କରେ । ସୁତରାଂ, ରସ ଓ ଗୁଣରେ ସମ୍ୟକ୍ ଅବବୋଧ ନିମିତ୍ତ ଅଳଙ୍କାରର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସହୃଦୟର ହୃଦୟରେ ପ୍ରଭାବ ବିସ୍ତାର ପାଇଁ କେବଳ ଆବେଗ ବା ଭାବ ଯଥେଷ୍ଟ ନୁହେଁ । ଉପମା, ରୂପକାଦି ବିବିଧ ଅଳଙ୍କାରର ସଂଯୋଗ କବିତାକୁ ମର୍ମସ୍ପର୍ଶୀ କରିଥାଏ । କାବ୍ୟର ଭାବସଜ୍ଜା ଓ କମନୀୟ ରୂପଶ୍ରୀ ସମ୍ପାଦନ କରି ଏହାର ଚମତ୍କାରିତା ସାଧନ କରିବାରେ ଅଳଙ୍କାରର ଉପାଦେୟତା ଅନସ୍ୱୀକାର୍ଯ୍ୟ ।

—

# "ରୀତିଯୁଗୀୟ କାବ୍ୟାଦର୍ଶ"

● ବେଣୁଧର ଦାସ

---

"ରୀଙ୍" ଧାତୁରେ 'କ୍ତିନ୍' ପ୍ରତ୍ୟୟ ଯୁକ୍ତ ହେଲେ 'ରୀତି' ଶବ୍ଦର ଉତ୍ପତ୍ତି ହୁଏ। ଏହାର ଅର୍ଥ ହେଉଛି ମାର୍ଗ, ଗତି ଓ ପଦ୍ଧତି। ସଂସ୍କୃତ ସାହିତ୍ୟରେ ଦଣ୍ଡୀ ଓ ବାମନ ରୀତିବାଦର ଆଦର୍ଶ ପ୍ରତିଷ୍ଠା କରି ଏହାକୁ 'ବିଶିଷ୍ଟ ପଦ ରଚନା ପଦ୍ଧତି' ବା 'ପଦ ସଂଘଟନା ପଦ୍ଧତି' ଅର୍ଥରେ ବ୍ୟବହାର କରିଛନ୍ତି। 'କାବ୍ୟାଲଙ୍କାର ସୂତ୍ର'ରେ ବାମନ କହନ୍ତି 'ବିଶିଷ୍ଟ ପଦ ରଚନା ରୀତିଃ'। 'ସାହିତ୍ୟ ଦର୍ପଣ'କାର ପଣ୍ଡିତ ବିଶ୍ୱନାଥ କବିରାଜ କହନ୍ତି 'ପଦ ସଂଘଟନା ରୀତିଃ'- ଅର୍ଥାତ୍ ଶବ୍ଦର ଯଥାର୍ଥ ପ୍ରୟୋଗରେ ହିଁ ସାର୍ଥକ ସାହିତ୍ୟର ଉନ୍ମେଷ ଘଟେ। ଏକ ପ୍ରକାର ତନ୍ତୁ ଓ ତନ୍ତକୁ ନେଇ ତନ୍ତୁବାୟ ଯେପରି ଭିନ୍ନ ଭିନ୍ନ ରୀତିର ବସ୍ତ୍ର ବୟନ କରେ, ସେହିପରି ଗୋଟିଏ ପ୍ରକାର ଶବ୍ଦ ବିଭବକୁ ଗ୍ରହଣ କରି କୁଶଳୀ ସ୍ରଷ୍ଟା ଭିନ୍ନ ଭିନ୍ନ ଶୈଳୀର ସାହିତ୍ୟ ସୃଷ୍ଟି କରେ। 'ନଭସ୍ତ୍ରୀ ସୌଧକୁ ଅବରୋହଣ କଲେ'— ଏହି ଉକ୍ତିକୁ ପ୍ରକାଶ କରିବାକୁ ଯାଇ ଯେଉଁଠି କବି ଶ୍ରୀହର୍ଷ ଲେଖନ୍ତି—'ପ୍ରସାଦମଭ୍ରଂ କଷ ମାସସାଦ' ସେଇଠି କାଳିଦାସ ଲେଖନ୍ତି— 'ପ୍ରସାଦମଭ୍ରଂ ଲିହମାରୁରୋହ'। ଏଣୁ ରୀତି ଏକ ଆଙ୍ଗିକ ବିନ୍ୟାସ ହେଲେ ହେଁ ଏଥିରେ ଗୁଣ ମୁଖ୍ୟ ସ୍ଥାନ ଗ୍ରହଣ କରେ। ରୀତି ଉପରେ ପର୍ଯ୍ୟବେସିତ ଗୁଣ, ରସ, ଧ୍ୱନି, ଅଳଙ୍କାର, ବକ୍ରୋକ୍ତି ଓ ଔଚିତ୍ୟ ସଂପ୍ରଦାୟର ଭୂମିକା କାବ୍ୟର ଆଙ୍ଗିକ ତଥା ଆତ୍ମିକ ବିକାଶ ଦିଗରେ ଅତୀବ ଗୁରୁତ୍ୱପୂର୍ଣ୍ଣ ମନେ ହୁଏ।

ଓଡ଼ିଆ ସାହିତ୍ୟର ସୃଷ୍ଟି ପ୍ରାୟ ଏକସହସ୍ର ବର୍ଷ ପୂର୍ବରୁ ପ୍ରସାର ଲାଭ କରିଥିଲେ ହେଁ ପଞ୍ଚଦଶ ଶତାବ୍ଦୀର ମଧ୍ୟଭାଗରୁ ଯଥାର୍ଥ ଓଡ଼ିଆ ସାହିତ୍ୟର ବିକାଶ ଉପଲବ୍ଧି କରାଯାଏ। ସାହିତ୍ୟର ଆତ୍ମା ସଂପର୍କରେ ଭିନ୍ନ ଭିନ୍ନ ବିଶ୍ଳେଷଣ କରି ଭିନ୍ନ ଭିନ୍ନ ମତ ପରିବେଷଣ କରନ୍ତି। କିଏ ରୀତିକୁ, କିଏ ରସକୁ, କିଏ ଗୁଣକୁ, କିଏ ଅଳଙ୍କାରକୁ, କିଏ ବକ୍ରୋକ୍ତିକୁ, କିଏ ଧ୍ୱନିକୁ ଓ ସର୍ବଶେଷରେ କିଏ ଔଚିତ୍ୟକୁ କାବ୍ୟର ଜୀବନ ଭାବରେ ଅଙ୍ଗୀକାର କରିଛନ୍ତି। ରସ ସଂପ୍ରଦାୟର ଭରତ ମୁନି ଓ ବିଶ୍ୱନାଥ କବିରାଜ, ଅଳଙ୍କାର

ସଂପ୍ରଦାୟର ଭାମହ ଓ ରୁଦ୍ରଟ, ରୀତି ସଂପ୍ରଦାୟର ଦଣ୍ଡୀ, ଗୁଣ ସଂପ୍ରଦାୟର ବାମନ, ବକ୍ରୋକ୍ତି ସଂପ୍ରଦାୟର କୁନ୍ତକ, ଧ୍ୱନି ସଂପ୍ରଦାୟର ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ, ଔଚିତ୍ୟ ସଂପ୍ରଦାୟର କ୍ଷେମେନ୍ଦ୍ର ଆଦି କବିମାନଙ୍କ କୃତିତ୍ୱ ରୀତି ଯୁଗୀୟ ରସାଳ କାବ୍ୟ ସାହିତ୍ୟର ସୃଷ୍ଟି ଦିଗରେ ଅତ୍ୟନ୍ତ ବିସ୍ମୟ । କାବ୍ୟର ଚିରନ୍ତନ ସୌନ୍ଦର୍ଯ୍ୟ ଯେଉଁ ସବୁ ବିଷୟ ଉପରେ ପର୍ଯ୍ୟବସିତ ସେଥିମଧ୍ୟରୁ 'ରୀତି' ଅନ୍ୟତମ । କାହିଁକି ତାହାର ମତରେ 'ରୀତି' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ଗୁଣ ନିର୍ଦ୍ଧାରକ– "ରୀୟତେ (କ୍ଷୀୟତେ) ଗୁଣ ବିଶେଷୋଽନୟା ଇତି ରୀତିଃ" ଅତଏବ ଯାହା ଦ୍ୱାରା 'ଗୁଣ' ନିର୍ଦ୍ଧାରିତ ହୁଏ ତାହା ରୀତି ।

'ରୀତି'କୁ କେହି କେହି ଆଲୋଚକ ଇଂରାଜୀ ଶବ୍ଦ 'ଷ୍ଟାଇଲ୍'ର ପରିଭାଷା ବୋଲି ମତଦେଇଥାଆନ୍ତି । ମାତ୍ର ତାହା ସାହିତ୍ୟିକ ବିଚାର ଧାରାରେ ଯୁକ୍ତିଯୁକ୍ତ ମନେହୁଏନାହିଁ । କାରଣ 'ଷ୍ଟାଇଲ୍' ଏବଂ 'ରୀତି, ଏକ ସାମ୍ୟବାଚକ ଶବ୍ଦ ନୁହେଁ । ରୀତି କେବଳ କାବ୍ୟର ଆଙ୍ଗିକ ବିଚାର କରେ; କିନ୍ତୁ 'ଷ୍ଟାଇଲ୍' କାବ୍ୟର ଆଙ୍ଗିକ ଓ ଆତ୍ମିକ ଉଭୟର ବିଚାର କରିବା ସଙ୍ଗେ ସଙ୍ଗେ ସ୍ରଷ୍ଟାର ମୌଳିକ ଚିନ୍ତାଧାରା ଓ ବ୍ୟକ୍ତିତ୍ୱ ଉପରେ ମଧ୍ୟ ଆଲୋକପାତ କରେ । ଷ୍ଟାଇଲ ବ୍ୟକ୍ତି ଅନ୍ତରର ରୂପ ବିଧାୟକ ଉପାଦାନ । ତେଣୁ ଇଂରାଜୀ ସମାଲୋଚକ ପୋପ୍ ଯଥାର୍ଥରେ କହିଛନ୍ତି— "Style is the dress of thought"

ଖ୍ରୀ: ପୂ: ୬ଷ୍ଠ ଶତାବ୍ଦୀରୁ ସଂସ୍କୃତ ସାହିତ୍ୟରେ 'ରୀତି' ଯୁଗର ସୃଷ୍ଟି ହୋଇଛି ବୋଲି ଅନୁମାନ କରାଯାଏ । ଖ୍ରୀ: ପୂ. ୧୫୦ରେ ଗିର୍ଣ୍ଣାରର ରୁଦ୍ର ଦାମନଙ୍କ ଶିଳାଲେଖରେ ଥିବା ରୀତି କାବ୍ୟକୁ ପର୍ଯ୍ୟାଲୋଚନା କଲେ ପ୍ରାକ୍ ରୀତିଯୁଗୀୟ ଅଳଙ୍କାରିକତା ନିର୍ଣ୍ଣୟ କରାଯାଇ ପାରେ—

'ସ୍ଫୁଟ ଲଘୁ ମଧୁର ଚିତ୍ର କାନ୍ତ ଶବ୍ଦ ସମୟୋଦାରାଲଂ କୃତ ଗଦ୍ୟପଦ୍ୟଂ X X X କାବ୍ୟ ବିଧାନ ପ୍ରବୀଣେନ ।" ଡକ୍ଟର ବୁହଲର "Indian Antiquary" VOL-XLII Page 193ରେ Indian Inscriptions and the antiquity of Indian artificial Poetry" ପ୍ରବନ୍ଧରେ କହିଛନ୍ତିଯେ, ଉକ୍ତ ଶିଳାଲେଖର ପ୍ରଶସ୍ତିରୁ ଭାରତୀୟ ରୀତି ସାହିତ୍ୟର ପ୍ରାକ୍ ସୂଚନା ବିସ୍ତୃତ ଦୃଷ୍ଟିକୋଣରୁ ହିଁ ବିଚାର୍ଯ୍ୟ । ଖ୍ରୀଷ୍ଟୀୟ ୧ମ ଶତାବ୍ଦୀର ନାଟ୍ୟକାର ଅଶ୍ୱଘୋଷ, ୫ମ ଶତାବ୍ଦୀର ମହାକବି କାଳିଦାସ, ୬ଷ୍ଠ ଶତାବ୍ଦୀର କବି ଭାରବୀ, ୭ମ ଶତାବ୍ଦୀର କବି ବାଣଭଟ୍ଟ

ଆଦି କାବ୍ୟକାରଗଣ ରୀତିକାବ୍ୟ ନିର୍ମାଣ କରି ରୀତିବାଦର ଆଲଙ୍କାରିକ ପରିଭାଷା ଓ ମୌଳିକ ଆଦର୍ଶକୁ ଅକ୍ଷୁର୍ଣ୍ଣ ରଖିଥିବାର ଜଣାଯାଏ ।

ଓଡ଼ିଆ ରୀତି ସାହିତ୍ୟର ବିକାଶ ଧାରାରେ ସଂସ୍କୃତ କାବ୍ୟାବଳୀ ଓ ଆଲଙ୍କାରିକ ମାନଙ୍କର କାବ୍ୟାଦର୍ଶର ଅନବଦ୍ୟ ଅବଦାନ ସ୍ୱୀକାର୍ଯ୍ୟ । ଖ୍ରୀଷ୍ଟୀୟ ୫ମ ଶତାବ୍ଦୀରୁ ୧୦ମ ଶତାବ୍ଦୀ ମଧ୍ୟରେ ସଂସ୍କୃତ ସାହିତ୍ୟ ସମଗ୍ର ଭାରତରେ ପ୍ରସାରଲାଭ କରିଥିଲା । ୧୪ଶ ଶତାବ୍ଦୀର କବି ବିଦ୍ୟାଧରଙ୍କ 'ଏକାବଳୀ', ଅଷ୍ଟାଦଶ-ଭାଷା-ବାର-ବିଳାସିନୀ-ଭୁଜଙ୍ଗ-କବିରାଜ ବିଶ୍ୱନାଥଙ୍କ 'ସାହିତ୍ୟ ଦର୍ପଣ', କବି-କୁଳ-ତିଳକ ମହାମହିମ କାଳିଦାସଙ୍କ 'ବିକ୍ରମୋର୍ବଶୀୟମ୍', ଭବଭୂତିଙ୍କ 'ଉତ୍ତର ରାମଚରିତ', ବାଣଭଟ୍ଟଙ୍କ 'କାଦମ୍ବରୀ', ଭାରବିଙ୍କ 'କିରାତାର୍ଜୁନୀୟ', ମାଘଙ୍କ 'ଶିଶୁପାଳ ବଧ', ଶ୍ରୀ ହର୍ଷଙ୍କ 'ନୈଷଧ', ଭାମହଙ୍କ କାବ୍ୟାଲଙ୍କାର ଦଣ୍ଡିଙ୍କ କାବ୍ୟାଦର୍ଶ ଓ ବାମନଙ୍କ 'କାବ୍ୟାଲଙ୍କାର ସୂତ୍ର ଆଦି କବି ଓ ଆଲଙ୍କାରିକ ସାହିତ୍ୟରେ 'ରୀତିକାବ୍ୟ'ର ବିକାଶ କ୍ଷେତ୍ରରେ ଉଲ୍ଲେଖ ଯୋଗ୍ୟ ଭୂମିକା ଗ୍ରହଣ କରିଛନ୍ତି । ୧୫ଶ ଶତାବ୍ଦୀରୁ ୧୭ଶ ଶତାବ୍ଦୀ ମଧ୍ୟରେ ତେଲୁଗୁ ସାହିତ୍ୟରେ କୃଷ୍ଣଦେବରାୟଙ୍କର 'ଅମୁକ୍ତ ମଲ୍ୟଦ', ଶ୍ରୀନାଥଙ୍କର 'ଶୃଙ୍ଗାର ନୈଷଧ', ସୁରନଙ୍କର 'ରାଘବ ପାଣ୍ଡବୀୟମ୍' ମାଲୟାଲମ ସାହିତ୍ୟରେ 'କୃଷ୍ଣଗାଥା', 'ଭାରତ ଗାଥା', ମରାଠୀ ସାହିତ୍ୟରେ ଶିରପନ୍ତଙ୍କର 'ଚନ୍ଦ୍ରବନ୍ଦନମ୍', ହିନ୍ଦୀ ସାହିତ୍ୟରେ 'କବିତ୍ୱ ରତ୍ନାକର', 'ଶ୍ଳେଷ ତରଙ୍ଗ', 'ଯମକ ଶତକ' ପ୍ରଭୃତି କାବ୍ୟ ମାନଙ୍କରେ ରୀତିକାବ୍ୟର ଆଦର୍ଶ ପ୍ରତିଫଳିତ ହୋଇଅଛି ।

୧୭ଶ ଶତାବ୍ଦୀର କବି ଅର୍ଜୁନଦାସଙ୍କ 'ରାମବିଭା', ଶିଶୁଶଙ୍କର ଦାସଙ୍କ 'ଉଷାଭିଳାଷ', କାର୍ତ୍ତିକଦାସଙ୍କ 'ରୁକ୍ମିଣୀ ବିଭା', ଦେବ ଦୁର୍ଲ୍ଲଭ ଦାସଙ୍କ 'ରହସ୍ୟ ମଞ୍ଜରୀ' କୃଷ୍ଣ ଦାସଙ୍କ 'ପ୍ରେମ ଲୋଚନା ରଘୁନାଥ ହରିଚନ୍ଦନଙ୍କ ଲୀଳାବତୀ ଧନଞ୍ଜୟ ଭଞ୍ଜଙ୍କ, ରଘୁନାଥ ବିଳାସ ରତ୍ନମଞ୍ଜରୀ ପ୍ରଭୃତି ଓଡ଼ିଆ କାବ୍ୟରେ ରୀତିଯୁଗର ଭିତ୍ତି ପଡ଼ିଥିଲା । ପରବର୍ତ୍ତୀ ପର୍ଯ୍ୟାୟରେ ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ, ଭକ୍ତଚରଣ, କବିସୂର୍ଯ୍ୟ, ସଦାନନ୍ଦ ବ୍ରହ୍ମା ଆଦି କବିମାନେ ରୀତିଯୁଗର ସୌଧ ନିର୍ମାଣ ଦିଗରେ ଅଗ୍ରଣୀ ହୋଇଥିଲେ । କାବ୍ୟର ସୃଷ୍ଟି ପଦ୍ଧତି ସଂପର୍କରେ ବିଭିନ୍ନ ଆଲଙ୍କାରିକ କେତେକ ନିୟମ ନିର୍ଦ୍ଦେଶ କରିଛନ୍ତି । କାବ୍ୟ ଶାସ୍ତ୍ରର ବିଭିନ୍ନ ଗୁଣ, ଧର୍ମ, ରସ,

ରୀତି ଧ୍ୱନି, ବକ୍ରୋକ୍ତି ଓ ଅଳଙ୍କାରକୁ ନେଇ ଭିନ୍ନ ଭିନ୍ନ ରୀତିର ପ୍ରତିଷ୍ଠା କରାଯାଇଛି । ତେଣୁ ଗୁଣାନୁଯାୟୀ ବୈଶିଷ୍ଟ୍ୟ ଯେଉଁ ସାହିତ୍ୟରେ ରୂପାୟିତ ହୁଏ ତାହାକୁ ରୀତି-ସାହିତ୍ୟ କୁହାଏ । ଏହି ନିୟମରେ ଲିଖିତ ଓଡ଼ିଆ କାବ୍ୟ ସମୂହକୁ ରୀତିକାବ୍ୟ ଓ ସେହି କାଳକୁ ରୀତିଯୁଗ ନାମରେ ଅଭିହିତ କରାଯାଇଛି । ଏହି ନିର୍ଦ୍ଦିଷ୍ଟ ପରଂପରାଶ୍ରିତ ନିର୍ଦ୍ଦିଷ୍ଟ ପଦ୍ଧତିରେ ରଚିତ ଓଡ଼ିଆ ରୀତି କାବ୍ୟର ବିଶେଷ ବିଶେଷତ୍ୱ ନିମ୍ନ ମତେ ଲକ୍ଷ୍ୟ କରାଯାଏ ।

ମଙ୍ଗଳାଚରଣ— 'ସାହିତ୍ୟଦର୍ପଣରେ' ଉଲ୍ଲେଖ ଅଛି ଯେ— "ଆଦୌ ନମସ୍କ୍ରିୟାଶୀର୍ବାବସ୍ତୁ ନିର୍ଦ୍ଦେଶ ଏବ ବା/ କ୍ୱଚିନ୍ନିନ୍ଦା ଖଳାଦୀନାଂ ସତାଞ୍ଚ ଗୁଣକୀର୍ତ୍ତନମ୍" କାବ୍ୟର ଆରମ୍ଭରେ ଇଷ୍ଟ ବନ୍ଦନା, ଆଶୀର୍ବାଦ ଭିକ୍ଷା, ବସ୍ତୁ ନିର୍ଦ୍ଦେଶ ଖଳନିନ୍ଦା, ସାଧୁ ପ୍ରଶଂସାଦି ବୈଶିଷ୍ଟ୍ୟ ପରିଲକ୍ଷିତ ହେବା ଉଚିତ । ସଂସ୍କୃତ କାବ୍ୟାନୁସରଣ ପୂର୍ବକ ଓଡ଼ିଆ ରୀତି କବି ନିଜ ରଚନାବଳୀରେ ଅନୁରୂପ ବର୍ଣ୍ଣନାକରିଛନ୍ତି— ଯେପରି 'ବୈଦେହୀଶ ବିଳାସରେ' ଉପେନ୍ଦ୍ର ଭଞ୍ଜ ନିର୍ଦ୍ଦେଶ କରିଛନ୍ତି— "ବନ୍ଦଇ ଶ୍ରୀନ ବାନ୍ଧବ ହରି / ଯେ ତମ ଚକ୍ର ଖଣ୍ଡନକାରୀ" ସେପରି ଲାବଣ୍ୟବତୀରେ "ଜୟ ଜୟ ଜୟ ରାମ ଜନକ ସୁଖଦ / ଶ୍ରୀମ ହରଷ ଦାନରେ ସଦା ବିଶାରଦ ହେ ।"

ଅଭିମନ୍ୟୁଙ୍କ 'ବିଦଗ୍ଧ ଚିନ୍ତାମଣିରେ— "ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି / ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି ।" ସେହିପରି ରୀତି ଯୁଗୀୟ ସମସ୍ତ କାବ୍ୟରେ ଏହି ନିୟମ ରକ୍ଷିତ ଓ ପ୍ରତିଷ୍ଠିତ ।

ରସବୋଧ— ସାହିତ୍ୟର ଉଦ୍ଦେଶ୍ୟ ସୌନ୍ଦର୍ଯ୍ୟ ବିତରଣ କରିବା । ଏହି ସୌନ୍ଦର୍ଯ୍ୟ ବିତରଣ କରିବା ନିମିତ୍ତ ରସ ଏକ ଅପରିହାର୍ଯ୍ୟ ବିଭବ । ରସ ସଂପ୍ରଦାୟର ପ୍ରବର୍ତ୍ତକ ଭରତ ମୁନି ଓ ସମର୍ଥକ ଆଲଙ୍କାରିକ ବିଶ୍ୱନାଥ କବିରାଜ । ବିଶିଷ୍ଟ ଆଲଙ୍କାରିକ ଭାମହ ଓ ଦଣ୍ଡୀ କାବ୍ୟରେ ଅଳଙ୍କାର ର ପରାକାଷ୍ଠା ପ୍ରଦର୍ଶନ କଲା ବେଳେ ବାମନ ରୀତି କୁ କାବ୍ୟର ଆତ୍ମା ରୂପେ ସ୍ୱୀକାର କରିଛନ୍ତି । ପୁଣି ଆନନ୍ଦ ବର୍ଦ୍ଧନ ଓ ଅଭିନବ ଗୁପ୍ତ ଧ୍ୱନିକୁ କାବ୍ୟର ଆତ୍ମା ରୂପେ ଘୋଷଣା କରିଛନ୍ତି । ଆଲଙ୍କାରିକ ବିଶ୍ୱନାଥ କବିରାଜ 'ସାହିତ୍ୟ ଦର୍ପଣ" ଗ୍ରନ୍ଥରେ 'ବାକ୍ୟଂରସାତ୍ମକଂ କାବ୍ୟମ୍' ସଜ୍ଞା ସାହାଯ୍ୟରେ ରସାତ୍ମକ ବାକ୍ୟହିଁ କାବ୍ୟର ଆତ୍ମାରୂପେ ସ୍ୱୀକାର କଲେ । "ରସ୍ୟତେ ଅନେନ ଇତି ରସଃ" ଯାହାଦ୍ୱାରା କାବ୍ୟ ସ୍ୱାଦ୍ୟ ହୁଏ, ତାହା ରସ । ଭରତଙ୍କ'ନାଟ୍ୟଶାସ୍ତ୍ର'ରେ ରସର ତାତ୍ତ୍ୱିକ ବିଶ୍ଳେଷଣ ହୋଇଛି ।

"ଯଥା ବୀଜାତ୍ ଭବେଦ୍ ବୃକ୍ଷୋ, ବୃକ୍ଷାତ୍ ପୁଷ୍ପଂ ଫଳଂ ତଥା

ତଥା ମୂଳଂ ରସାଃ ସର୍ବେତେଭ୍ୟୋ ଭାବାବ୍ୟବସ୍ଥିତାଃ ।"

ପୁଣି 'ଅଗ୍ନି ପୁରାଣ' ରେ 'ବାକ୍ ବୈଦଗ୍ଧ' ଉପରେ ରସ ପ୍ରତିଷ୍ଠିତ ବୋଲି କୁହାଯାଇଛି । ଯଥା—

"ବାକ୍ ବୈଦଗ୍ଧ—ପ୍ରଧାନେଽପି ରସ ଏବାତ୍ର ଜୀବିତମ୍"

ଭାରତୀୟ ଶାସ୍ତ୍ର ସାହିତ୍ୟରେ 'ରସ ସଂପ୍ରଦାୟର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଭରତ ମୁନି ଶୃଙ୍ଗାର, ବୀର, କରୁଣ, ରୌଦ୍ର, ହାସ୍ୟ, ଭୟାନକ, ବୀଭତ୍ସ ଓ ଅଦ୍ଭୁତ ଏହି ଅଷ୍ଟରସର ପ୍ରବର୍ତ୍ତନ କରିଥିଲେ । ପରେ ବିଶ୍ୱନାଥ ଶାନ୍ତ ଓ ବାତ୍ସଲ୍ୟ ରସର ସଂଯୋଗ କରି ଦଶ ରସର କଳ୍ପନା କଲେ । ଏହି ଦଶ ରସ ମଧ୍ୟରେ ଶୃଙ୍ଗାର ରସକୁ ଆଦିରସ, ଶ୍ରେଷ୍ଠ ରସ ବା ମଧୁର ରସ ଭାବେ ଗ୍ରହଣ କରି ଅମର କବି ଅମରଶତକ, ଭର୍ତ୍ତୃହରି ଶୃଙ୍ଗାର ଶତକ, ଜୟଦେବ ଗୀତଗୋବିନ୍ଦ, ରୂପ ଗୋସ୍ୱାମୀ ଉଜ୍ଜ୍ୱଳ ନୀଳମଣି, ବିହ୍ଲଣ ଚୌରପଞ୍ଚାଶିକା ଓ କାଳିଦାସ ଶୃଙ୍ଗାର ତିଳକ, ପ୍ରଭୃତି ଶୃଙ୍ଗାରାଶ୍ରିତ କାବ୍ୟ ରଚନା କ୍ଷେତ୍ରରେ ନୂତନ ଦିଗ୍‌ଦର୍ଶନ ଦେଖାଇ ଯାଇଛନ୍ତି । ଶୃଙ୍ଗାର ରସର ଶ୍ରେଷ୍ଠତ୍ୱ ପ୍ରମାଣିତ କରିବାକୁ ଯାଇ ଭୋଜରାଜ ସରସ୍ୱତୀ କଣ୍ଠାଭରଣ ରେ ବର୍ଣ୍ଣନା କରିଛନ୍ତି ଯେ—

ଶୃଙ୍ଗାରୀଚେତ୍ କବିଃ କାବ୍ୟେ ଜାତଂ ରସମୟଂ ଜଗତ

ଆନନ୍ଦ ବର୍ଦ୍ଧନ ଶୃଙ୍ଗାର ରସ ମାଧ୍ୟମରେ କାବ୍ୟର ଉତ୍କର୍ଷ ସାଧିତ ହୋଇପାରେ ବୋଲି ଧ୍ୱନ୍ୟାଲୋକ ରେ କହିଛନ୍ତି—

ଶୃଙ୍ଗାର ଏବ ମଧୁରଃ ପର ପ୍ରହ୍ଲାଦ ନୋରସଃ

ସମର୍ଥମବଲମ୍ବ୍ୟେନ ମାଧୁର୍ଯ୍ୟଂ ପ୍ରତିତିଷ୍ଠତେ ।

ସଂସ୍କୃତ ସାହିତ୍ୟର ବାଣଭଟ୍ଟ, ମାଘ, ଭାରବି ପ୍ରଭୃତି କବି କାବ୍ୟ ମଧ୍ୟରେ ଶୃଙ୍ଗାରକୁ ମୁଖ୍ୟ ସ୍ଥାନ ଦେଇ ଶାସ୍ତ୍ର ସାହିତ୍ୟର ବୈଶିଷ୍ଟ୍ୟକୁ ରକ୍ଷା କରିଛନ୍ତି । ଓଡ଼ିଆ ସାହିତ୍ୟରେ ରୀତିଯୁଗୀୟ କବିଗଣ ଶୃଙ୍ଗାର ରସର ମାର୍ମିକ ଆବେଦନ ଦେଇଥିଲେ

ନାୟକ ନାୟିକାଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଠାରୁ ସୁଖ-ଦୁଃଖ, ମିଳନ-ବିରହ ପର୍ଯ୍ୟନ୍ତ ପ୍ରତ୍ୟେକ ଛନ୍ଦାବଳୀ ପ୍ରାଞ୍ଜଳଭାବେ ଅଙ୍କିଛନ୍ତି । ରସ ସହିତ କବିତ୍ୱର ସମୀକରଣ କରି 'ରସକଲ୍ଲୋଳ'କାର ଦୀନକୃଷ୍ଣ ଲେଖିଛନ୍ତି—

"କବିତା ମଳୟ-ପବନ ମତ      କରେ ରସିକ ତରୁ ପଲ୍ଲବିତ" । X X X
"କବି ହୋଇ କରୁଥିବ ନିର୍ମଳ କବିତ୍ୱ      କର୍ଣ୍ଣଦେଇ ଶୁଣୁଥିବ ରସିକ ପଣ୍ଡିତ ।"

ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଅନୁରୂପ ବର୍ଣ୍ଣନା ରହିଛି—

"ଯେ କବି ଅର୍ଥୀ ପଣ୍ଡିତ ସୁହୃଦ
ରସିକ ସେହି ଯୋଗ୍ୟ ଏ ଗ୍ରନ୍ଥ ।"

ଅଳଙ୍କାର :—

ରୀତିଯୁଗୀୟ କାବ୍ୟରେ 'ଅଳଙ୍କାର'ର ମର୍ଯ୍ୟାଦା ଅପରିହାର୍ଯ୍ୟ । ଅଳଙ୍କାର ହେଉଛି କାବ୍ୟର ଏକ ଉତ୍କର୍ଷବିଧାୟକ ପ୍ରକାଶ ଶୈଳୀ । ଯାହାଦ୍ୱାରା କାବ୍ୟର ସୌନ୍ଦର୍ଯ୍ୟ ସଂପାଦିତ ହୁଏ, ତାହାହିଁ ଅଳଙ୍କାର । ଆଚାର୍ଯ୍ୟ ଭାମହ ଏ ସଂପ୍ରଦାୟର ପ୍ରଧାନ ପୃଷ୍ଠ-ପୋଷକ ଓ ପ୍ରଖ୍ୟାପକ । ମାତ୍ର ଦଣ୍ଡୀ, ବିଶ୍ୱନାଥ କବିରାଜ, ଭରତ ମୁନି, ଭାମହ, ରୁଦ୍ରଟ ଆଦି କବି କାବ୍ୟରେ ଏ ଅଳଙ୍କାରର ଯାଥାର୍ଥ୍ୟ ସ୍ୱୀକାର କଲାବେଳେ କବି ଜୟଦେବ 'ଚନ୍ଦ୍ରାଲୋକ' ଗ୍ରନ୍ଥରେ ଅଳଙ୍କାରର ଉପାଦେୟତା ସଂପର୍କରେ କହିଛନ୍ତି—

"ଅଙ୍ଗୀ କରୋତି ଯଃ କାବ୍ୟଂ ଶବ୍ଦାର୍ଥାବନଲଂ କୃତୀ
ଅସୌ ନ ମନ୍ୟତେ କସ୍ମାଦନୁଷ୍ଣମନଲଂ କୃତୀ ।"

ଅର୍ଥାତ୍ ଉଷ୍ଣତା ଯେପରି ଅଗ୍ନିର ଅବିଚ୍ଛେଦ୍ୟ ଅଙ୍ଗ, ଅଳଙ୍କାର ସେହିପରି କାବ୍ୟର ଅବିଚ୍ଛେଦ୍ୟ ଅଙ୍ଗ । ପୁଣି ଅଳଙ୍କାର ସଂପର୍କରେ କୁହାଯାଇଛି— "ଅଳଂ କରୋତୀତି ଅଳଙ୍କାରଃ" "ଅଳଂକ୍ରିୟତେ ଅନେନ ଇତି ଅଳଂକାରଃ ।" ଅଳଙ୍କାର ସୌନ୍ଦର୍ଯ୍ୟ ସଂପାଦନର ବିଶିଷ୍ଟ ଓ ବଳିଷ୍ଠ ଉପାଦାନ । କାବ୍ୟର ଆଙ୍ଗିକ ହେଉ ବା ଆତ୍ମିକ ହେଉ ଦଣ୍ଡୀ ଅଳଙ୍କାରକୁ ଏକ କାବ୍ୟ ବା ଶୋଭାକାରୀ ଗୁଣ ଭାବରେ ଗ୍ରହଣ କରି କାବ୍ୟାଦର୍ଶରେ କହିଛନ୍ତି— 'କାବ୍ୟ ଶୋଭାକାରାନ୍ ଧର୍ମାନ୍ ଅଳଙ୍କାରାନ୍ ପ୍ରଚକ୍ଷତେ' ତେଣୁ ରୀତିଯୁଗୀୟ କବିମାନେ ଅଳଙ୍କାରକୁ କାବ୍ୟର ଶ୍ରେଷ୍ଠ ବିଭବ ରୂପେ ଗ୍ରହଣ କରି କୌତୁକମୟୀ, ସୌନ୍ଦର୍ଯ୍ୟମୟୀ, ମୂର୍ତ୍ତିମତୀ ମୃଦୁ କାବ୍ୟ ରଚନା କରିବାରେ

ସଚେତନ ଥିଲେ । ଉତ୍କଳୀୟ ଶିଳ୍ପୀ ନିଜ ସୃଷ୍ଟିରେ ଅଲଙ୍କାରର ସଂଯୋଜନ ପାଇଁ ସର୍ବଭାରତୀୟ ସ୍ତରରେ ଗୌରବ ଅର୍ଜନ କରିପାରିଛନ୍ତି । ଅଲଙ୍କାରକୁ ଗୁରୁତ୍ୱ ଦେଇ ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି— "ମୂର୍ତ୍ତିବନ୍ତ କରିମୃଦୁ ଗୀତ ବିସ୍ତାରିଛି / ଏଣୁକରି ଅଲଙ୍କାର ଥିବ ଯୁକ୍ତ ହୋଇ ।"

X X X — X

ନାନା ଶବ୍ଦ ଅର୍ଥେ ଯେ ବିଚକ୍ଷଣ / ସେହିଁ ଜାଣେ ଅଲଙ୍କାରର ଲକ୍ଷଣ ।"
ଅଲଙ୍କାରରବର୍ଣ୍ଣନା କେବଳ ଭଞ୍ଜ ସାହିତ୍ୟରେ ପର୍ଯ୍ୟାପ୍ତ ନୁହେଁ,ଏତାଦୃଶ୍ୟ 'ବର୍ଣ୍ଣନା ଅଭିମନ୍ୟୁ 'ଦୀନକୃଷ୍ଣ, କବିସୂର୍ଯ୍ୟ, ଯଦୁମଣି ଆଦିଙ୍କର କାବ୍ୟରେ ମଧ୍ୟ ବିସ୍ତୃତ ।

ବକ୍ରୋକ୍ତି – କୌଣସି ବକ୍ତବ୍ୟକୁ ସିଧା ସଳଖ ଭାବରେ ବ୍ୟକ୍ତ ନକରି ବଙ୍କା ଭାବରେ ବ୍ୟକ୍ତ କରିବା ପ୍ରଣାଳୀକୁ 'ବକ୍ରୋକ୍ତି' କୁହାଯାଏ । ଓଡ଼ିଆ ରୀତି କାବ୍ୟରେ 'ବକ୍ରୋକ୍ତି' ବିଶେଷ ଭାବରେ କାବ୍ୟମୋଦୀର ଆତ୍ମାକୁ ଆଲୋଡ଼ିତ କରେ । ଭାମହ, ଦଣ୍ଡୀ ବାମନ, ରୁଦ୍ରଟ, ମମ୍ମଟ ପ୍ରଭୃତି ଆଲଙ୍କାରିକ ଏହାର ବିଶ୍ଳେଷଣ କରିଥିଲେ ମଧ୍ୟ ଆଲଙ୍କାରିକ ଓ ବକ୍ରୋକ୍ତି ସଂପ୍ରଦାୟର ପ୍ରବର୍ତ୍ତକ 'କୁନ୍ତକ' ବକ୍ରୋକ୍ତିକୁ କାବ୍ୟର ପ୍ରାଣ ଭାବରେ ଗ୍ରହଣ କରି କହିଛନ୍ତି- "ବକ୍ରୋକ୍ତି କାବ୍ୟ ଜୀବିତମ୍" ଏହି ବକ୍ରୋକ୍ତି ଯଥେଷ୍ଟ ମାତ୍ରାରେ ବାଣଭଟ୍ଟ, ଭାମହ, ଦଣ୍ଡୀ ଓ ବାମନଙ୍କ ରଚନାରେ ବାକ୍ୟ ବିନ୍ୟାସ ମଧ୍ୟରେ ପରିଲକ୍ଷିତ ହୁଏ । 'ବକ୍ରୋକ୍ତିକୁ 'ବୈଦଗ୍ଧଭଂଗୀ ଭଣିତି'ମଧ୍ୟ କୁହାଯାଏ । ବକ୍ରୋକ୍ତିର ମାହାତ୍ମ୍ୟ ସୂଚାଇ ଦୀନକୃଷ୍ଣ ଲେଖିଛନ୍ତି—

"କବି ଯେ ସତମିଛ କରି କହନ୍ତି
କବିତା ଗୁରୁତ୍ୱରେ ମନ ମୋହନ୍ତି ।" X X X ଏବଂ

କବିତା ଜାଣି ନ ପାରି ତହିଁ କି ଉପମା କରି
ରଖିବାକୁ ନିଜ ବଚନ ଗୁରୁତ୍ୱ'

ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ବକ୍ରୋକ୍ତିର ଦୃଷ୍ଟାନ୍ତ ହେଉଛି,—
ମଳୟ ଶିଖରୀ ଗିରୀ ସେବିକରି ବହିଲାନି ମନ୍ଦ ସମୀର
ସୁମନାଙ୍କ ବାସ ସେବାଇ ନେବଟି ବୋଲି କହିଲାନି ଭ୍ରମର"
ଯଥାର୍ଥରେ 'ବକ୍ରୋକ୍ତି' ରୀତିଯୁଗୀୟ ସାହିତ୍ୟର ଏକ ବଶିଷ୍ଟ ବିଭବ ।

ଧ୍ୱନି— କାବ୍ୟର ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ତତ୍ତ୍ୱର ବିକାଶ ନିମିତ୍ତ ରୀତିଯୁଗୀୟ କବି ଧ୍ୱନିର ଆଶ୍ରୟ ନେଇ ଅଛନ୍ତି । ପ୍ରାୟ ସମସ୍ତ ରୀତି କାବ୍ୟରେ ଧ୍ୱନିର ପ୍ରାଧାନ୍ୟ ଅଳ୍ପାଧିକେ ପରିଲକ୍ଷିତ ହୋଇଥାଏ । ଧ୍ୱନିବାଦର ପୃଷ୍ଠ ପୋଷକ ତଥା ଆଳଙ୍କାରିକ ଆନନ୍ଦବର୍ଦ୍ଧନ ଧ୍ୱନିକୁ କାବ୍ୟର ଆତ୍ମାରୂପେ ଘୋଷଣା କରି 'ଧ୍ୱନ୍ୟାଲୋକ'ରେ କୁହାଇଛନ୍ତି— "କାବ୍ୟାସ୍ୟାତ୍ମା ଧ୍ୱନିରିତି X X X" ଆନନ୍ଦବର୍ଦ୍ଧନ 'ଧ୍ୱନିବାଦର ପ୍ରତିଷ୍ଠାତା ହେଲେ ହେଁ ଅଭିନବ ଗୁପ୍ତଙ୍କଦ୍ୱାରା ଏହା ପ୍ରଚାର ଓ ପ୍ରସାରଲାଭ କରିଅଛି । ବିଭିନ୍ନ ଶାସ୍ତ୍ରକାରଙ୍କ ମତରେ ଧ୍ୱନିଯୁକ୍ତ କାବ୍ୟ ହିଁ ଉତ୍କୃଷ୍ଟ କାବ୍ୟଭାବେ ପରିଚିତ । ଧ୍ୱନିମୂଳକ କାବ୍ୟରେ ବାଚ୍ୟାର୍ଥ ଅପେକ୍ଷା ବ୍ୟଙ୍ଗ୍ୟାର୍ଥ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଏ । ଭାରତୀୟ ପରଂପରାରେ ଧ୍ୱନିଯୁକ୍ତ ରଚନାବଳୀକୁ ପାଣ୍ଡିତ୍ୟର ମର୍ଯ୍ୟାଦା ଅର୍ପଣ କରାଯାଏ । ଧ୍ୱନିବାଦୀ କବି ପ୍ରକୃତି ଚିତ୍ରଣ, ନାରୀରୂପ ବର୍ଣ୍ଣନା, ନଗରାଦି ବର୍ଣ୍ଣନାରେ ନିଜ ଚିନ୍ତାଶକ୍ତି ଅନୁଯାୟୀ ବିଭିନ୍ନ ପ୍ରକାର ଧ୍ୱନିର ପ୍ରୟୋଗ କରିଥାଆନ୍ତି । ଧ୍ୱନି ତ୍ରିବିଧ—ଯଥା, ବସ୍ତୁଧ୍ୱନି, ଅଳଙ୍କାରଧ୍ୱନି ଓ ରସ ଧ୍ୱନି । ଯେଉଁଠାରେ ବାସ୍ତବତାର ପ୍ରତୀତିଜନ୍ମେ ସେହିଠାରେ ବସ୍ତୁଧ୍ୱନି ଯେଉଁଠାରେ ଅଳଙ୍କାରର ପ୍ରତୀତି ଜନ୍ମେ ସେହିଠାରେ ଅଳଙ୍କାରଧ୍ୱନି ଏବଂ ଯେଉଁଠାରେ ରସର ପ୍ରତୀତି ଜନ୍ମେ ସେହିଠାରେ ରସଧ୍ୱନି ହୁଏ । ଓଡ଼ିଆ କବି ଦୀନକୃଷ୍ଣ, ଉପେନ୍ଦ୍ର, ଯଦୁମଣି ଓ କବିସୂର୍ଯ୍ୟଙ୍କ ରଚନାବଳୀରେ ଧ୍ୱନିରେ ବହୁଳ ଦୃଷ୍ଟାନ୍ତ ଲକ୍ଷ୍ୟ କରାଯାଏ ।

ପ୍ରେମ— ସଂସ୍କୃତରେ କୁହାଯାଇଛି—

"ଦର୍ଶନେ ସ୍ପର୍ଶନେ ବାଽପି ଶ୍ରବଣେ ଭାଷଣେଽପିବା
ହୃଦୟସ୍ୟ ଦ୍ରବତ୍ୱଂ ଯତ୍ ତତ୍ ପ୍ରେମ ଇତି କଥ୍ୟତେ"

ଅତଏବ ଯାହାକୁ ଦର୍ଶନ, ସ୍ପର୍ଶ, ଶ୍ରବଣ ଓ ଉକ୍ତି ପ୍ରଯୁକ୍ତି ପ୍ରୟୋଗ କରିବା ଫଳରେ ହୃଦୟ ଏକାବେଳକେ ଦ୍ରବୀଭୂତ ହୋଇଯାଏ, ତାହାକୁ ପ୍ରେମ କୁହାଯାଏ । ତେଣୁ ପ୍ରେମ ଏକ ଅନୁଭୂତିମୟ ସୂକ୍ଷ୍ମ ଚେତନା । ପ୍ରେମ ଶାଶ୍ୱତ ଓ ଚିରନ୍ତନ । ବିଶ୍ୱର ପ୍ରତ୍ୟେକ କାର୍ଯ୍ୟ ଏହି 'ପ୍ରେମ' ଉପରେ ନିର୍ଭରଶୀଳ । ପ୍ରେମକୁ ଉପଜୀବ୍ୟ କରି ରୀତିଯୁଗୀୟ ସାହିତ୍ୟ ପ୍ରଣୟଧର୍ମୀ ହୋଇ ପଡ଼ିଛି । ଏହି ପ୍ରେମମୂଳକ କାଳ୍ପନିକ ସାହିତ୍ୟ ସର୍ବପ୍ରଥମେ ସଂସ୍କୃତ ସାହିତ୍ୟ ପରଂପରାରେ ବିକାଶ ଲାଭକରି ପରବର୍ତ୍ତୀ ପର୍ଯ୍ୟାୟରେ ହିନ୍ଦି,ବଙ୍ଗଳା ତେଲଗୁ,ମରାଠୀ ଓ ଓଡ଼ିଆ ସାହିତ୍ୟରେ ଉପନୀତ ହୋଇଛି । ନର-ନାରୀ,ପ୍ରେମିକ-ପ୍ରେମିକା ନାୟକ-ନାୟିକାଙ୍କ ଯୌନପ୍ରବୃତ୍ତିକୁ ଆଶ୍ରୟକରି କାବ୍ୟରକଳାପାଟବ ପ୍ରକାଶିତ

ହୋଇଥାଏ । ଓଡ଼ିଆ ରୀତି ସାହିତ୍ୟରେ ଏହି ପ୍ରେମ ଚିତ୍ରପଟ ଦର୍ଶନରେ, ସ୍ୱପ୍ନୀୟ ମିଳନରେ, ସାକ୍ଷାତ୍ ଦର୍ଶନରେ, ପତ୍ର ବିନିମୟରେ, ଯାଜପୁତଙ୍କ ଆଗମନରେ ମିଳନ ଓ ବିରହାଦି ବିଭିନ୍ନ ସ୍ତର ମଧ୍ୟରେ ରୂପାୟିତ ହୋଇଅଛି । ପ୍ରେମର ମୂଳପିଣ୍ଡ ଉପରେ ଦାମ୍ପତ୍ୟ ସୁଖର ମହନୀୟତାକୁ ନିର୍ଦ୍ଦେଶ କରି ଉପେନ୍ଦ୍ର ଭଞ୍ଜ ଲେଖିଛନ୍ତି—

"କି ବଡ଼ ହେବା ନୃପତି କି ବଡ ଇନ୍ଦ୍ର ସଂପତି
ସବୁ ସୁଖ ଉତ୍ପତ୍ତି ସ୍ଥଳ ଦମ୍ପତି ।" (ପୁଣି)

"ଦୂରେ ଥିଲେ ପାଶେ ଅଛୁ ଥିବୁ ଏହା ଘେନ
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର/ଯେତେ ଦୂରେଥିଲେ ଯେ ଯାହାର ସେ ତାହାର ।"

ଟଲଷ୍ଟୟଙ୍କ ଭାଷାରେ— "Where is love there is god." ପ୍ରେମ ମାଧ୍ୟମରେ ସମଗ୍ର ବିଶ୍ୱକୁ ନିଜର କରିବା ସଙ୍ଗେ ସଙ୍ଗେ ଜଗତକୁ ସ୍ୱର୍ଗରେ ପରିଣତ କରି-ଯାଇପାରେ । ଓଡ଼ିଆ ରୀତି କାବ୍ୟରେ ତାହାର ପରୀକ୍ଷା କରାଯାଇଛି ।

ସଂଗୀତ—

ଯୁଗ ଯୁଗ ଧରି ଉତ୍କଳୀୟ ଭାଷାର ଲାଳିତ୍ୟ ଓ ସାଙ୍ଗୀତିକତା ଏ ଦେଶର ପ୍ରବୁଦ୍ଧ ଜନମାନସକୁ ଆକର୍ଷଣ କରି ଆସିଛି । ସଙ୍ଗୀତ ଶାସ୍ତ୍ରର ଅଲୌକିକ ଗୌରବ ବହୁ ପ୍ରାଚୀନ କାଳରୁ ପ୍ରତିଷ୍ଠା ଲାଭ କରି ଆସିଛି । ଅବସନ୍ନ ମନରେ ପ୍ରସନ୍ନତା ଆଣେ ସଂଗୀତର ମଧୁର ନିକ୍ୱଣ । ତେଣୁ ଭଗବାନଙ୍କର ଶ୍ରେଷ୍ଠ ଦାନ ହେଉଛି ଏ ସଙ୍ଗୀତ । ଓଡ଼ିଆ ରୀତିଯୁଗୀୟ କାବ୍ୟକାର ବିଭିନ୍ନ ରାଗ, ରାଗିଣୀ, ତାଳ, ଲୟ, ଭାବ, ବୃତ୍ତି ମାଧ୍ୟମରେ ସଙ୍ଗୀତର ମାନ ବୃଦ୍ଧି କରିଛନ୍ତି । ଏମାନେ ମୁଖ୍ୟତଃ ସାଙ୍ଗୀତିକତା ପାଇଁ ଜୟଦେବଙ୍କ 'ଗୀତଗୋବିନ୍ଦ' ଉପରେ ଦୃଷ୍ଟି ନିକ୍ଷେପ କରିଥାନ୍ତି । ଓଡ଼ିଶାର ସଙ୍ଗୀତ କଳାର ଉନ୍ନତି ପଥରେ ରାୟ ରାମାନନ୍ଦଙ୍କ 'ଶ୍ରୀ ଜଗନ୍ନାଥ ବଲ୍ଲଭ' ନାଟକ, ହଳଧର ମିଶ୍ରଙ୍କ 'ସଙ୍ଗୀତ କଳ୍ପଲତା', ପୁରୁଷୋତ୍ତମ ମିଶ୍ରଙ୍କ 'ସଂଗୀତ ନାରାୟଣମ୍', ରଘୁନାଥ ରଥଙ୍କ 'ନାଟ୍ୟ ମନୋରମା' ପ୍ରଭୃତି କାବ୍ୟର ଉଲ୍ଲେଖଯୋଗ୍ୟ ଅବଦାନ ରହିଛି । ପରବର୍ତ୍ତୀ ରୀତିଯୁଗରେ କବି ଉପେନ୍ଦ୍ର ଭଂଜ, ଅଭିମନ୍ୟୁ ସାମନ୍ତ ସିଂହାର, ଦୀନକୃଷ୍ଣ ଦାସ, କବି ସୂର୍ଯ୍ୟ ବଳଦେବ ରଥ ଆଦି ଓଡ଼ିଶୀ ସଙ୍ଗୀତ ସହିତ ସାମ୍ୟ ରକ୍ଷି ଛାନ୍ଦମାନ ରଚନା କରିଥିଲେ । ତେଣୁ ରୀତି ସାହିତ୍ୟରେ ସଙ୍ଗୀତ ଏକ ଆକର୍ଷଣୀୟ ଶୈଳୀ ରୂପେ ସ୍ୱୀକୃତି ଲାଭ କରିଥିଲା ।

ପୌରାଣିକତା— ରୀତିଯୁଗର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ପୌରାଣିକତା। ରୀତି ସାହିତ୍ୟ ସୃଷ୍ଟି ପୂର୍ବରୁ ଓଡ଼ିଆ ଭାଷାରେ ପୁରାଣ ସମ୍ବଳିତ ମହାଭାରତ, ରାମାୟଣ, ଭାଗବତ, ହରିବଂଶାଦି ବିଭିନ୍ନ କାବ୍ୟ ରଚିତ ହୋଇ ଜନାଦୃତ ହୋଇ ସାରିଥିଲା। ପୁରାଣ ଶାସ୍ତ୍ରର ଆଖ୍ୟାନ, ଉପାଖ୍ୟାନ, କଥନିକା, କିମ୍ବଦନ୍ତୀକୁ ସମ୍ମୁଖରେ ରଖି କବି-ମାନେ ଉତ୍କୃଷ୍ଟ କାବ୍ୟ କଳାର ନିଦର୍ଶନ ପ୍ରଦାନ କରିପାରିଥିଲେ। ପୁରାଣ ସମ୍ବନ୍ଧରେ କବି ଅଭିମନ୍ୟୁ କହନ୍ତି—"ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ୍ୟ କାବ୍ୟ"

ରୀତି କବି ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶବିଳାସ', 'ରାମଲୀଳାମୃତ', 'କଳାକଉତୁକ', 'ଛାନ୍ଦ-ଭୂଷଣ', 'ସୁଭଦ୍ରା ପରିଣୟ', 'ଦୀନ କୃଷ୍ଣଙ୍କ ରସକଲ୍ଲୋଳ', 'ରସବିନୋଦ', ଭକ୍ତ ଚରଣଙ୍କ 'ମଥୁରାମଙ୍ଗଳ' ଆଦି ଉଲ୍ଲେଖ ଯୋଗ୍ୟ ପୌରାଣିକ କାବ୍ୟ।

ବର୍ଣ୍ଣନା ପାଟବ— "ବାନ୍ଧି ଜାଣିଲେ ଯେପରି ମଥା ସୁନ୍ଦର" କହିଯାଣିଲେ ସେହିପରି କଥା ସୁନ୍ଦର। ଆଲୋଚ୍ୟ ବିଷୟ ସତ୍ୟ ଉପରେ ଆଧାରିତ ହେଉ ବା କଳ୍ପନା ଉପରେ ଆରୋପିତ ହେଉ, କବିର ଅପୂର୍ବ ପରିବେଷଣ ଶୈଳୀ ହିଁ ପାଠକଙ୍କୁ ପ୍ରଭାବିତ କରେ।

ରୀତିଯୁଗର ଅଧିକାଂଶ କବି ପ୍ରେମିକ ପ୍ରେମିକାଙ୍କର ରୂପ ସୌନ୍ଦର୍ଯ୍ୟ ବନ-ଉପବନ ହ୍ରଦ-ସମୁଦ୍ର, ପର୍ବତ, ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ବର୍ଣ୍ଣନାରେ ଅଲୌକିକ ଶିଳ୍ପ କଳାର ଆତ୍ମିକ ବିକାଶ ଘଟାଇ ପାରିଛନ୍ତି। କବି ଦୃଷ୍ଟିରେ ପ୍ରକୃତି ଏକ ଚେତନା ଓ ସଂଜ୍ଞାବିଶିଷ୍ଟ ଶକ୍ତି। ପ୍ରକୃତିର ବିଭିନ୍ନ ଉପାଦାନ ସହିତ ନାୟକ ନାୟିକାଙ୍କର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗ ତୁଳନା କରିବାରେ ରୀତି ଯୁଗୀୟ କବି ଅଦ୍ଭୁତ କଳ୍ପନା କୌଶଳ ଦେଖାଇଛନ୍ତି। 'ବୈଦେହୀଶ ବିଳାସରେ' କବି ରାମପ୍ରାଣସମାସୀତାଙ୍କୁ ବସନ୍ତ କାଳର ପ୍ରଭାତରୂପେ ବର୍ଣ୍ଣନା କରି କହିଛନ୍ତି—

ବଂଜୁଳ ବନେ ମଞ୍ଜୁଳବତୀ ଶୀତାକୋଳ ଅବସ୍ଥା ଧରି
ବିକଶିଲେ ମଲ୍ଲୀ-ଫୁଟେ ତନୁ ଚମ୍ପା, ମଦନ ରସରେ ପୂରି ଯେ
ବିଧୁତ ବିଧୁ ମୁଖ ଧୂଳି ମ୍ଳାନ ଯେ
ବୃଦ୍ଧି ହେଲା ପୀନଭାବ ଅନ୍ତରସ୍ଥ ସଂଯୋଗ ପାନେ ମଳିନ ଯେ"

ଏହିପରି ବର୍ଣ୍ଣନା ରୀତି ଯୁଗର ବହୁ କାବ୍ୟରେ ବିସ୍ତୃତ ଭାବରେ ଦେଖାଯାଏ।

ଭକ୍ତିମତା—

ଭକ୍ତଶାସ୍ତ୍ର 'ଶାଣ୍ଡିଲ୍ୟସୂତ୍ର'ରେ ଭକ୍ତିର ସ୍ୱରୂପ ସଂପର୍କରେ କୁହାଯାଇଛି— "ସା ପରାନୁରକ୍ତିରୀଶ୍ୱରେ" ଅର୍ଥାତ୍ ଭଗବାନଙ୍କ ନିକଟରେ ଭକ୍ତ ଅନ୍ତରର ଅନାବିଳ ଅନୁରକ୍ତି ହିଁ ଭକ୍ତି । ଭଗବତ୍ ପ୍ରାପ୍ତି ନିମିତ୍ତ ଭକ୍ତ ବିଭିନ୍ନ ପ୍ରକାର ମାର୍ଗ ଗ୍ରହଣ କରି-ଥାଏ । 'ଶ୍ରୀମଦ୍‌ଭାଗବତ'ରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଭକ୍ତିର ବିଭିନ୍ନ ମାର୍ଗ ପ୍ରଦର୍ଶନ କରାଇ ଶେଷରେ 'ଭକ୍ତିଯୋଗ'ର ଶୀର୍ଷତା ପ୍ରତିପାଦନ କରି କହିଛନ୍ତି—

"ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ"

ଋଗ୍‌ବେଦ, ବୃହଦାରଣ୍ୟକ, ମୁଣ୍ଡକୋପନିଷଦ, ବ୍ରହ୍ମସଂହିତା, ଶାଣ୍ଡିଲ୍ୟସୂତ୍ର, ବ୍ରହ୍ମବୈବର୍ତ୍ତ ପୁରାଣ, ଭକ୍ତିରସାମୃତ ସିନ୍ଧୁ, ଉଜ୍ଜ୍ୱଳ ନୀଳମଣି ପ୍ରଭୃତିରେ ଭକ୍ତିର ଉତ୍କର୍ଷ ପ୍ରତିପାଦିତ ହୋଇଛି । ଏହି ଭକ୍ତିଧାରାକୁ କେନ୍ଦ୍ର କରି ଓଡ଼ିଆ ରୀତିସାହିତ୍ୟରେ ଗଢ଼ି ଉଠିଛି କୃଷ୍ଣ ସାହିତ୍ୟ, ରାମ ସାହିତ୍ୟ ଓ ଜଗନ୍ନାଥ ସାହିତ୍ୟର ବିରାଟ ମନ୍ଦିରମାଳା ।

ରୀତିଯୁଗୀୟ ଅଧିକାଂଶ କବି ନିଜ ନିଜ କାବ୍ୟକୃତିରେ ବିଷୟବସ୍ତୁର କ୍ରମପ୍ରବାହ ଅପେକ୍ଷା ବାଗ୍‌ବିଦଗ୍‌ଧତା ଉପରେ ଅତ୍ୟଧିକ ଦୃଷ୍ଟି ନିକ୍ଷେପ କରିଛନ୍ତି । ତେବେ ସେମାନଙ୍କ ରଚନାରେ ରସବୋଧ ଅପେକ୍ଷା ଶିଳ୍ପକଳା ପ୍ରାଧାନ୍ୟ ଲାଭ କରିଛି । ତେଣୁ ଏ ଯୁଗର କାବ୍ୟ ଆବେଗ ଓ ଆବେଦନଧର୍ମୀ ନହୋଇ ପ୍ରଦର୍ଶନଧର୍ମୀ ହୋଇ ଉଠିଛି । ବହୁ ବୈଚିତ୍ର୍ୟ ସତ୍ତ୍ୱେ ରୀତିଯୁଗୀୟ କାବ୍ୟ ଏହି କାରଣରୁ କ୍ରମଶଃ ଜନପ୍ରିୟତା ହରାଇ ବସିଛି ।



Critics are like brushers of noble men's clothes.

—George Herbert

# ଶ୍ରୀ ରମାକାନ୍ତ ରଥଙ୍କ କାବ୍ୟମାନସ : ଏକ ଦୃଷ୍ଟିପାତ

• ଶ୍ରୀ ଯାଦବାନନ୍ଦ ବେହେରା

ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ କବିତା କ୍ଷେତ୍ରରେ ଶ୍ରୀ ରମାକାନ୍ତ ରଥ ଜଣେ ଶକ୍ତିଶାଳୀ କବି ଭାବରେ ପ୍ରତିଷ୍ଠାର୍ଜନ କରିପାରିଛନ୍ତି । ସାଂପ୍ରତିକ ଜୀବନର ଯନ୍ତ୍ରଣା-ବୋଧ ଓ ମାନସିକ ସଂକଟବୋଧ ତାଙ୍କ କବିତାର ମୁଖ୍ୟ ଉପଜୀବ୍ୟ ହେଲେହେଁ ତହିଁରେ ଶାଶ୍ୱତ ଜୀବନର ସନାତନ ଭାବସତ୍ତା ଅନ୍ତର୍ଗର୍ଭିତ ଏବଂ ସମୟ ଓ ମୃତ୍ୟୁର ଶୀତଳ ଆତଙ୍କକୁ ନିର୍ବିକାର ଚିତ୍ତବୃତ୍ତି ନେଇ ଅତିକ୍ରମ କରିଯିବା ନିମିତ୍ତ ଚେତନାଦୀପ୍ତ ଆହ୍ୱାନ ପ୍ରତିଟି ପାଠକର ସମ୍ବିତ୍‌କୁ ସ୍ପର୍ଶ କରେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରବର୍ତ୍ତୀ ଭାରତୀୟ ତଥା ଉତ୍କଳୀୟ ଜୀବନଜିଜ୍ଞାସା ଆଉ ଆଞ୍ଚଳିକ ସୀମା ମଧ୍ୟରେ ଆବଦ୍ଧ ନୁହେଁ । ଏହା ଆନ୍ତର୍ଜାତିକ ଜୀବନଜିଜ୍ଞାସାର ଏକ ସମନ୍ୱିତ-ପ୍ରତିଲିପି । ଏହି ଜୀବନ-ଜିଜ୍ଞାସାର ସ୍ୱରହିଁ ଆଧୁନିକ କବିତାର ମର୍ମବାଣୀ । ଏ କବିତାର ମଣିଷ ଆନ୍ତର୍ଜାତିକ ମଣିଷ । ଏ କବିତାର ହସ ଅଶ୍ରୁ-ପ୍ରେମ ଓ ବିରହ- ସାର୍ବଜନୀନ; ଏ କବିତାର ସଂକଟ-ବୋଧ ଆନ୍ତର୍ଜାତିକ ସଂକଟବୋଧ । ଶ୍ରୀଯୁକ୍ତ ରଥ ଏହି ଆନ୍ତର୍ଜାତିକ ଭାବଚେତନା ଓ ତରଙ୍ଗକୁ ତାଙ୍କର କାବ୍ୟ-କାନ୍‌ଭାସ୍ ଉପରେ ରୂପଦେବାରେ ବେଶ୍ ସଫଳ ହୋଇ ପାରିଛନ୍ତି ।

ସଚ୍ଚିଦାନନ୍ଦ ପ୍ରଥମେ ସ୍ୱାଧୀନତାର ପ୍ରାକ୍‌କାଳରେ ସମାଜ ଅଭିମୁଖୀ ଭାବଧାରା ନେଇ ଯେଉଁ କାବ୍ୟଜିଜ୍ଞାସା ସୃଷ୍ଟି କରିଥିଲେ, ତାହା ସ୍ୱାଧୀନତା ପରବର୍ତ୍ତୀକାଳରେ ବ୍ୟକ୍ତି ଅଭିମୁଖି କାବ୍ୟଜିଜ୍ଞାସାରେ ରୂପାନ୍ତରିତ ହୋଇଗଲା ଏବଂ 'କବିତା ୧୯୬୨' ପରଠାରୁ ଏହି କାବ୍ୟ ପୁରୁଷର ଅବକ୍ଷୟ (decadence) ଦେଖାଦେଲା । ତାଙ୍କପରେ କବି ଗୁରୁପ୍ରସାଦ ଆନ୍ତର୍ଜାତିକ ଯନ୍ତ୍ରଣାବୋଧକୁ ରୂପ ଦେଲେ କବିତା ମାଧ୍ୟମରେ । ତାଙ୍କର କବିତାରେ ଯନ୍ତ୍ରଣା ଅଛି, ଅସହାୟତା ଅଛି, କ୍ଷୟିଷ୍ଣୁ ସଂସ୍କୃତିର ପ୍ରତିରୂପ ଅଛି । ସର୍ବୋପରି ଅଛି ମୃତ୍ୟୁବୋଧ ଓ ଭଗବତ୍ ଚେତନା । ଏହି ପ୍ରକାଶଭଙ୍ଗୀ ଗୀତିମୟ ଓ

ସୁଲଳିତ । କିନ୍ତୁ ତାଙ୍କ ପରେ ଶ୍ରୀଯୁକ୍ତ ରମାକାନ୍ତ ରଥ ଯେଉଁ କାବ୍ୟ ଜିଜ୍ଞାସା ସୃଷ୍ଟି କଲେ ତାହା ସଂପୂର୍ଣ୍ଣ ନୂତନ । ଏଇ କାବ୍ୟ ଜିଜ୍ଞାସାର ସ୍ୱର ସହିତ ରାଉତରାୟ ବା ଗୁରୁପ୍ରସାଦ-କାବ୍ୟ ଜିଜ୍ଞାସାର ସଂପର୍କ ଅତ୍ୟନ୍ତ କ୍ଷୀଣ । ଶ୍ରୀରଥ ପୂର୍ଣ୍ଣତଃ ପାଶ୍ଚାତ୍ୟ-କାବ୍ୟ ଭାବନାକୁ ମୁଖ୍ୟ ଉପାଦାନ ଭାବେ ଗ୍ରହଣ କରି କବିତା ରଚନା କରିଛନ୍ତି ଏବଂ କଳା-କମନୀୟ ଶିଳ୍ପ-ଭାଷ୍ୟ ମଧ୍ୟ ଦେଇ ଚିରନ୍ତନ କାବ୍ୟ-ସତ୍ୟ ପ୍ରଦାନ କରିବା ପାଇଁ ଉଦ୍ୟମ କରିଛନ୍ତି ।

ଷଷ୍ଠ ଦଶକର ଦ୍ୱିତୀୟାର୍ଦ୍ଧରୁ ତାଙ୍କର କବିତା ରଚନା ଆରମ୍ଭ ହୁଏ ଏବଂ ପ୍ରଥମ ପର୍ଯ୍ୟାୟରେ ଏହି କାବ୍ୟ ଭାବନା ସାମାଜିକ ଯନ୍ତ୍ରଣାବୋଧକୁ ନେଇ ଆତ୍ମପ୍ରକାଶ କରିଛି । ମାତ୍ର ସେଥିରେ କବି-ସତ୍ତା ନିର୍ଜନ ଓ ନିଃସଙ୍ଗ । ପ୍ରତ୍ୟେକ କବିତାରେ ବ୍ୟକ୍ତି ନିରପେକ୍ଷ ଭାବପରିବର୍ତ୍ତେ ବ୍ୟକ୍ତି-ସାପେକ୍ଷଭାବ ପ୍ରକଟିତ । ତେଣୁ କବିତା ତାଙ୍କର ସମାଜିକ ଆଳାପ ନୁହେଁ, ମାତ୍ର ବ୍ୟକ୍ତିଗତ ସ୍ୱଗତୋକ୍ତି । ପ୍ରତିଟି କବିତାରେ ଭରି ରହିଛି ଦୁର୍ବିନୀତ ଅହଂ-ର ଓଁକାର । 'କେତେ ଦିନର' (୧୯୬୨)ଠାରୁ ଆରମ୍ଭ କରି 'ଅନେକ କୋଠରୀ' (୧୯୬୭) 'ସନ୍ଦିଗ୍ଧ-ମୃଗୟା' (୧୯୭୧) ଓ 'ସପ୍ତମ ଋତୁ' (୧୯୭୭) ପର୍ଯ୍ୟନ୍ତ ତାଙ୍କ କବିତାରୁ ଏହି ନିଜସ୍ୱ ଦ୍ୟୁତି ଓ ଦୀପ୍ତିକୁ ଦେଖିବାକୁ ମିଳିଥାଏ । 'କେତେଦିନର' ଯଦିଓ ପ୍ରାରମ୍ଭିକ କବିତା ପୁସ୍ତକ, ତଥାପି ଏଥିରେ ତାଙ୍କର ଦରଦୀ କବିପ୍ରାଣର ପରିଣତ ଚିନ୍ତା-ଚେତନା ନିହିତ ।

ଶ୍ରୀ ରଥଙ୍କ କାବ୍ୟ ପୁରୁଷ ଷଷ୍ଠ ଦଶକର ମଧ୍ୟଭାଗରୁ ଅଷ୍ଟ-ଦଶକ ଶେଷ ପର୍ଯ୍ୟନ୍ତ, ଦୀର୍ଘ ପଚିଶ ବର୍ଷର ସମୟ ସୀମା ମଧ୍ୟରେ ଗତିଶୀଳ । ଏହାରି ମଧ୍ୟରେ ସେ ମୃତ୍ୟୁ, ପ୍ରେମ ଓ ଈଶ୍ୱର ସଂପର୍କିତ ଭାବଧାରାକୁ କେନ୍ଦ୍ର କରି କବିତା ରଚନା କରିଅଛନ୍ତି । ଗ୍ରନ୍ଥିଗ୍ରନ୍ଥି କବିତାର ଭାବଗୁମ୍ଫନ ଭିତରେ କାବ୍ୟ ପୁରୁଷ ଉପଲବ୍ଧି କରିଛି—ଜୀବନ ଶୂନ୍ୟ, ଅର୍ଥହୀନ, ବିଚ୍ଛିନ୍ନ ଏବଂ ଅତ୍ୟନ୍ତ ନିଷ୍ଠୁର । ତେଣୁ କାବ୍ୟ ପୁରୁଷ ମୃତ୍ୟୁ ଚେତନାର ଅଦୃଶ୍ୟ ଦଂଶନରେ ଚିତ୍କାର କରିଉଠିଛି । ଅନେକ ସମୟରେ ମନେହୁଏ—ଶ୍ରୀରଥଙ୍କର କାବ୍ୟସ୍ୱର ମୁଖ୍ୟତଃ ମୃତ୍ୟୁ ଚେତନା ମିଶ୍ରିତ ଏକ ଅଶ୍ରୁ-ସଜଳ ଆକାଂକ୍ଷା ! ଏ ସତ୍ୟ 'କେତେଦିନର'ଠାରୁ ଆରମ୍ଭ କରି 'ସପ୍ତମଋତୁ' ପର୍ଯ୍ୟନ୍ତ ବିଭିନ୍ନ କବିତାରେ ଉପଲବ୍ଧି କରିହୁଏ ।

'କେତେଦ୍ୱାନର' କବିତା ପୁସ୍ତକରେ 'ବାଘାବଲୋକନ', 'ଲଣ୍ଠନ', 'ଗଛୁଡ଼', 'ଭସ୍ମ' ଓ 'ଶଲ' ଆଦି କବିତାରୁ ଏହାର ପରିଚୟ ଅଧିକ ସ୍ପଷ୍ଟ ହୋଇଉଠିଛି । କାବ୍ୟ ପୁରୁଷଙ୍କର ଏହି ମୃତ୍ୟୁ ସଂପର୍କିତ ସଂଶୟାଚ୍ଛନ୍ନ ଜୀବନଜିଜ୍ଞାସା କ୍ରମେ 'ସପ୍ତମ ଋତୁ' ବେଳକୁ ଦ୍ୱନ୍ଦ୍ୱପୂର୍ଣ୍ଣ ଓ ଦ୍ୱିଧାଗ୍ରସ୍ତ ହୋଇପଡ଼ିଛି । ମଣିଷର ଭାଗ୍ୟ ପ୍ରସଙ୍ଗହିଁ ତାଙ୍କ କବିତାର ମୁଖ୍ୟ ସ୍ୱର । ଏଇ ଭାଗ୍ୟ ସଂପର୍କରେ ଅବହିତ ହେଉ ହେଉ କାବ୍ୟ ପୁରୁଷ ବାରମ୍ବାର ମୃତ୍ୟୁକୁ ହିଁ ଭେଟିଛି । ଏହା ଫଳରେ କବି ଆଧୁନିକ ମଣିଷର ନିଃସଙ୍ଗ ବ୍ୟର୍ଥତା-ପୀଡ଼ିତ ଅବସ୍ଥା ମଧ୍ୟଦେଇ ଆତ୍ମୋପଲବ୍ଧି କରିଅଛନ୍ତି । ତାଙ୍କ କବିତାରେ ମୃତ୍ୟୁଚେତନା ଅମୋଘ । ଏହି ମୃତ୍ୟୁବୋଧରୁ ଉତ୍ତରଣ କରିଚିବାର ପ୍ରୟାସଦୁର୍ବଳ ଓ ଦ୍ୱିଧାଗ୍ରସ୍ତ । ପ୍ରାଚୀନ ଭାରତୀୟ କବିତାରେ ମୃତ୍ୟୁ ଭିତରେ ଉତ୍ତରଣୀୟ ଚିନ୍ତା ପ୍ରାଧାନ୍ୟ ଲଭ କରିଥିଲା, କିନ୍ତୁ ଆଧୁନିକ ଓଡ଼ିଆ କବିତାରେ ଏହି ଉତ୍ତରଣୀୟ-କ୍ଷମତା ଅତ୍ୟନ୍ତ ଦୁର୍ବଳ ମନେହୁଏ । ଶ୍ରୀ ରଥ ନିଜର ଉଦ୍ଭଟ ଅସ୍ତିତ୍ୱ ସଂପର୍କରେ ଅତ୍ୟଧିକ ସଚେତନ ହେଉ ମୃତ୍ୟୁକାତର ହୋଇପଡ଼ିଛନ୍ତି ଓ ପ୍ରେମିକାର ନିବିଡ଼ ଆଶ୍ଳେଷ ମଧ୍ୟରେ ଥାଇ ମଧ୍ୟ ସେ ଯେପରି ମୃତ୍ୟୁର ପଦ ଧ୍ୱନି ଶୁଣି ପାରୁଛନ୍ତି । ତାଙ୍କ ଗୃହପଟରେ ଯେପରି ମୃତ୍ୟୁର ଲୋମଶ ହାତ ତାଙ୍କୁ କବଳିତ କରିବାକୁ ଚେଷ୍ଟା କରୁଛି ।

'ଅନେକ କୋଠରୀ', 'ସନ୍ଧିଗ୍ଧ ମୃଗୟା' ବା 'ସପ୍ତମ ଋତୁ'ର ଯେ କୌଣସି କବିତାରୁ ଏହାର ପରିଚୟ ମିଳେ । 'ବାଘଶିକାର' ଏକ ଦୀର୍ଘ କବିତା ଓ ଏଥିରେ ସେଇ ମୃତ୍ୟୁବୋଧ ଅତ୍ୟନ୍ତ ସ୍ପଷ୍ଟ ।

"ବାଘ ଆସେ ଗର୍ଜି ଗର୍ଜି
ଯେପର୍ଯ୍ୟନ୍ତ ଗିଳିନାହିଁ
ଗିଳିବାକୁ ଟମର ଶରୀର
ସେପର୍ଯ୍ୟନ୍ତ ବାଘ ଦେଖିପାର"

[ବାଘ ଶିକାର]

ଏ ବାଘ ସେଇ ମୃତ୍ୟୁର ପ୍ରତୀକ । କେବଳ ଏତିକି ନୁହେଁ, 'ସନ୍ଧିଗ୍ଧ ମୃଗୟା'ରେ ମଧ୍ୟ ମୃତ୍ୟୁକାତର ବିଷାଦଭାବନା ଅତିଶୟ ସ୍ପଷ୍ଟ ହୋଇ ଉଠିଛି । ସବୁଠି ଯେପରି ସେଇ ମୃତ୍ୟୁର କଳାଛାଇ ଓ କାବ୍ୟ ପୁରୁଷ ଏ ବିଷୟରେ ଅତ୍ୟଧିକ ସଚେତନ ହୋଇ ପଡ଼ିଛନ୍ତି । 'ହେମଲତାର ମୃତ୍ୟୁ', 'ପବନ', 'ସନ୍ଧ୍ୟା', 'ମାଷ୍ଟ୍ରାଣୀ', 'ହୃଦସ୍ପେ-ଶ୍ୱେରୀ', 'ବାର୍ଦ୍ଧକ୍ୟ', 'ଅନନ୍ତ ଶୟନ', 'ଅତିଥିସତ୍କାର' ଓ 'କଳାହଂସ'ରେ ମରଣର ରକ୍ତିପିଜାଜନିତ ବେଦନାବିଦ୍ଧ କବି-ବାଣୀ ପ୍ରତ୍ୟେକ ସଂବେଦନଶୀଳ ପାଠକର ହୃଦୟ ଓ ମସ୍ତିଷ୍କକୁ ଛୁଇଁ-ଛୁଇଁ ଯାଏ ।

"କି କଦର୍ଯ୍ୟ ସ୍ୱପ୍ନ ମୋତେ/ ବାରମ୍ବାର ବାଧ୍ୟ କରୁଥିଲା ଖାଇବାକୁ ନାନାଦ୍ରବ୍ୟ/ ଯାହା ମୋତେ ଭଲ ଲାଗେ ନାହିଁ । / ସ୍ତ୍ରୀଲୋକଟେ ହଲାଇଥା କାଠହାତ ଘଡଘାଗ୍/ ମୋତେ ବାନ୍ତି ବାନ୍ତି ଲାଗିଲା ଓ ମନେ ହେଲା ଆତୁର ଅନେକ । X X ମୁଁ ଦେଖୁଛି ମାତ୍ର ଏକ—ତୀର୍ଥସ୍ଥାନେ/ ଅଶୁଭ ସୂଚକ ସବୁ ସ୍ୱପ୍ନ ।" (ହୃଦସ୍ପେଶ୍ୱଶ୍ୱ)

"କେଡ଼େ ଲାଜ ପଡ଼ିଯିବା ଶୁଣକାଠ ମେଲ,
କେଡ଼େ ଲାଜ !
ଲଙ୍ଗଳା ମୁକୁଳା ହୋଇ ପଡ଼ିଯିବା କେଡ଼େ ଲାଜ ! !
ଆଣ୍ଠୁରେ ଆଣ୍ଠୁକୁ ଯାକି / ଦୁଇ ଗୋଡଯାକ ଟେକି ଦେଲି ଗ୍ରୀବ ପାଖକୁ
ଓ ମୁଣ୍ଡକୁ ନୁଆଁଇ ଦେଲି ଜଙ୍ଘ ଆଡେ/ ଓ ପେଟ ତଳକୁ ହାତରେ ଘୋଡ଼ାଇ
ଦେଲି / କେଡ଼େ ଲାଜ, କେଡ଼େ ଲାଜ ! ! ! ଯେବେ ସେ ଶୁହିଁଲା ମୋ ଆଡ଼କୁ /
ମୋ ଦେହରେ ଦରଜ ନଥିଲା ।" (ବାର୍ଦ୍ଧକ୍ୟ)

ଉପରୋକ୍ତ ପଂକ୍ତି ଦୁଇଟିରୁ ଗୋଟିକରେ ମୃତ୍ୟୁର ପଦଧ୍ୱନି ଓ ଅନ୍ୟଟିରେ ଶବସଂସ୍କାର କାଳୀନ ଅବସ୍ଥା ବର୍ଣ୍ଣନା-ବେଶ୍ କଳାତ୍ମକ ହୋଇ ପାରିଛି କବି ଶ୍ରୀରଥ ସମସ୍ତ କବିତା-ରେ ଏହି ମୃତ୍ୟୁକୁ ହିଁ ପ୍ରାଧାନ୍ୟ ଦେଇ ଅଛନ୍ତି ଓ ମୃତ୍ୟୁ ଚେତନା ଭିତରେ—କବିଙ୍କର ବ୍ୟକ୍ତିସତ୍ତା ଅତ୍ୟନ୍ତ ନିଃସଙ୍ଗ ଓ ବିପର୍ଯ୍ୟସ୍ତ ହୋଇପଡ଼ିଛି । କାବ୍ୟ-ପୁରୁଷ ସତେ ଯେପରି ଏକ ବୃଦ୍ଧ । 'ଅତୀଥି ସତ୍କାର' ପରି କବିତାରେ ପ୍ରତ୍ୟକ୍ଷ ମୃତ୍ୟୁର ଅନୁଭୂତ ଥିଲେ ହେଁ ଅନ୍ୟାନ୍ୟ କବିତା ଗୁଡ଼ିକରେ ଏହା ପରୋକ୍ଷ । କବି ଶ୍ରୀ ରଥ ତାଙ୍କର ମୃତ୍ୟୁ ଚେତନା ଭିତରଦେଇ ଆଧୁନିକ ଯନ୍ତ୍ରଣାକ୍ତ ଜୀବନର ଚିତ୍ରକୁ ପ୍ରକାଶ କରିଛନ୍ତି । ଆଜିର ମଣିଷ ଯଦିଓ ଜୀବିତ— ତା' ଭିତରର ମାନବିକ ସତ୍ତା ଅର୍ଦ୍ଧମୃତ । ସବୁଠାରୁ ଦୁଃଖ ଓ ଅସ୍ତ୍ରାର ବିଷୟ ଏହିଯେ—ଜୀଇଥାଇବି ସେ ମରୁଛି—ମରୁଥାଇବି ସେ ଜୀଉଁଛି ! ସର୍ବତ୍ର ସେଇ ଜୀବନ୍ତ ମରଣର କ୍ଲାନ୍ତି, ନୈରାଶ୍ୟ ଓ ବିତୃଷ୍ଣା । ସର୍ବତ୍ର ଯେପରି ବିଧବାର ନିଷ୍ଫଳ ଅନ୍ଧକାର ! !

"ଗିଧ ପକ୍ଷୀ ରଡ଼ି ଛୁଡ଼େ
ପ୍ରାର୍ଥନାର ପଛେ ପଛେ ମୋର
ତା ରଡ଼ି ଗୋଡ଼ାଇଯାଏ ନଇ ମୁହାଣକୁ ।

ଏବଂ ସେଇ ଶୂନ୍ୟତାରେ                    ଯେଉଁଠାରେ କିଛି ହେଲେ ନାହିଁ
ଦେହହୁଏ ସ୍ମୃତି                    ସ୍ମୃତି ହୁଏ ନଦ, ବୁଢା ପହଁଗବାଲିର ।''
(କଳାହଂସ)

''ଆମ ଦେହେ ଫଳ ନାହିଁ,/ଓ ଶୋଚନା ଠପ୍ ଠପ୍ ହୋଇ ବୋହିଯାଏ
ଫ୍ରେମ ବନ୍ଧା କୁନି କୁନି ଫଟୋ ମାନଙ୍କରେ ।''
[ଧାନକ୍ଷେତ]

କାବ୍ୟ ପୁରୁଷ ସର୍ବଂଶ ଉପଲବ୍ଧି କରିଛି ଜୀବନ ଶୂନ୍ୟଗର୍ଭ । ଏ ଜୀବନରେ ସ୍ୱପ୍ନ ଅଛି, ପ୍ରତ୍ୟାଶା ଅଛି, କିନ୍ତୁ ସମ୍ଭାବନା ନାହିଁ । ତେଣୁ ଜୀବନ ବଡ ଉଦ୍ଦେଶ୍ୟହୀନ ଓ ଅସହାୟ । ଶ୍ରୀ ରଥଙ୍କର ମୃତ୍ୟୁବୋଧ ନେତିବାଚକ । ମୃତ୍ୟୁ ଭିତର ଦେଇ ସେ ଅନ୍ୟ କୌଣସି ସତ୍ୟକୁ ଦେଖିନାହାନ୍ତି । ତଥାପି ସେ କାଳ ସଚେତନ । 'ବର୍ଷାଋତୁ', 'ବସନ୍ତଋତୁ', 'ଅପରାହ୍ଣ', 'ସମୟକୁ ସ୍ୱରେଟି ସ୍ୱେରଗୃହାଣୀ', 'ସନ୍ଧ୍ୟାବେଳର ଦୃଶ୍ୟ', ଆଦି କବିତାରୁ ଏହି କାଳ ସଚେତନତା ସଂପର୍କରେ ସୂଚନା ମିଳେ । ଅସ୍ତିତ୍ୱବାଦ ପ୍ରଭାବରେ ଶ୍ରୀ ରଥ ମୃତ୍ୟୁବୋଧ ସଂପର୍କରେ ସଚେତନ ହୋଇ ଉଠିଛନ୍ତି ଓ ନିଜର ମୃତ୍ୟୁକୁ ବହୁ ପୂର୍ବରୁ ଉପଲବ୍ଧି କରିଛନ୍ତି । ତାଙ୍କ କବିତାରେ ଯଦିଓ W-Yeats ଓ ଡମାସଙ୍କ ପ୍ରଭାବ ପଡ଼ିଛି, ତଥାପି T.S Eliotଙ୍କର କାବ୍ୟାଦର୍ଶ ବିଶେଷ ପ୍ରଭାବ ବିସ୍ତାର କରିଛି । 'The Wasteland' ତାଙ୍କୁ ପ୍ରଭାବିତ କରିଥିଲେ ହେଁ ତା'ର ପରବର୍ତ୍ତୀ ସୃଷ୍ଟି 'ଫୋର୍ କ୍ୱାଟରସ୍', 'ହରକ୍', 'ଦ' ଫାମିଲି-ରି ୟୁନିଅନ' ଆଦି କାବ୍ୟ ଓ ନାଟକାବଳୀ ତାଙ୍କୁ ଅଧିକ ପ୍ରଭାବିତ କରିଛି ! ଶ୍ରୀ ରଥଙ୍କର କାବ୍ୟନାୟକ ବୃଦ୍ଧ । Eliotଙ୍କର କାବ୍ୟନାୟକ ମଧ୍ୟ ବୃଦ୍ଧ । ଉଭୟଙ୍କ ଭିତରେ ଏହି ବାର୍ଦ୍ଧକ୍ୟର ସାମ୍ୟ ରକ୍ଷା କରାଯାଇଛି । କିନ୍ତୁ ଏଲିଅଟଙ୍କ କାବ୍ୟନାୟକ ଆଧ୍ୟାତ୍ମିକ ଭାବଧାରାର ଅତଲସ୍ପର୍ଶତା ଯୋଗୁଁ ବୃଦ୍ଧ ହୋଇଥିଲାବେଳେ ଶ୍ରୀ ରଥଙ୍କର କାବ୍ୟନାୟକ ଆଧ୍ୟାତ୍ମିକ ପଙ୍ଗୁତା ଯୋଗୁହିଁ ବୃଦ୍ଧ ଓ ଅସହାୟ ହୋଇ ପଡ଼ିଛି । ଶ୍ରୀ ରଥ ଅତିମାତ୍ରାରେ ମୃତ୍ୟୁ ସଚେତନ ହୋଇଥିବାରୁ ସେ ଅନୁଭବ କରିଛନ୍ତି ମୃତ୍ୟୁ ହିଁ ଧ୍ରୁବସଖା । ଯନ୍ତ୍ରଣା ଓ ଦୁଃଖ ଜୀବନର ଚିରସାଥୀ । ଏ ଜୀବନ ଓ ଜଗତ Valley at deying stars । 'ସନ୍ଦିଗ୍ଧ ମୃଗୟା' ପର୍ଯ୍ୟନ୍ତ ଶ୍ରୀ ରଥ ମୃତ୍ୟୁକୁହିଁ ଏକମାତ୍ର ସତ୍ୟବୋଲି ଗ୍ରହଣ କରିଛନ୍ତି । ଜାଗରଣ ଓ ସ୍ୱପ୍ନ ଅବସ୍ଥାରୁ ସୁଷୁପ୍ତି ଅବସ୍ଥାକୁ ଯିବାପାଇଁ କାବ୍ୟମାନସ ଆଗ୍ରହ ପ୍ରକାଶ କରିଛି, କିନ୍ତୁ ପାରିନାହିଁ । 'ସପ୍ତମ ଋତୁ'ର କାବ୍ୟ ବଳୟ ଭିତରେ ମୃତ୍ୟୁ କିନ୍ତୁ

ଅତୀନ୍ଦ୍ରିୟ ଉତ୍ତରଣରେ ରୂପାନ୍ତରିତ ହୋଇଉଠିଛି । ଶ୍ରୀ ରଥଙ୍କର ଏପ୍ରକାର ଜୀବନ-ଜିଜ୍ଞାସାର ଉତ୍ସ-ମୂଳ ଏକଅଷ୍ଟ ଓ ତାଙ୍କର ପ୍ରେରଣାରେ ସେ ଏତାଦୃଶ ଆଧ୍ୟାତ୍ମିକ ଆକୁତିକୁ ପ୍ରକାଶ କରିବାରେ ସମର୍ଥ ହୋଇ ପାରିଛନ୍ତି । 'ବାଘ ଶିକାର' ମଧ୍ୟଦେଇ ମୃତ୍ୟୁର ଉତ୍ତରଣୀସ୍ଥ ସତ୍ତାକୁ କାବ୍ୟପୁରୁଷ କ୍ରମଶଃ ଉପଲବ୍ଧି କରି ଆସିଛି ଓ 'ସପ୍ତମ ଋତୁ'ରେ ତା'ର ପୂର୍ଣ୍ଣତା ଦେଖାଦେଇଛି । ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହିନେ— ଶ୍ରୀ ରଥ ଅଧିକ ପରିମାଣରେ ମୃତ୍ୟୁ ସଚେତନ ହେଲେହେଁ ସେ ମୃତ୍ୟୁର କବି ନୁହନ୍ତି । ବରଂ ସେ ପ୍ରେମର କବି । କାରଣ ଅଧିକ ମାତ୍ରାରେ ତାଙ୍କର ମନର ଧର୍ମ 'ପ୍ରେମ' ହୋଇଥିବାରୁ ସେ ବାରମ୍ବାର ମୃତ୍ୟୁକୁ ଭେଟିଛନ୍ତି; ଉପଲବ୍ଧି କରିଛନ୍ତି । ଫଳରେ ତାଙ୍କ କବିତାରେ ପ୍ରେମ ଓ ମୃତ୍ୟୁ ପରସ୍ପର ପରିପୂରକ । ସ୍ଥଳବିଶେଷରେ ଏ ଦୁଇଟି ଚେତନା ଯେପରି ପରସ୍ପରକୁ ମୁହାଁମୁହିଁ ପ୍ରତିଦ୍ୱନ୍ଦ୍ୱୀ ଭାବରେ ଠିଆ ହୋଇଛନ୍ତି । ସତେ ଯେପରି ପରସ୍ପର ପରସ୍ପରକୁ ଗିଳିଦେବେ । 'ସମସ୍ତଙ୍କୁ—ଗୃହେଷ୍ଟି ଗୃହିଣୀ' କବିତାରୁ ଏହାର ଦୃଷ୍ଟାନ୍ତ ନିଆଯାଇପାରେ — ......

"ତମେ ମୋ ବିକଳ ଯାହା କ୍ଷୟେନାହିଁ
ତମେ ମୋ ସଙ୍ଗୀତ ଯାହା ଶେଷ ହୁଏନାହିଁ ।
ଅକସ୍ମାତ୍ ମୋ ଦେହରେ ଅଶିବ ଲକ୍ଷଣ ଦିଶେ ।
ତମେ ହାତ ମେଲିଇବ/ତମ ପେଟ ବର୍ଷା ଓଦା-ବଣ,
ହସ ହସ ମହାକାଳ/ଲୁଚିଛନ୍ତି ଅସତର୍କ ମୃତ୍ୟୁ ଉଦ୍ଦେଶ୍ୟରେ ।"

ଏଥିରେ ପ୍ରେମ ଓ ମୃତ୍ୟୁ-ଦୁଇଟି ବିପରୀତ ଚେତନା ସତେ ଯେପରି ପରସ୍ପର ସାମ୍ନାସାମ୍ନି । ସକଳ ବିଚ୍ଛିନ୍ନତାବୋଧକୁ ଅତିକ୍ରମ କରି ମଣିଷ କିପରି ତା'ର ଅହଂ-ସର୍ବସ୍ୱଜୀବନରୁ ଉତ୍ତୀର୍ଣ୍ଣ ହୋଇ ପ୍ରୀତିପୂର୍ଣ୍ଣ ମିଳନ ସଂପାଦନ କରିବ— ଏହାହିଁ ସତେ ଯେପରି କବି ଶ୍ରୀ ରଥଙ୍କର କାବ୍ୟପୁରୁଷର ଅନ୍ତର୍ବାଣୀ 'ଅନନ୍ତଶୟନ', 'ହୃଦୟେଶ୍ୱରୀ', 'ମାଷ୍ଟ୍ରାଣୀ', 'ରାଣୀ' ଆଦି କବିତାରୁ ଏ ଉକ୍ତିର ସତ୍ୟତା ବେଶ୍ ଉପଲବ୍ଧି କରିହେବ ।

ଯଥା :— ସେ ଏକ ପୃଥକ ଋତୁ / ତାହାପରି ଋତୁ ଏ ପର୍ଯ୍ୟନ୍ତ / ସେହିନିଠୁଁ ଆସିନାହିଁ/ଲକ୍ଷ ଲକ୍ଷ ତା'ଙ୍କ ଗ୍ରନ୍ଥିଆ ତଳେ, ଜଣେ ଆସି ପିନ୍ଧି ଧଳାଶାଢ଼ୀ, ତୋରିଆ ବ୍ଲାଉଜ୍/କନ୍ଧାଳେକେ ନୀଳଦିଶେ/ଖସିଯା'ନ୍ତି ଅସଂଖ୍ୟ ବୋହେଇ ବୋଇତଙ୍କ ସ୍ମୃତି/ ତା'ର ଧୋବ ଆଖି କଣ୍ଟଳ ବୃନ୍ତରେ X X X X X X X

ପୁଣି ସେ ଏକ ପୃଥକ ଋତୁ/ଆଜି କନ୍ତୁ ନୀରବ ନଦରେ,'ସେ ଆସନ୍ତି ଦେହାଲଗି

ସେଦିନର ଅଦିଆ ଚୁମ୍ବନ/ସେଦିନ ନଦେଇଥିବା ଆଲିଙ୍ଗନ, ଆଜି ସେ ଆସନ୍ତି କାଠ ହାତ ହଲାଇ ଓ / ସେ ବସନ୍ତି ମୋର ବିଛଣାରେ/ମୁଁ ମନାକରିବା ସତ୍ତ୍ୱେ ସେ କହନ୍ତି- 'ଖାଅ ଖାଅ'/ଏବଂ ସେ ବାନ୍ଧନ୍ତି ମଲ୍ଲିମଲ/ମୋ ଖଟର ମଶାରି ବାଡ଼ରେ/ସେ କ'ଣ ପ୍ରେମିକା ମୋର !"

(ହୃଦୟେଶ୍ୱରୀଙ୍କ)

ଶ୍ରୀ ରଥଙ୍କର ପ୍ରେମ ଭାବନାର ଗର୍ବ ଓ ଗୌରବ 'ନାସ୍ତି' । ଏ ନାସ୍ତି ଅକ୍ଷୟ ଐଶ୍ୱର୍ଯ୍ୟ ପ୍ରତିମାର ପ୍ରତୀକ । ପୁଣି ଏଇ ନାସ୍ତି ଭିତରଦେଇ କାବ୍ୟପୁରୁଷ ଉପଲବ୍ଧି କରିଛି ମୃତ୍ୟୁର ପ୍ରବଳଗ୍ରାସ । ତଥାପି ଏ ମୃତ୍ୟୁଚେତନା ଭିତରଦେଇ ସେ କାଳାତୀତ ପ୍ରେମର ପରିକଳ୍ପନା କରିଛନ୍ତି ।

'ସପ୍ତମ ଋତୁ' ବେଳକୁ ଏଇ ପ୍ରେମ ଚେତନା ଅନବଦ୍ୟ ସଫଳତାରେ ମହକି ଉଠିଛି । କାବ୍ୟପୁରୁଷ ଉପଲବ୍ଧି କରିଛି— ନାୟକ ଓ ନାୟିକା ଦୁହେଁ ଅପୂର୍ଣ୍ଣ । ସେ ଦୁଃଷ୍ପ୍ରାପ୍ୟ ପ୍ରେମର ସନ୍ଧାନରେ ଗନ୍ତବ୍ୟସ୍ଥାନ । ଶ୍ରୀ ରଥ ଯଦିଓ ମୃତ୍ୟୁସଚେତନ, ତଥାପି ମିଳନ ସ୍ୱର୍ଗର ରୂପକାର । 'ସପ୍ତମଋତୁ'ରେ କାବ୍ୟପୁରୁଷ ମୃତ୍ୟୁର ଅତିକ୍ରାନ୍ତ କରିଯିବା ପାଇଁ ଆଶା ପ୍ରକାଶ କରିଛି । ସେ ସମସ୍ତ ସଚେତନ, ତେଣୁ ଅନେକ ସମୟରେ ସ୍ମୃତିକୁ ପାଥେୟ କରି କାବ୍ୟଲକ୍ଷ୍ୟ ପ୍ରଧାବିତ ଓ ସଂପ୍ରସାରିତ । କବିସତ୍ତା ପଦେ ପଦେ ମୃତ୍ୟୁକୁ ଭେଟିଥିଲେ ହେଁ ଏହି ମୃତ୍ୟୁ ଚେତନା ଓ— ବିଷାଦ ବେଦନା ଅମୃତର ବିରହ ବେଦନା + ଏହାହିଁ ଶ୍ରୀ ରଥଙ୍କର କାବ୍ୟ – ପୁରୁଷର ଗତି ଓ ପ୍ରକୃତି । ତାଙ୍କର କବିତାରେ ମୃତ୍ୟୁବୋଧ ଅଛି, ଯନ୍ତ୍ରଣାକ୍ଷତ ଜନଜୀବନର ସକରୁଣ ଚିତ୍ର ଅଛି; ବିଷାଦବୋଧ ଅଛି ଏବଂ ସର୍ବୋପରି ଅଛି-ମୃତ୍ୟୁଚେତନା ମଧ୍ୟଦେଇ ଅମୃତ ସନ୍ଧାନ କରିବାର ଆକୃତି । ତେଣୁ ତାଙ୍କୁ କେବଳ ବିଷାଦବାଦୀ ବା ମୃତ୍ୟୁଚେତନା-ଶ୍ରମୀ କବି କହିବା ଯଥାର୍ଥ ହେବନାହିଁ । ସେ ବରଂ ପ୍ରେମର କବି; ମୃତ୍ୟୁର କବି ଏବଂ ଏ ପ୍ରେମ-ଓ ମୃତ୍ୟୁ-ଅମୃତର ପ୍ରତ୍ୟାଶୀ □□□

# ପରଜା ଉପନ୍ୟାସର ଅସମାଧିତ ପ୍ରଣୟ କାହାଣୀ

● ଭୁବନାନନ୍ଦ ସାହୁ

---

ଗୋପୀନାଥ ମହାନ୍ତି ଭାରତୀୟ ଉପନ୍ୟାସ ସାହିତ୍ୟରେ ଏକ ଅବିସ୍ମରଣୀୟ ପ୍ରତିଭା । ସହରୀ ଜୀବନ ଏବଂ ଜଙ୍ଗଲ ସଭ୍ୟତାର ଚିତ୍ରକର ଗୋପୀନାଥ ପ୍ରାୟ କୋଡ଼ିଏ ଖଣ୍ଡ ଉପନ୍ୟାସର ଜନକ । ସହରର ଗ୍ରୀଷ୍ମ, ଦାନାପାଣି, ଲୟ ବିଲୟ, ମାଟିମଟାଳ ପ୍ରଭୃତି ସହର ସଭ୍ୟତାର ଚିତ୍ର ପ୍ରକାଶ କରୁଥିଲାବେଳେ ପରଜା, ଅମୃତର ସନ୍ତାନ, ହରିଜନ ପ୍ରଭୃତି ସଭ୍ୟ ମଣିଷର ଅତ୍ୟାଚାର ପୀଡ଼ିତ ଜାଙ୍ଗଲିକ ମଣିଷର ଅଶ୍ରୁସଜଳ ରୂପ ଚିତ୍ରଣରେ ବର୍ଣ୍ଣାଢ୍ୟ ହୋଇଉଠିଛି । କିନ୍ତୁ ଶ୍ରେଣୀ ଚେତନାର ସଫଳ ବାର୍ତ୍ତାବହ ରୂପେ, ଆଦର୍ଶ ଓ ବାସ୍ତବ ଜୀବନର ରୂପକାର ଗୋପୀନାଥ ଉପନ୍ୟାସ ଜଗତରେ ନୂତନ ପ୍ରୟୋଗ ପଦ୍ଧତିର ଯେଉଁ ଅପୂର୍ବ ପ୍ରକ୍ରିୟା ସୃଷ୍ଟି କରିଛନ୍ତି, ତାହା ତାଙ୍କ ଅସାଧାରଣ ସୃଜନୀଶକ୍ତିର ପ୍ରକାଶ କରିଥାଏ ।

ବଞ୍ଚିବା ପାଇଁ ସଂଗ୍ରାମ କରିବା ଆଦିମକାଳରୁ ମଣିଷର ଏକ ସହଜାତ ପ୍ରବୃତ୍ତିରେ ପରିଣତ ହୋଇଛି । ପରଜା ଉପନ୍ୟାସରେ ଅମୃତର ସନ୍ତାନ, ସରଳ ବିଶ୍ୱାସୀ ପରଜା ପରିବାରର ହର୍ଷ, ବିଷାଦ, ସଂଘର୍ଷମୟ ଜୀବନର ଯେଉଁ ପ୍ରବହମାନ ଚିତ୍ର, ଶ୍ରେଣୀ ଚେତନାର ଯେଉଁ ବାସ୍ତବମୁଖୀ ଧାରଣା (idea in the term of art) ପ୍ରକଟିତ ହୋଇଉଠିଛି; ସ୍ରଷ୍ଟା ଗୋପୀନାଥ ମହାନ୍ତିଙ୍କ ତାହା ଔପନ୍ୟାସିକ ଜୀବନର ଚରମ ସଫଳତା ଆଡ଼କୁ ଘେନିଯାଏ; ଅନ୍ୟ ରୂପରେ ତାହାହିଁ ଉପନ୍ୟାସର ଚିରନ୍ତନ ଅଭିବ୍ୟକ୍ତି ।

ମଣିଷର ପ୍ରବୃତ୍ତି ସହଜାତ । ପରଜା ଉପନ୍ୟାସର ନେପଥ୍ୟରେ ପ୍ରକୃତିର ନୈର୍ବ୍ୟକ୍ତିକ ରୂପ ସହିତ ମଣିଷର ପାଶବିକ ପ୍ରବୃତ୍ତି ଏବଂ ସ୍ୱଚ୍ଛନ୍ଦ ଜୀବନର ଧାରା ପ୍ରବାହିତ

ହୋଇଛୁ । ସ୍ରଷ୍ଟା ଗୋପୀନାଥ ଏଠାରେ ନଜେ ସେହ୍ ପରଜାମାନଙ୍କ ଭିତରେ ଜଣେ । ସେମାନଙ୍କ ଆତ୍ମା ସହ୍ ନଜ ଜୀବନକୁ ବବୃତକଣ ସର୍ବଦ୍ରଷ୍ଟା ପଶ ସେ ଆଙ୍କିଛନ୍ତ ଗୋଟାଏ ଜାଢର ଇତହାସର ଚହ୍ନ । ଆଲୋକ ଓ ଅନ୍ଧକାର କୌଣସି ଦଗଟି ମଧ୍ୟ ତାଙ୍କ ଦୃଷ୍ଟିରୁ ବାଦ ପଡ଼ନାହିଁ ।

ପରଜା ଉପନ୍ୟାସରେ ଗୋଚରୀଭୂତ ସଂଘର୍ଷର ତୀବ୍ର ରୂପଟିର ପଶଣତ ହେଉଛୁ "ବାପ ପୁଅ କୁଣ୍ଢାକୁଣ୍ଢି ହୋଇ କାନ୍ଦଲେ, ରକ୍ତରେ ଲୁହ ମିଶିଗଲା ।" ଏ ପଶଣତ ଅନେକ ପରମାଣରେ ବଭତ୍ସ ହେଲେ ହେଁ ବେଶ୍ ସହଜ ସରଳଭାବରେ ତାର ପ୍ରକାଶ । ଭାରତୀୟ ସମାଜର ମଧ୍ୟରତର ଜୀବନ ଉପଭୋଗ କରୁଥିବା ସୁକୃଜାନ ପଶବାରର ସୁଖ ସ୍ୱପ୍ନ ସଭ୍ୟଜଗତର ଅତ୍ୟାଚାରରେ ଯେ ଧ୍ୱଂସସାତ ହୋଇଗଲା, ତାହା ଉପନ୍ୟାସର ପଶଣତ ହେଲେ ବ ଆଧୁନକ ମାନବର ନବୃଣା, ଦେହ ଭୋଗର ଅତୃପ୍ତ ବାସନା ସମଗ୍ର ପରଜା ଉପନ୍ୟାସକୁ ସଂଘର୍ଷମୁଖର କରଛୁ । ସୁକୃଜାନ ପଶବାରର ମାଣ୍ଡିଆ ଓ ଜିଲିର ଅସମାଧିତ ପ୍ରଣୟ କାହାଣୀ ଏହ୍ ସଂଘର୍ଷଟିକୁ ଅଧିକ ତୀବ୍ରତର ତଥା ଗତଶୀଳ କଣ ପଶଣତ ଷେତ୍ର ମୁଖ୍ୟ ଭୂମିକା ଗ୍ରହଣ କରଛୁ । ଏହ୍ ନରୀହ୍ ସରଳ ପଶବାରଟି କେତୋଟି ଘଟଣା ଦୁର୍ଘଟଣାରେ ବପର୍ଯ୍ୟସ୍ତ ଓ ଅଶ୍ରୁମୁଖର ହୋଇଛୁ ଏବଂ ଅଶ୍ରୁଳ ପଶସମାପ୍ତି ମଧ୍ୟ ଘଟିଛୁ । ଏହ୍ ପ୍ରବନ୍ଧରେ ତାହାହିଁ ସଂକ୍ଷିପ୍ତଭାବେ ଆଲୋଚତ ହେଉଛୁ ।

ଖଡଗଦାରେ ପଦ୍ମ ପଣ ପରଜା ଘରେ ଜିଲି ବଲି ଦୁଇଟି ପ୍ରସ୍ଫୁଟିତ ଜଳପଦ୍ମ । ଜଙ୍ଗଲ ଜମାନ୍ ପ୍ରଥମେ ଦୁହିଁଙ୍କୁ ଭେଟିଛୁ ଝୋଲ ପାଖରେ, ଯେଉଁଠି ପରଜାର ନତ ଗାଧୋଇବା ଅଭ୍ୟାସ ଅନୁଯାୟୀ ଦୁହେଁ ଯାଇ ଲଗିଲା । ଜଙ୍ଗଲ ଜମାନ୍ ସୁକୃକୁ ଅନୁମତ ଦେଇଗଲା କାଠ ହାଣିବାକୁ । କହଗଲା, "ବୁଝିଲୁ ବୁଢା, ତୁ ଯାହା ମାଗିଲୁ ମୁଁ ତା ଦେଇଗଲ । ପୁଣି ମୁଁ ଆସିବ, ମୁଁ ଯାହା ମାଗିବ ତା ତୁ ଦେବୁ ତ ?" ଏଇ ବକ୍ରୋକ୍ତିର ଅସଲ ସ୍ୱରୂପକୁ ଜଙ୍ଗଲ ମଣିଷ ସୁକୃ କେତେ ବା ବୁଝିଛୁ ? ତାର ସରଳ ଉତ୍ତର— "ତୁମର ଇଚ୍ଛା ମହାପୁରୁ, ତୁମେ ଅଧିକାଶ୍ମ ଲୋକ, ତୁମେ ବାପା ତୁମେ ମା । ମୁଇଁ କସ ନାଇଁ କଣବ ତୁମକୁ ।" (ପୃ-୧୭) ପୁଣି ଯେତେ-ବେଳେ ଜମାନର ଜମାନ୍ ପଡ଼ିଲା ଷ୍ଟାନର ସାନ୍ନିଧ୍ୟରୁ ଝୋଲ କୂଳରେ ଜିଲିକୁ ସେ ଖୋଜଲା ଏବଂ ପ୍ରବୃତ୍ତିର ପଶପୂରଣ ପାଇଁ ଅଚ୍ଛା ଆରମ୍ଭ କରଛୁ— "କୌଣସି

ପ୍ରକାରର ଅଛା ନକଲକୁ ପାହାଡ଼ର ଝିଅ ହାରଯିବାର ନୁହେଁ ।" କିନ୍ତୁ ଅଛା କରି କରି ଜମାନ୍ ଚମକି ଆସିଲା, ଜିଳର କାନ୍ଧରେ ଦୁଇ ହାତ ରଖିଲା । ମାତ୍ର 'ମୁହୂର୍ତ୍ତ'ର ଉତ୍ତେଜନାକୁ ବଣଦେଶର ଅଭିଆଡ଼ୀ ଝିଅ ସେତେ ବଡ଼ ବୋଲି ଭାବେ ନାହିଁ । "ଡେଙ୍ଗା ଲୋକଟାଏ X X ଏଇ ମଣିଷଟା ହେବ ତାର ଅଣ୍ଡା । (ପୁରୁଷ, ବର) ! ଛେ ।" କିନ୍ତୁ ଜମାନ୍‌ର 'ବୁଦ୍ଧି ବିବେକ ମୋହରେ ତଳା ପଡ଼ିଥାଏ, ହୋସ୍ ନାହିଁ କେଉଁଟା ଭଲ କେଉଁଟା ମନ୍ଦ ।' ସେହି ଗଢରେ ଜମାନ୍‌ର ପଶୁବୃତ୍ତିକୁ ଚରିତାର୍ଥ କରିବାକୁ ଲୋଭାହେଲା ଜିଳିକୁ । କାହ୍ନୁ ପରଜା ବାର୍ତ୍ତା ନେଇ ଆସିଲା ସୁକୁ ପାଖକୁ । ଜମାନ୍‌ର ସ୍ୱରକୁ କାହ୍ନୁ ଅନୁସରଣ କଲା ମାତ୍ର । ବାପ ହୋଇ ତା' ସଂସ୍କୃତିକୁ କିପରି ବିସର୍ଜନ କରି ଦେଇ ପାରିଥାନ୍ତା ସୁକୁଜାନି । କାହ୍ନୁ ପରଜା ତାର ଉତ୍ତର ପିଠିରେ ବହିନେଲା । ଅଜଣା ଆଶଙ୍କାରେ ସୁକୁଜାନିର ପିତୃହୃଦୟ ବ୍ୟଥିତ ହେଉଥିଲେ "ମାଣ୍ଡିଆ ଜାନି କାକୋଡ଼ି କଥା ଭାବେ, ଜିଲି ଭାବେ ବାଗ୍ଲା କଥା, ଆଉ ତାର ଭବିଷ୍ୟତର ଘରକରଣା । ସାବୁକା ବଣର କଅଁଳ ଗୁଣ୍ଡିରେ ସମସ୍ତେ ଚେଇଁ ଚେଇଁ ସ୍ୱପ୍ନ ଦେଖନ୍ତି ।" (ପୃ-୨୭) କିନ୍ତୁ ଜମାନ୍ ଡାକଘର ପ୍ରତ୍ୟାଖ୍ୟାନର ଫଳ ସ୍ୱରୂପ ଅଧିକାରୀ ଆସିଲା ଓ ସୁକୁ ଘରୁ କାଠ ବାହାରିଲା । ଜଙ୍ଗଲ କାଟିବା ଅଭିଯୋଗରେ ଦୋଷୀ ସୁକୁଜାନି । ଜୋରିମାନା ହେଲା ଷାଠିଏ ଟଙ୍କା । "ଅନ୍ଧାର ଘରେ ବାପ ପୁଅ ଝିଅ ସମସ୍ତେ ପଶି ବେକ ଧରାଧରି ହୋଇ କହିଁ କହିଁ ହୋଇ କାନ୍ଦିଲେ, ଲାଉ ତୁମ୍ବାରେ ମାଣ୍ଡିଆ ପେଜ ମହାକ ସେହିପରି ଥୁଆ ହୋଇ ରହିଲା । କୁରୁଡ଼ି ଦାଣ୍ଡରୁ ପିଣ୍ଡାକୁ ଉଠିଲା ନାହିଁ ।" (ପୃ-୩୦) ଲୁହରେ ଲୁହରେ ବସୁଧା ତିନ୍ତିଲା, କିନ୍ତୁ ମଣିଷର ମନ ତିନ୍ତିଲା ନାହିଁ । ସାହୁକାରଠୁ ଟଙ୍କା କରଜ ଆଣିଲା ସୁକୁ, ସୁକୁ ଓ ଟିକା ଗଲେ ଗୋତି । "ସୁକୁଜାନିର ଘର ଉପରେ ମାଛିଆ ଚଢ଼ି ବସିଲା, ସେ ଖୋଜିଗଲା, ନାୟକ ଘରକୁ ବାରିକ ଆଉ ଚାଉଳ୍ ଡ଼ମ୍ବୁ ଭାଗ ଘେନି ଘରକୁ ଫେରିଲେ ।" (ପୃ-୪୭)

ମଣିଷ ତା'ର ଜନ୍ମ ବର୍ତ୍ତମାନ ଭବିଷ୍ୟତର ସ୍ୱରୂପକୁ ସ୍ୱପ୍ନ ଦେଖେ । ଇଚ୍ଛାର ପୂର୍ଣ୍ଣତା ପାଇଁ, ଆକାଂକ୍ଷା ସବୁ ସ୍ୱପ୍ନରେ ରୂପାନ୍ତରିତ ହୋଇଯାଏ । ଏମିତି ଅନେକ ସ୍ୱପ୍ନ ଦେଖିଥିଲା ସୁକୁଜାନି । "ମାଣ୍ଡିଆ, ଟିକା, ଜିଲି, ବଲି ବାହା ସା ହୋଇଥାନ୍ତେ । ଘର ପାଖେ ଘର ତୋଳା ହୋଇଥାନ୍ତା । ପାହାଡ଼ ତଳ ଝୋଲ କରେ କରେ ହଳଦୀ ଗର-ଗର ଧାନ କ୍ଷେତରେ ଧାନ ନଇଁ ପଡ଼ିଥାନ୍ତା ।" (ପୃ-୩୩) ତାର ଘରଣୀ ସମ୍ଭାଳି ଆଜି ନାହିଁ । ସୁକୁ ଉପରେ, ତା'ର ପରିବାର ଉପରେ ଦୁର୍ଘଟଣାର ଯେଉଁ ପ୍ରଥମ ଝଡ଼ ପ୍ରବାହିତ ହୋଇଗଲା, ଏ ପରିଣତି ତା ସଂସ୍କୃତିକୁ ପଶୁ ଆଗରେ ବଳି ନଦେବାର କଠୋର

ପ୍ରଚଳନରୁ, ମଣିଷପଣ ମଣିଷ ହୋଇ ବାଟ ଗ୍ରହଣ କରିବାର ଦୃଢ଼ତାରୁ । ବଣଜଙ୍ଗଲର ସଂସ୍କୃତି ହେଉଥିଲେ, ଜିଲାକୁ ସାଇତି ରଖିବାର ପିତୃହୃଦୟର ସ୍ୱାଭାବିକ ମୋହ ତା' ପରିବାରକୁ ଛିନ୍ନଭିନ୍ନ କରିଦେଲା ।

ପ୍ରଥମ ପର୍ଯ୍ୟାୟର ଦୁର୍ଘଟଣାରେ ଜିଲା ବେନ୍ଦ୍ରବନ୍ଦ । ତାର ଅଶ୍ରୁର ପ୍ରଥମ ଧାରର ଆରମ୍ଭ ଏଇଠୁ । ଦେହ ଭୋଗର ପଶୁବୃତ୍ତି ପରିକା ପରିବାରର ସ୍ୱପ୍ନକୁ କ୍ଷଣେ ପ୍ରତିବନ୍ଧ କରି ଦେଲା ସତ, ମାତ୍ର ପରବର୍ତ୍ତୀ ପର୍ଯ୍ୟାୟର ମାଣ୍ଡିଆ-କାକୋଡ଼ି, ଜିଲା-ବାଗଲର ପ୍ରେମ ଅମୃତତ୍ୱର ବୃହା ଖୋଜି ଦେହକୁ ଦେହକୁ ସଂଚରିବାକୁ ଲାଗିଲା ।

ପ୍ରେମ ସମବୟସ୍କ ମନ ଓ ହୃଦୟ ଘଟିତ ଏପରି ଏକ ବ୍ୟାପାର, 'ଯାର ମନ ଯହିଁକି ରସେ/ତାର ବିନା ତାକୁ ଆନ ନଦିଶେ' ଉକ୍ତିଟି ଏ କ୍ଷେତ୍ରରେ ଏକାନ୍ତ ସତ୍ୟ ହୋଇଉଠେ । ପୁଣି ପରସ୍ପରର ଆଦାନ ପ୍ରଦାନଜନିତ ଭାବ ମାନସିକ ବ୍ୟାକୁଳତା ପ୍ରେମକୁ ଜଟିଳତର କରିଦିଏ । ଦୁଃଖରେ ଅଟକିଯିବା ମଣିଷର ଉଚିତ ଧର୍ମ ନୁହେଁ ଦୁଃଖକୁ ଭୁଲି ତା ମଧ୍ୟରେ ସୁଖର ଅନ୍ୱେଷା କରିବା ଏକ ଉନ୍ନତ ମାନସିକ ପ୍ରକ୍ରିୟା । ମାଣ୍ଡିଆ ଓ ଜିଲା, ବାଲିଙ୍କ ଜୀବନରେ ଦୁଃଖ ଆସିଲା, ଜୀବନ କ୍ଷଣେ ଅଟକିଗଲା, ନଈ ବନ୍ଧ ଭାଙ୍ଗିବା ପୂର୍ବରୁ ମାଟିରେ ନରମ ଥରଟିଏ ଖୋଜିଲା ପରି ମୁହୂର୍ତ୍ତେ ଅଟକି ରହିଲା, ଦୁଃଖ ପୁଞ୍ଜିଗଲା, ଯୌବନର ଚଳନ୍ତା ଡେଉଁ ଅମାନିଆ ଲହରୀ ସାଥିରେ ଭାଙ୍ଗିଲା ବନ୍ଧକୁ ।

ମାଣ୍ଡିଆ ଦୁଃଖକୁ ପୋଛିଦିଏ । ସବୁ ଯୁବକଙ୍କ ପରି ସେ ଆଶାର ସ୍ୱପ୍ନ ଦେଖେ । ଦୁଃଖ ଭିତରେ କାକୋଡ଼ି ଆନନ୍ଦର ଜୁଆର ପରି ମାଣ୍ଡିଆର ମନଗହ୍ୱରରେ ଢେଉଁ ଢେଉଁ ଯାଏ । ଦ୍ୱିତୀୟ ପର୍ଯ୍ୟାୟରେ ପୁସ ପର୍ବ ପର୍ଯ୍ୟନ୍ତ ମାଣ୍ଡିଆ-କାକୋଡ଼ିର ସ୍ୱପ୍ନ ସମ୍ଭାବନା, ଜିଲା ବାଗଲର ଅଫୁରନ୍ତ ପ୍ରୀତିସ୍ରୋତ କଳ କଳ ଛଳ ଛଳ କରି ବୁହାଇଛନ୍ତି ଗୋପୀନାଥ । ନାରୀ ପୁରୁଷର ପ୍ରେମ ବିଶ୍ଳେଷଣର ଅପୂର୍ବ ନିର୍ଯ୍ୟାସ, ଫ୍ରୟେଡ଼ଙ୍କ ମନୋବିଶ୍ଳେଷଣ ପରି ଉଦାତ୍ତ ଭଙ୍ଗୀରେ ଏ ପର୍ଯ୍ୟାୟରେ ଉଦ୍ଘୋଷିତ ହୋଇ ଉଠିଛି ।

"ଅନାଇଁ ଅନାଇଁ ଭାବୁ ଭାବୁ ମାଣ୍ଡିଆ ଜାନ ଅଟକି ରହେ, ତାର ଆଖି ଆଗରେ ଧାନ ଝଡ଼ାଳିରୁ ଫୁଟିଉଠେ ବାରମ୍ବାର ଖାଲି ଗୋଟାଏ ଛବି-କା-କୋ-ଡ଼ି । ଧାନ ଆଉ

କାଳୋଡ଼ି, କାଳୋଡ଼ି ଆଉ ଧାନ, ଘର ଭର୍ତ୍ତି ଧାନ ଆଉ ମନ ଭର୍ତ୍ତି କାଳୋଡ଼ି, ଦୁହିଁଙ୍କୁ ଦୁହେଁ ଏକାଠି ।'' ''ନନ୍ଦ ଧାଂଡା ବସାଘରକୁ ଯିବାକୁ ଭାବ ନନ୍ଦ ମଦ ନଶାରେ ଭୋଲହୋଇ ଘରେ ଶୋଇ ରହେ—ଆଉ କାଳୋଡ଼ିକୁ ସ୍ୱପ୍ନ ଦେଖେ ।··· ତାର କାଳୋଡ଼ି···/ତାର କଳା କଳା ଆଖି···/ତାର ଡୋଲ୍ସ କାନେ ନୁଲ୍ ।'' ମାଣ୍ଡିଆ ଦେହରେ ତାକତ୍ ଥିଲେ ବି ସ୍ତ୍ରୀ ଲୋକକୁ କିଛି କହିପାରେ ନାହିଁ, ଲାଜ ମାଡେ । ଅଥଚ କାଳୋଡ଼ି ତା'ର ନିବିଡ଼ ସାନ୍ନିଧ୍ୟ ଖୋଜେ । ''ସେ ସ୍ତ୍ରୀ, ପେଟରେ ଭୋକକୁ ପୁରୁଷଠୁ ସେ ବୁଝେ ବେଶୀ'' ''ମାଣ୍ଡିଆଠାରୁ କ'ଣ ଯେପରି ସେ ଚାହିଁଛି, ନିର୍ଲଜ ହୋଇ କ'ଣ ଯେପରି ସେ ଖୋଜୁଛି ମାଣ୍ଡିଆଠୁ, ଆଉ ପାଉନାହିଁ; ନପାଇ ମନ ଭିତରେ ତା'ର ଅଶାନ୍ତ ରହି ଯାଉଛି ।'' ''ଅଥଚ ସେ ବୁଝେ, ମାଣ୍ଡିଆକୁ କେତେ ଗଭୀରରୁ ତାକୁ ଭଲପାଏ, କ'ଣ କରିବ ସେ ତା' ପାଇଁ ।'' ''ଏଇ ରହି ରହିକା ଭଲ ପାଇବାରେ ଅନେକ କଥା ତାର ଅପୂର୍ଣ୍ଣ ରହିଥାଏ, ବଢ଼ିଆଲୀ ଦେହଟା ତାର ଫାଟି ଫାଟି ପଡେ ସତେକି । + + ତାର ଆପଣାର ରକ୍ତ ବନ୍ୟା ପାଣି ପରି ଫୁଟି ଉଠିଛି, ଗଭରେ କିଏ ଯେପରି ମୁଗୁରରେ ପାହାର ମାରୁଛି, ଦୁଲ୍ ଦୁଲ୍ ଦୁଲ୍ ଦୁଲ୍ ।'' (ପୃ-୬୫-୬୫) କାଳୋଡ଼ିର ଏଇ ମାନବୀୟ ପ୍ରବୃତ୍ତି, ଚେତନା ପ୍ରବାହ ଧାରା ମଧ୍ୟରେ ତା' ହୃଦୟର ଦୀର୍ଘଶ୍ୱାସ, ଯୌନକ୍ଷୁଧାଠୁ ମାନସିକ ହତାଶାବୋଧ ପର୍ଯ୍ୟନ୍ତ ପରଜା ଉପନ୍ୟାସର ପୃଷ୍ଠାରେ ଚମତ୍କାରଭାବେ ପ୍ରତିଫଳିତ ହୋଇଛି । ଫ୍ରୟେଡୀୟ ମନୋବିଶ୍ଳେଷଣ ଏବଂ ଅନ୍ତର୍ଦ୍ୱନ୍ଦ୍ୱ, ଆଶା-ନିରାଶା ଏବଂ ସ୍ୱପ୍ନ ପ୍ରବଣତା ମଧ୍ୟରେ, ଜୀବନର ଅଭିଜ୍ଞତା ଭିତରେ ବାସ୍ତବତାର ଅନ୍ୱେଷଣ କରେ । କାଳୋଡ଼ି ଯେତେବେଳେ ମାଣ୍ଡିଆର ବଳିଷ୍ଠ ଆଲିଙ୍ଗନର ପ୍ରତ୍ୟାଶାରେ ଥାଏ, ଧନଯାଚକର ଲହୁଲୁହ ଖଟଣିପରେ, ଝୋଲା ଟଙ୍କା ଯୋଗାଡ କରିବା ନିଶାରେ, ମଦଟୋପେ ପିଇ ଶୋଇ ଶୋଇ ସେ ସ୍ୱପ୍ନ ଦେଖୁଥାଏ କାଳୋଡ଼ିକୁ ।

ଏବଂ ବାଗ୍ଲାର ବାଗ୍‌ଦତ୍ତା ଜିଲି । ସେ ଜିଲିକୁ ଆଶ୍ୱାସନା ଦେଇଛି ଚୈତ୍ର ମାସରେ ବାହାଘର ହେବ । ଜିଲି ବି ମାଣ୍ଡିଆ ପରି ସ୍ୱପ୍ନ ଦେଖେ···''ତା'ର ଘର, ତା'ର ନିଜର ଘର, ତା'ର ଆଉ ବାଗ୍‌ଲାର···ସେ ଘର କାମ କରିବ, ଜଙ୍ଗଲରୁ କାଠପତ୍ର ଆଉ କନ୍ଦା ଆଣିଯିବ, ବାଗ୍‌ଲାର ଚାଷ ଭୂଇଁକୁ ଲାଉ ତୁମ୍ବାରେ ପୂରେଇ ନେଇଯିବ ଝୁମୁର୍ ଝୁମୁର୍ ମାଣ୍ଡିଆ ପେଜ୍ ।'' ବାଗ୍‌ଲା ଯେତେ ଭାବିଲା, ''କମେ ପହିଲା ତାର ଭାଙ୍ଗିଗଲା, ଆଖିରେ ଦିଶିଲା ବାହାଘର ଆଉ ବନ୍ଧନ । ଗାଁର କେତେ ଧାଙ୍ଗ୍ରୀ, କାହାକୁ

କଥ ଲଗି ବଣିଗଲ ସବୁଶ ମୃହଁ । X X ଆହୁଣ କେତେ ମୁହଁ ବାଦଲୁବଆ ହୋଇ ବଣିଗଲେ ।''

'ସ୍ତ୍ରୀ କାଉଳ ଭିନ୍ନ ଆଖିରେ କେଉଁବନୁ ସେ ଦେଖିଲଣି' ସେ ଚିନ୍ତା । ଆଉ ବଲ, ଶାଳପଦ ତା' ପାଖରେ ହୋଇଯାଏ ଗୋଟେ ଦର୍ପଣ । ''ତାହାର ଉପରେ ରଙ୍ଗେଇ ଦୁନିଆଁ ବଣିଯାଏ, କନା ଗୁଖଣ୍ଡେ ଲେଞ୍ଜା ପିନ୍ଧି କାନ୍ଧରେ ଟାଙ୍ଗିଆ ଆଉ ବାହୁଙ୍ଗା ପକାଇ ପ୍ରକାର ପ୍ରକାର ହୋଇ କୁଆନ୍ ଟୋକା ଗୁଲଯାଆନ୍ତି ସେଥିରେ, ବଲ ବଲ ବୋଲ୍ ପାଗଲ ।'' ଏମାନଙ୍କ ପାଇଁ ସ୍ୱପ୍ନ, ସ୍ୱପ୍ନ ଆଉ ସମସ୍ୟ ମିଶିମାଶି ଯାଇ ଗୋଟାଏ ଅନୁଭୂତମୟ ସଂସ୍ଥିତ, ଏହି ଜୀବନ । ପୁଷ୍ ପର୍ବରେ ଯେଉଁଥିପାଇଁ ଆନନ୍ଦର ଜୁଆର ଉଠିଥିଲ, ''ଓହୋ ହୋ ଶଶ୍/ଧାଣ୍ଡୀ ଧାଣ୍ଡା ମିଶ୍ ।'' ଅଥଚ ସ୍ୱପ୍ନ ସବୁ ସାର୍ଥକ ନହେଉଣୁ ମଦରନ୍ଧା ଅପରାଧରେ ମାଣ୍ଡିଆ ଜମାନ୍, ସବଜସ୍‌ପିକ୍ଟରଙ୍କ ଦ୍ୱାରା ଦଣ୍ଡିତ ହେଲ । ଜେଲ୍ ନଯାଇ ଜୋଶମାନା ପାଇଁ ଟଙ୍କା ଆଣି ମାଣ୍ଡିଆ ଗଲ ଗୋ'ଠ । କାଜୋଡ଼ି ଆଉ ମନରେ ଆସିଲ ନାହିଁ । ଘରେ ଦ'ଟା ଝିଅ ଅନାଗତ ଭବିଷ୍ୟତକୁ ଗୁହିଁ ପଡ଼ି ରହିଲେ ।

ବାପ ପୁଅ ଦୁଇଜଣ ଗଲେ ଗୋଠ । ମାଣ୍ଡିଆ ଜାଗର ଅନୁପସ୍ଥିତ କାଜୋଡ଼ିକୁ ତା' ପ୍ରେମରେ ଜୁଡ଼ୁବୁଡ଼ୁକର ରଖି ପାରଲ ନାହିଁ । 'ସ୍ତ୍ରୀ ଲୋକର ମନ କେବେ ଖାଲ ପଡ଼ିପାରେ ନାହିଁ ।' (ପୃ-୧୦୬) ତା ପାଖରେ ''ମଣିଷର ସ୍ମୃତି···ସେ ଖାଲ ପାଣିରେ ଗାର ପଡ ।'' (ପୃ-୧୧୦) କଜୋଡ଼ି ଧୀରେ ଟାଣି ହୋଇଗଲ ବାଗ୍‌ଲ ଆଡ଼କୁ । କାଜୋଡ଼ିର ଏହି ବାଗ୍‌ଲ ପ୍ରେମ ଅନ୍ୟ ଦୁଇଟି ଅମ୍ଭାକୁ ବ୍ୟଥିତ କଲ । ଜିଲ ଏହା ପ୍ରଥମେ ଅନୁଭବ କଲ । ଦ୍ୱିତୀୟ ପର୍ଯ୍ୟାୟର ଦୁର୍ଘଟଣା ଜିଲକୁ ସଂପୂର୍ଣ୍ଣ ନିଃସଙ୍ଗ କରି-ଦେଲ । ''ଜିଲ ଆଉ ବଲ ପାହାଡ଼ର ପ୍ରଜାପତି ପରି, ପୁରୁଷର ହେମନ୍ତ ତାଙ୍କର ନାହିଁ ।'' X X ପାହାଡ଼ୀ ଝିଅ ''ଭାରି ପରିଶ୍ରମୀ ସତ, କିନ୍ତୁ ସବୁ ପରିଶ୍ରମ ତାର ପୁରୁଷ ପିଲାକୁ ଆବୋର ଧର ।'' କାଉ ପରକା କିନ୍ତୁ ପୂର୍ବପର ଆସେ । ସେ କୁରୂପ ହେଲେ ବି ମଣିଷ । ପୁରୁଷର ଦେହ, ମନ ଜିଲର ସାନିଧ ଲୋଡ଼େ । ତଥାପି ଜିଲ ଆଶା ହରାଇ ନଥିଲ, ବଞ୍ଚିଥିଲ ସ୍ୱପ୍ନରେ ହେଉ ପଛେ । ସ୍ୱପ୍ନ ଭିତରେ ବଞ୍ଚିବାର ରାହା-ଟିକେ ପାଇଥିଲା ଜିଲ ।

ଚଇତ ନାଚରେ ସମସ୍ତେ ବାହାର । ନାଚର ତାଳେ ତାଳେ ପଶୁ ବୃତ୍ତି ଚେଇଁ ଉଠିଲା ଯେତେବେଳେ, 'ଜିଲ ଆଖି ଉପରେ କାଜୋଡ଼ିକୁ ଗ୍ରୁତରେ ଚେକିନେଇ

ବାଗ୍‌ଲକାନ ଗୋଟାଏଅଡ଼େ ଧାଇଁ ପଳେଇଗଲା ।" ଜିଲ୍ ସେମିତ ନାଚୁଛି, କୋଣାର୍କର ଅପରୂପା କନ୍ୟାପରି । ଦେହରେ ସାଗରଠର କାକର ଲଦି ହୋଇ ଗଲଣି, ଆଉ ମାଣ୍ଡିଆ ମଦଭୋଳରେ ଅଚେତ ହୋଇ ସ୍ୱପ୍ନ ଦେଖୁଥିଲା, "ସ୍ୱପ୍ନ ଭିତରେ କାକୋଡ଼ିକୁ ସେ ଉଦୁଲିଆ ନେଇ ନେଇଥିଲା । X X ମାଂଡ଼ିଆ ଜାନ ସ୍ୱପ୍ନରେ ହିଁ ବଞ୍ଚେ, ସ୍ୱପ୍ନହିଁ ସେ ପାଏ ।" (ପୃ-୧୨୮) ଜିଲ୍ ବୁଝି ପାରିଥିଲା, ତାର ସବୁ ହଜି ଯାଇଛି । କାକୋଡ଼ି କାନ୍ଦୁଥିଲା, "ତା'ର ଜୀବନରେ ଆସିଥିଲେ ବାଗ୍‌ଲ ଆଉ ମାଣ୍ଡିଆ ।" (ପୃ-୧୯୫) ଅଥଚ ଶିକାରକୁ ଯାଇ ମାଣ୍ଡିଆ ମୁହୂର୍ତ୍ତେ ଝୋଡ଼ିଗଛ ଉପରେ ଶ୍ରୁତରେ ଜାକ ଧରିଥିଲା କାକୋଡ଼ିକୁ । ମାଣ୍ଡିଆର ପ୍ରତିଦ୍ୱନ୍ଦୀ ବାଗ୍‌ଲ । ଘିତରେ ମଦନଶାରେ ସ୍ୱପ୍ନ ଦେଖୁଥିଲାବେଳେ ବାଗ୍‌ଲ ଉଦୁଲିଆ ନେଇ ନେଇଗଲା କାକୋଡ଼ିକୁ । ମାଣ୍ଡିଆର ସ୍ୱପ୍ନ ଭାଙ୍ଗିଗଲା । "ଏପାଖେ ମାଣ୍ଡିଆ, ସେପାଖେ ଜିଲ୍ ଲୁଚେଇ ଲୁଚେଇ ଭୁନଭାନ କାନ୍ଦିଲେ ।" ଚୈତପର୍ବ ମାଣ୍ଡିଆ ଓ ଜିଲ୍‌ର ପ୍ରେମକୁ ଟୁକୁରା ଟୁକୁରା କରିଦେଲା । ସମଗ୍ର ଉପନ୍ୟାସର ଏହାହିଁ ଶୀର୍ଷଭାଗ (climax) । ଭାଇ ଭଉଣୀ ଦୁହିଁଙ୍କର ଅସମାଧିତ ପ୍ରେମ ପରବର୍ତ୍ତୀ ପରିଣତି ପାଇଁ ମୁଖ୍ୟତଃ ଦାୟୀ । ଶେଷ ପର୍ଯ୍ୟନ୍ତ ଲେଖକ ଏହି ସ୍ୱପ୍ନାଗ୍ରସ୍ତ ଭାଇ ଭଉଣୀ ଦୁହିଁଙ୍କର ପ୍ରଣୟକୁ ପୂର୍ଣ୍ଣ କରି ନାହାନ୍ତି । ମଣିଷତ୍ୱ ଓ ଯୌନତାର (humanity and sexuality) ସମ୍ମିଶ୍ରଣରେ ଗଠିତ ଫ୍ରୟେଡୀୟ ପ୍ରେମଚେତନା 'ଲିବିଡ଼ୋ' (Libido)ର ସ୍ରୋତଧାରାକୁ ଔପନ୍ୟାସିକ ପରବର୍ତ୍ତୀ ସମୟରେ ଅଧିକ ସଫଳରୂପେ ପରିବେଷଣ କରିଛନ୍ତି ମାତ୍ର । ଏଇଠି ହିଁ ଶେଷ ହୋଇଗଲା ଜିଲ୍‌ର ଦୁଃଖ ଦାରିଦ୍ର୍ୟକୁ ଆବୋରି ବାଗ୍‌ଲ ପାଇଁ ପଡ଼ିରହିବାର ବ୍ୟାକୁଳତା । କାକୋଡ଼ିକୁ ଫେରି ନପାଇବାର ଅବସନ୍ନତା ମାଣ୍ଡିଆକୁ କଥା କଥାକେ ସାହୁକାର ବିରୁଦ୍ଧରେ ବିଦ୍ରୋହ କରିବାର ମନ୍ତ୍ରକୁ ବୁଝାଇଦେଲା । ଏହି ବ୍ୟର୍ଥତା (frustration)ରୁ ପରବର୍ତ୍ତୀ ପରିଣତିର ଜନ୍ମକାତକ ପ୍ରସ୍ତୁତ ହୋଇଛି । ଜିଲ୍‌ର ଦେହଜ କାମନା, ଉଦ୍ଭ୍ରାନ୍ତ ଅଙ୍ଗତି, ସାହୁକାର ସହିତ ସଂପର୍କ; ମାଣ୍ଡିଆର ବିଦ୍ରୋହୀ ମନୋଭାବ ଏବଂ ପରିଶେଷରେ ହତ୍ୟା, ବ୍ୟର୍ଥତାର ଏକ ଏକ ବାହ୍ୟରୂପର ପରିପ୍ରକାଶକ ଏ କ୍ଷେତ୍ରରେ ।

ବାଗ୍‌ଲ ବିନା ନିଃସଙ୍ଗ ନିଃଶୂନ୍ୟ ଜିଲ୍‌ର ମନ, ଖାଦ୍ୟ ଆଉ ଖଦାର ଅଭାବକୁ ମେଣ୍ଟେଇବା ପାଇଁ ସାନ ଭଉଣୀ ବିଲିକୁ ନେଇ ବାହାରିଲା ସେଟ୍ ପାଇଟିକୁ । "କିନ୍ତୁ କେତେଦିନ ? ପଛଆଡ଼େ ଗ୍ରାମୀ, ଆଗରେ ବଳିଷ୍ଠ ପଶୁ ଅନ୍ଧକାର । ଦୂର ଦେଶ, ଅଚିହ୍ନା ଭୂଇଁ, ମୁରବିଙ୍କ ନାଲି ଆଖି ଏଠି ନାହିଁ, ସମାଜର ଭୟ ନାହିଁ ।" (ପୃ-୨୬୮)

ଏବଂ ଏପଟେର ବ୍ୟର୍ଥତା ଜିଲିକୁ ଟାଣିନେଲା ଗୁମାସ୍ତାବାବୁ ପାଖକୁ । ଦେହର ଭୋକ ଆଗରେ ଲାଜ, ସଂକୋଚ, ବହୁଦିନର ସଂସ୍କାର ହାର ମାନିଲା । "ଜିଲି ମନରେ ବଡ ଦୁଃଖ, କିନ୍ତୁ ଦେହରେ ଶାନ୍ତି ।" (ପୃ-୨୭୨) ଏହି ଗୋଟିଏ ପଂକ୍ତିରେ ଜିଲି ବେଦନାର ଉପଶମ ଘଟିଛି । "ନିଘେଲାରେ ଜିଲି ବିଲି ଆପଣା ଆପଣାର ସମ୍ପତ୍ତି ଅଣ୍ଡାଳି ଦେଖନ୍ତି ।" (ପୃ-୨୭୩) ଦେହ ଭୋଗର ଚମତ୍କାର ମାନସିକ ବିଶ୍ଳେଷଣରେ ଗୋପୀନାଥଙ୍କ କୃତିତ୍ୱ ଏଠାରେ ଲକ୍ଷ୍ୟଣୀୟ । ଆଲୋଚକ ରାଜକିଶୋର ମିଶ୍ର ଏ ପ୍ରସଙ୍ଗରେ ଲେଖିଛନ୍ତି—"ଥୋମାସ୍ ହାର୍ଡ଼ିଙ୍କ ଭଳି ସେ ଦେଖାଇଛନ୍ତି ଯେ ମନୁଷ୍ୟର ଅଧୋଗତି ଓ ବିପର୍ଯ୍ୟୟ ପାଇଁ ପାରିପାର୍ଶ୍ୱିକ ପରିସ୍ଥିତି ମୁଖ୍ୟତଃ ଦାୟୀ । ଜିଲି, ବିଲି (ପରଜା), ପୁନି (ହରିଜନ), ଓ ସତ୍ତା (ରାହୁର ଗ୍ରସ୍ତା) ନରକକୁ ଓହ୍ଲାଇ ଆସିଛନ୍ତି କେବଳ ପରିସ୍ଥିତିର ତାଡ଼ନାରେ ।" ଏ ପରିସ୍ଥିତି ପାଇଁ ମଧ୍ୟ ଜିଲି ବିଲି ଦାୟୀ ନୁହନ୍ତି । ଏ ଖାଦ୍ୟତା ଏଠି ମଧ୍ୟ ସମାପ୍ତ ହୋଇନ । ସୁକ୍ରୁଜାନି ଜମି ବନ୍ଧା ଦେଲା, ନିକେ ଗୋତିରୁ ମୁକୁଳିଲା, ଝିଅ ଦୁହିଙ୍କୁ ପାଖକୁ ଆଣିଲା ଏବଂ ଉଜୁଡ଼ା ସଂସାରକୁ ପୁଣିଥରେ ବାନ୍ଧିବାର ସ୍ୱପ୍ନ ଦେଖିଲା । ବିଲି ପାଇଁ ଯେଉଁ ଦିନୁ ନନ୍ଦବାଲି ଘରେ ଆସି ରହିଲା, ସେ ଦିନ ଜିଲିର ମନ, ଦେହ ଫମ୍ପା ହୋଇଗଲା ଏବଂ ଭୋକରେ ଅଧିକ ଛଟପଟ ହେବାରେ ଲାଗିଲା । "ନିଗ୍ରୁଟିଆ ନିରମାଖି ଜୀବନ ଭିତରେ ଖସୁ ଖସୁ କେଡ଼େ ସୁନ୍ଦର ଦି' ଭଉଣୀ ପାଖକୁ ପାଖ ଆଉଜି ଆସିଥିଲେ, ଆଜି ଜଣକର ଘର ଗୁଣ୍ଠି, ଆଉ ଜଣେ, ଯେଉଁ ବାଟରେ ସେଇ ବାଟରେ ।"(ପୃ-୬୦୩) ସର୍ଣ୍ଣପଦରଗାଁରେ ଆଶ୍ରୟ ନେଇଥିବା ସାହୁକାର ସହିତ ସଂପର୍କ ରଖିବାରେ ଜିଲିର ଏ ବ୍ୟର୍ଥତା, ଏ ଅପୂର୍ଣ୍ଣତା ମୁଖ୍ୟତ ଦାୟୀ । "ସେ ପରଜା ଝିଅ । ତା'ର ରାଜିରେ ଘର କରିବ । + + ସେ ଧାଂଡ଼ୀ । ତା'ର ହସ ଫୁର୍ତ୍ତି ଦରକାର, କାନ୍ଦଣା ନୁହେଁ ।" (ପୃ-୬୭୧) କର୍ମ ଆଦର ହସ ଫୁର୍ତ୍ତି ପାଇଁ ଜିଲି ଡୋକା ସାହୁକାରର ପ୍ରବୃତ୍ତିର ଶୀକାର ହେଲା ।ଏବଂ ହଜିଲା ଆନନ୍ଦକୁ କେତେକାଂଶରେ ଫେରିପାଇଲା । ଦୁଃଖ ଭିତରେ, ଅସୁଖ ଭିତରେ ସୁଖର ସ୍ୱପ୍ନ ଦେଖିବା ମଣିଷର ସାଧାରଣ ପ୍ରବୃତ୍ତି ମଧ୍ୟ ।

କାଉ ପରଜା, ବିଚରା କୁରୂପ ବୋଲି ତା ପାଇଁ ଧାଂଡ଼ୀ ଯୋଗାଡ଼ ହୋଇପାରିନାହିଁ । ସେ ବହୁ ଦିନରୁ ଦେଖି ଆସୁଥିଲା ଜିଲିକୁ ନେଇ ସୁଖ ସ୍ୱପ୍ନ । ବିବାହ ବୟସ ତା'ର କେବେଠୁ ଗଡ଼ିଯାଇଥିଲା ଅଥଚ ସେ ଜିଲିର ପିଛା ଧରିଥିଲା । ସେଦିନ

ସାହୁକାରଘର ଧାଣ୍ଡା ବହାଘରେ ଘରଅଧରେ ଜିଲ୍‌କୁ ଦେଖି ମନ ତା'ର ବିଦ୍ରୋହକରି ଉଠିଛି । ସ୍କୁଲ ପରୀକ୍ଷାରେ ଝିଅ କୁକର୍ମର ଖବର ପାଇଲା ଏବଂ ପରିଣତି ସ୍ୱରୂପ ଜିଲି ସାହୁକାରର ଆଶ୍ରୟ ନେଲା । ଜିଲିର ଏ ପତନର ନେପଥ୍ୟରେ ତାର ପହିଲି ଜୀବନର ପ୍ରେମ, ଯାହା ବନ୍ଧୁଭବନରୁ ଲୁଚ ଯାଇଥିଲା । ପହିଲି ପ୍ରେମର ଅସମାଧିତ ପ୍ରଣୟ କାହାଣୀର ଏହା ଏକ ଭିନ୍ନ ରୂପାନ୍ତର ନୁହେଁ ତ ଆଉ କ'ଣ ?

ମାଣ୍ଡିଆ ଜାଣୁଥିଲା ଅନେକ ଦିନୁ । ତାର ଜୀବନ ବ୍ୟର୍ଥ ହୋଇଥିଲା । ପ୍ରଥମେ ବନ୍ଧାରଖି ଓ ପରେ ଆତ୍ମସାତ ଭାବରେ ସାହୁକାର ଜମି ଜବରଦସ୍ତ ରଖିଲା । ସାହୁକାର ବିରୁଦ୍ଧରେ କେଶ୍ କରି ମାଣ୍ଡିଆ ବିଦ୍ରୋହୀ ମନର ପରିଚୟ ଦେଲା, ମାତ୍ର କେଶ୍‌ରେ ସେମାନେ ହାରିଗଲେ । ପୁଞ୍ଜିବାଦ ପାଖରେ ଗରିବ ମୂଲିଆର ଶକ୍ତି ବା କେତେ ? ଭଉଣୀ ଜିଲିର ଅଧୋପତନର ମନ୍ତ୍ରି ସାହୁକାର । "ସେ ସମ୍ପତ୍ତି ଅର୍ଜିବାକୁ ଭଲପାଏ କିନ୍ତୁ ଘରେ ବାନ୍ଧିହୋଇ ରହିବାକୁ ଭଲପାଏ ନାହିଁ । ସେ ସ୍ତ୍ରୀ ଲୋକ ଗୋଟେଇ ଖେଳ ଖେଳି ଗଡ଼େଇଦେବାକୁ ଭଲପାଏ, କିନ୍ତୁ ସ୍ତ୍ରୀ ଲୋକ ପାଖେ ଫାସରେ ପଡ଼ିବାକୁ ଖୋଜେନାହିଁ ।" (ପୃ-୪୮୬) ତାର ଦାନବ ଯୌବନ ମଣିଷର ଦୁର୍ବଳତାକୁ ସ୍ୱୀକାର କରେନାହିଁ ।

ଗୋପୀନାଥ ପରଂପରା ସୂତ୍ରଠାରେ ଯେଉଁ ଗାନ୍ଧୀବାଦର ବୀଜ ବିସ୍ତାରିତ କରିଥିଲେ, ତାହାହିଁ ଉପନ୍ୟାସର ଶେଷ ଭାଗରେ ଫେରି ଆସିଲା । ମାଣ୍ଡିଆର ବିଦ୍ରୋହାତ୍ମକ ମନୋବୃତ୍ତି ମାର୍କସୀୟ ଶ୍ରେଣୀ ଚେତନାରେ ପ୍ରକଟିତ ହୋଇଥିଲେ ହେଁ ଡାରଉଇନ୍‌ଙ୍କ ବିବର୍ତ୍ତନବାଦ (evolutionary theory) ପରି ପିତୃ ପିତାମହର ସର୍ବସହଣୀ ମନୋଭାବ ନିକଟକୁ ଫେରି ଆସିଲା । ସେମାନେ ସାହୁକାର ପାଖରେ କ୍ଷମା ମାଗିବେ ଓ ଜମି ଫେରାଇ ନେବେ ।

କିନ୍ତୁ ସାହୁକାର ବାପ ପୁଅ ତିନଜଣଙ୍କ ମୁଣ୍ଡରେ ଉଜାଡା ଗୋଇଠା ଲଦି ଦେଲା । ରାମ ବିଶୋଇ ରାମଚନ୍ଦ୍ର ମଙ୍ଗରାଜଠୁ ଦୁର୍ଦ୍ଧର୍ଷ । ଜିଲିକୁ ଦେଖି ବାପ, ପୁଅ ଚର୍ଚ୍ଚିରେଇ ଉଠିଲାବେଳେ ତୀବ୍ର ଉପହାସରେ ପରଜାମାନଙ୍କ ବକ୍ଷ ବିଦୀର୍ଣ୍ଣ ହୋଇଗଲା । "ହଁ ଜିଲି । ଆଉ ଗୋଟାଏ ବଳି ଅଛି ପରା, ତାକୁ ବି ଆଣି ମତେ ଦେଇଯାଅ..." (ପୃ-୪୮୫) ଏହି ଅଶ୍ଳୀଳ ମନ୍ତବ୍ୟରେ ମାଣ୍ଡିଆ ବଣର ଜନ୍ତୁ ପାଲଟିଗଲା । "ଅଧର୍ମ କରି ଭୂମି ନେଲୁ ସିନା ସାହୁକାର ଭୋଗ କରିପାରିବୁ ନାହିଁ, ଭୋଗ କରିପାରିବୁ ନାହିଁ ।" (ପୃ-୪୮୬) ଏଇ ପଦେ କଥା ଓ ଟାଙ୍ଗିଆ ଚୋଟରେ ସାହୁକାରର କଳୁଷିତ ଆତ୍ମା,

ତାର ଯୌନ ଲାଳସା ଅତୃପ୍ତ ଥାଉ ପଛେ, ମୁକ୍ତ ହୋଇଗଲା । କିନ୍ତୁ ଜିଲିର ମନ ସେମିତି ଫାଙ୍କା ପଡ଼ିରହିଲା । ମାଣ୍ଡିଆ ପ୍ରେମ, ସ୍ୱପ୍ନ ପ୍ରଣୟର ଦୁଃଖଦ ପରିଣତି "ଆମେ ମଣିଷ ମାରିଛୁ, ଆମକୁ ଯୋଉଁ ଦଣ୍ଡ ଅଛି ସେଇ ଦଣ୍ଡ ଦିଅ" ଭିତରେ ଗୋଟାଏ ଅତୃପ୍ତ ତୃମାପର ଧୃର ବୁଲିଲା ନିଷ୍ଟୁର !

ତଥାପି ଯୌନଜୀବନର ସଂଘର୍ଷ ଭିତରେ ଉପନ୍ୟାସ ଘଟିତ ଘଟଣା, ଦୁର୍ଘଟଣା, ଫ୍ରଏଡୀୟ ଚିନ୍ତାବୃତ୍ତି ବିଶ୍ଳେଷଣରେ ଗୋପୀନାଥ ମାଣ୍ଡିଆ, ଜିଲି ଜୀବନର ଅସମାଧିତ ପ୍ରଣୟ କାହାଣୀ ପରିପ୍ରେକ୍ଷୀରେ ଉପନ୍ୟାସକୁ ପରିସମାପ୍ତି ପର୍ଯ୍ୟନ୍ତ ଟାଣି ଆଣିଛନ୍ତି । ମାର୍କସଙ୍କ ସଂଗ୍ରାମୀ ଇସ୍ତାହାର ଓ ଗାନ୍ଧୀଙ୍କ ମାନବବାଦୀ ଚିନ୍ତାଧାରାର ଅପୂର୍ବ ସମନ୍ୱୟ ପରଜାକୁ ଅଗ୍ରମୁଖର କରିଛି । ସୁକ୍ରୁ ପରିବାରର ବିଷାଦ, ଅଶ୍ରୁ ପରଜା ଉପନ୍ୟାସର ମୁଖ୍ୟ ସଂଚାଳକ ହେଲେ ମଧ୍ୟ ସମଗ୍ର ମାନବ ସମାଜର ଅପୂର୍ବ ଚିତ୍ତବୃତ୍ତି ବିଶ୍ଳେଷଣରେ, ଅସମାଧିତ ହୋଇପଛେ, ଗୋପୀନାଥ ପ୍ରଣୟ ଓ ତଜ୍ଜନିତ ବ୍ୟର୍ଥତା ଓ ତନ୍ମଧ୍ୟରେ ଆଂଶିକ ପରିଣତି ସଂପର୍କରେ ଯେପରି ଅନନ୍ୟ ଚିନ୍ତ ପ୍ରଯୋଜନା କରିଛନ୍ତି, ସମଗ୍ର ଭାରତୀୟ ଉପନ୍ୟାସ କ୍ଷେତ୍ରରେ ଏହାର ସ୍ଥାନ ସ୍ୱତନ୍ତ୍ର । ପରଜା ଜାତିର ଏ ମହାକାବ୍ୟର ପଟାନ୍ତର ନାହିଁ ।



The business of the novelist is not to relate great events but to make small ones interesting

—Arthur Schopenhauer—

# ସତ୍ୟବାଦୀ ଯୁଗର ସାହିତ୍ୟିକ ଆବେଦନ

• ଲଳିତ କୁମାର ଲେଙ୍କା

ଅତୀତ ଓ ବର୍ତ୍ତମାନକୁ ନେଇ ସାହିତ୍ୟ ହୁଏ ଭୂକିମନ୍ତ । ସେହି ଦୃଷ୍ଟିରୁ ଦେଖିଲେ ସତ୍ୟବାଦୀ ଯୁଗର ସାହିତ୍ୟିକ ବିକାଶ ପାଇଁ ଏକ ନିର୍ଦ୍ଦିଷ୍ଟ ଆବେଦନ ରହିଛି । ତାହାକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ ଯଥା —ରାଜନୀତିକ ଆବେଦନ,ସାମାଜିକ ଆବେଦନ ଓ ପୂର୍ବସୂରୀମାନଙ୍କର ସାହିତ୍ୟିକ ଅବେଦନ । ରାଜନୈତିକ ଦୃଷ୍ଟିରୁ ଦେଖିଲେ ବଙ୍ଗଭଙ୍ଗ ଓ ସ୍ୱଦେଶୀ ଆନ୍ଦୋଳନ, ବିହାର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ, ଓଡ଼ିଆ ଭାଷା ଓ ସଂସ୍କୃତିର ସୁରକ୍ଷା, ସମ୍ବଲପୁର କଚେରୀରୁ ଓଡ଼ିଆ ଭାଷାର ନିର୍ବାସନ ପ୍ରଭୃତି ଦ୍ୱାରା ଯେଉଁ ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା ତାହାର ପ୍ରତିଫଳନ ସତ୍ୟବାଦୀ ସାହିତ୍ୟରେ ଦେଖିବାକୁ ମିଳେ ।

ପର ଦୁଃଖରେ ଦୁଃଖୀ ଗଣବନ୍ଧୁ ଗୋପବନ୍ଧୁ, ଦାର୍ଶନିକ କବି ନୀଳକଣ୍ଠ, ସମାଜସେବୀ ହରିହର, ଐତିହାସିକ କୃପାସିନ୍ଧୁ, ନାଟ୍ୟକାର ଓ ଗାଥା କବି ଗୋଦାବରୀଶ ମିଶ୍ର, ଗାଳ୍ପିକ ତଥା ଔପନ୍ୟାସିକ ଗୋଦାବରୀଶ ମହାପାତ୍ର ପ୍ରଭୃତି ସତ୍ୟବାଦୀ ଯୁଗର ବରେଣ୍ୟ ସାହିତ୍ୟିକମଣ୍ଡଳୀଙ୍କ ସାରସ୍ୱତ ସାଧନାରେ ଏହି ଯୁଗଚେତନାହିଁ ବିଶେଷଭାବେ ପ୍ରକାଶିତ ।

## ଜାତୀୟତାବୋଧର ମାର୍ମିକ ସ୍ୱର ଝଙ୍କାର :—

ସତ୍ୟବାଦୀ ସାହିତ୍ୟର ଅନ୍ତସ୍ୱର ହେଉଛି ଜାତି ପ୍ରାଣତା । କାବ୍ୟ, କବିତା, ପ୍ରବନ୍ଧ, ଶିଶୁସାହିତ୍ୟ, ନାଟକ ଓ ଇତିହାସ ମାଧ୍ୟମରେ ଓଡ଼ିଶାର ଗୌରବମୟ ଐତିହ୍ୟକୁ ଚିତ୍ରିତ କରିବା ଥିଲା ସେମାନଙ୍କର ଧ୍ୟେୟ । ସ୍ୱାଧୀନତା ପୂର୍ବ ସାହିତ୍ୟର ବିଜାତୀୟ ଘଟଣାଗୁଡ଼ିକୁ ସମାଲୋଚନା କରି ଉଗ୍ର ଜାତୀୟ ଭାବକୁ ସାହିତ୍ୟ ମାଧ୍ୟମରେ ପ୍ରକାଶ କରିବାକୁ ସେମାନେ ଉଦ୍‌ଗ୍ରୀବ ହୋଇ ଉଠିଥିଲେ ।

ଭାର୍ଗବୀ ନଦୀକୂଳରେ ବଟବୃକ୍ଷମୂଳେ ପଣ୍ଡିତ ନୀଳକଣ୍ଠଙ୍କ ସହିତ ଶପଥହେଲ—ସରକାରୀ ଚାକିରୀ ଛାଡ଼ି ଦେଶ ପାଇଁ କାମ କରିବା ଓ ବର୍ତ୍ତମାନ ଦେଶକୁ ଯେପରି ଅବସ୍ଥାରେ ଦେଖିଛେ ମଲାବେଳେ ତାହାଠାରୁ ଉନ୍ନତତର ଭାବରେ ଦେଖିବା—ଏହାହିଁ ସୂଚାଇ ଦେଉଛି ତ୍ୟାଗୀ ଗୋପବନ୍ଧୁଙ୍କର ଗଭୀର ଦେଶ ପ୍ରୀତି ଓ ଆତ୍ମୋତ୍ସର୍ଗ ଜନିତ ସେବା ମନବୃତ୍ତି । "କଟକର ଶିଳାସେତୁ" "ଖଣ୍ଡଗିରି ଶିଖରେ" ଇତ୍ୟାଦି କବିତା ଓ "ବନ୍ଦୀର ଆତ୍ମକଥା"ଏଇ ଦେଶ ପ୍ରୀତିର ଏକ ଅମର ଆଲେଖ୍ୟ । ବନ୍ଦୀ ଥିଲାବେଳେ ଦେଶପ୍ରାଣ ଗୋପବନ୍ଧୁଙ୍କ ଶୋକାଭିଭୂତ ହୃଦୟରେ ପରିପ୍ରକାଶଘଟେ ବନ୍ଦୀରଆତ୍ମକଥା, ବନ୍ଦୀର ସ୍ୱଦେଶ ଚିନ୍ତା ପ୍ରଭୃତିରେ । ତାଙ୍କ କବିତାର କେତୋଟି ପଦ ଉଦାହରଣ ସ୍ୱରୂପ ଦିଆଯାଇପାରେ— "ମିଶୁ ମୋର ଦେହ ଏ ଦେଶ ମାଟିରେ/ ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।" X X X "କାତରତା ବିନା କାପୁରୁଷ ପଣ / ବୀର ମାରେ ଅବା ମରେ କରି ରଣ ।"

ସତ୍ୟବାଦୀ ସାହିତ୍ୟରେ ଜାତୀୟତା ଭାବ ସୃଷ୍ଟି କରିବା ପାଇଁ ପଣ୍ଡିତ ନୀଳକଣ୍ଠଙ୍କର ମଧ୍ୟ ଅବଦାନ କମ୍ ନୁହେଁ । ଗଦ୍ୟ ସାହିତ୍ୟ ଦୃଷ୍ଟି କୋଣରୁ ବିଚାରକଲେ ଆମ ଆଖିଆଗକୁ ଚାଲିଆସେ ତାଙ୍କର ଅମରକୃତି "ଓଡ଼ିଆ ସାହିତ୍ୟର କ୍ରମ ପରିଣାମ ।" ଏହି ପୁସ୍ତକ ମାଧ୍ୟମରେ ସେ ଗୋଟିଏ ଯୁଗର ନୂତନ ମୋଡ଼ ବଦଳାଇ ଦେଲେ । ପ୍ରାବନ୍ଧିକ ଭାବରେ ସେ ସ୍ପଷ୍ଟବାଦୀ ଓ କଷ୍ଟ ସହିଷ୍ଣୁ । କାବ୍ୟ ଓ କବିତା ସୃଷ୍ଟିରେ ତାଙ୍କର ଜାତୀୟତା ଭାବର ଅଫୁରନ୍ତ ସ୍ଫୁରଣ ଆମେ ଦେଖିବାକୁ ପାଉ । ୪ଠ୍ ବର୍ଷ ପରିରେ କବି ଅତୀତ ଦିନର ରୋମନ୍ଥନ କରିଛନ୍ତି ତାଙ୍କର କୋଣାର୍କେ କାବ୍ୟ ମାଧ୍ୟମରେ । "କୋଣାର୍କେ"ର ରାମଚଣ୍ଡୀର ସନ୍ଧ୍ୟା ଅଂଶରେ ତାଙ୍କର ଜାତୀୟଭାବ ଫୁଟି ଉଠିଛି । "କେଉଁ ରାଇଜରୁ ଆସିଛୁ ! କହି ବିଦାସୀ ମୋରେ / ଓଡ଼ିଆ ବୋଇତ ଖବର କିଛି ଆଣିଛୁ କିରେ ?"

ସେ ଅତୀତକୁ ମନେ ପକାଇ ଦେଇଛନ୍ତି ଉତ୍କଳବାସୀଙ୍କର । ଯେଉଁ ଦେଶର ନର ନାରୀ ତା'ର ପୁତ୍ର ସ୍ୱାମୀକୁ ମସ୍ତକର ଭାଲପଟରେ ବିଜୟ ସିନ୍ଦୂର ପିନ୍ଧାଇ ଦେଇ ହସି ହସି ବିଦାୟ ଦିଏ ଓ ନିଜର କବରୀ ଉନ୍ମୁକ୍ତ ରଖେ ସ୍ୱାମୀ ରଣ ଜିଣି ଫେରିବା ପର୍ଯ୍ୟନ୍ତ । ସେହି କ'ଣ ଏହି ଉତ୍କଳ ?'କବରୀ ଫିଟାଇ ତରୁଣୀ ମଧୁ ସଜ୍ୟାବାସରେ/ରଣ ଜିଣି ଆସି ବାନ୍ଧିବ କାଲି ଛୁଡ଼ିବ ବାରେ ।'

ସତ୍ୟବାଦୀ ଯୁଗର ଅନ୍ୟତମ ବରେଣ୍ୟ କବି, ନାଟ୍ୟକାର, ଶିଶୁସାହିତ୍ୟିକ ତଥା ଜାତୀୟ ଚେତନାରେ ଉଦ୍‌ବୋଧିତ ସ୍ୱର୍ଗତ ଗୋଦାବରୀଶ ମିଶ୍ର । ସେ କଳ୍ପନାବିଳାସରେ

ବିଚରଣ ନ କରି ବିଚରଣ କରିଥିଲେ ଲୋକମାନଙ୍କର ବାସ୍ତବ ଜୀବନ ରାଜ୍ୟରେ । ତେଣୁ ତାଙ୍କ କୃତି ଲୋକପ୍ରାଣତାର ପ୍ରତିବିମ୍ବ । କଳିକା, କିଶଳୟ ଓ ଆଲେଖିକା କବିତା ଗୁଡ଼ିକ ଗାଥା କବିତାର ଗୋଟେ ଗୋଟେ ନମୁନା । ଯାଅ ହେ କୃଶଳେ, ଆ-କା-ମା-ବୋଇ, କବିତାରେ କବି ଅତୀତ ଉତ୍କଳର ସ୍ମୃତି ସ୍ମରଣ କରିଅଛନ୍ତି— "ସରଗୁ ବଳିଏ ଜନନୀ ଭୂମିର ହେଲେ ଟିଳେ ଅପମାନ/ ସିଂହ ଗରଜନେ ଉଠିବେଟି ମାତି କୋଟି କୋଟି ତା ସନ୍ତାନ" । (ଯାଅ ହେ କୃଶଳେ)

ଐତିହାସିକ କୃପାସିନ୍ଧୁ ମିଶ୍ରଥିଲେ ଜଣେ ନୀରବ ସାଧକ । କାବ୍ୟ, କବିତା ଓ ନାଟକଆଦି ରଚନା ମାଧ୍ୟମରେ ଜାତୀୟତାର ସ୍ରୋତସ୍ୱିନୀରଧାରା ବୁହାଇ ଦେଇଥିବେଳେ କୃପାସିନ୍ଧୁ ସାହିତ୍ୟରେ ଏକ ଭିନ୍ନ ଦିଗ ଉତ୍କଳ ଗୌରବ ମଣ୍ଡିତ ଇତିହାସ ରଚନାରେ ମନ ଦେଇଥିଲେ । ତାଙ୍କ ରଚିତ କୋଣାର୍କ, ବାରବାଟୀ ଓ ଉତ୍କଳ ଇତିହାସରେ ସେ ଓଡ଼ିଶାର ଗଣଚେତନା ତଥା ଜାତୀୟତାର ବୀଜ ବପନ କରିବାକୁ ଶତଚେଷ୍ଟିତ ଥିଲେ ।

ଓଡ଼ିଶାର ଘରେ ଘରେ ଗୋଦାବରୀଶ ମହାପାତ୍ର ଉଗ୍ର ଜାତୀୟତାବାଦର ବାର୍ତ୍ତା-ବହ ରୂପେ ନିଆଁଖୁଣ୍ଟାର ପୃଷ୍ଠାମାଧ୍ୟମରେ ସୁପରିଚିତ ହେଲେହେଁ ଗୀତିକବି, ଗାଳ୍ପିକ ଔପନ୍ୟାସିକ ଭାବରେ ସେ ଓଡ଼ିଆ ଜନ ସମାଜରେ ବେଶ୍ ଅଦ୍ଭୁତ । ସେ ବ୍ୟଙ୍ଗାତ୍ମକ ଆଦର୍ଶକୁ ସାହିତ୍ୟରେ ରୂପ ଦେଇଥିଲେ । 'ଛଠକଂକାଳ' ତାଂଙ୍କର ଏକ ଜାତୀୟବାଦୀ କବିତା । ତାଙ୍କର ବଙ୍କାସିଧା, କଣ୍ଟାଫୁଲ, ହେ ମୋର କଲମ, ଆଦି କବିତା ଜାତୀୟ-ତାର ବାର୍ତ୍ତାବହ । ସେ ଲେଖିଛନ୍ତି ଦେଶପାଇଁ ଜାତିପାଇଁ ଯଦି କାମ ତାଙ୍କର କରିବାର ବାକି ତେବେ ମଲାପରେ ତାହା ପୂରଣ କରିବେ— ପୂରଣ କରିବି ଆଉ ଥରେ ଆସି / ସାଗରୁ ଜଳଦ ବାରିପରି ।"

ସଂକ୍ଷେପରେ ଏହା ହେଉଛି ସତ୍ୟବାଦୀ ଯୁଗର ସାହିତ୍ୟିକ ଜାତିପ୍ରାଣତାର ସ୍ଥୂଳ ପରିପ୍ରକାଶ ମାତ୍ର ।

**ବୈପ୍ଳବିକ ଅଭିବ୍ୟକ୍ତି**—ସ୍ରଷ୍ଟା ସବୁବେଳେ ତାର ସୃଷ୍ଟି ମଧ୍ୟରେ ଲୁକାୟିତ ହୋଇ କାବ୍ୟ କବିତାକୁ ଶ୍ରୀମଣ୍ଡିତ କରେ ଓ ସମାଜରେ ବୈପ୍ଳବିକ ପରିବର୍ତ୍ତନ ଆଣେ । ସତ୍ୟବାଦୀ ଯୁଗର ଗଦ୍ୟ ଓ ପଦ୍ୟ ଉଭୟ ସାହିତ୍ୟରେ ଏହି ପଦଧ୍ୱନୀ

ଦେଖିବାକୁ ମିଳେ । ସଂଗ୍ରାମୀଙ୍କବ ସେମାନେ ଶପଥ ନେଇଥିଲେ ସ୍ୱାଧୀନ ଚେତା ହୋଇ ଦେଶକୁ ସ୍ୱାଧୀନ କରିବା । ତେଣୁ ସେହି ସ୍ରଷ୍ଟାମାନଙ୍କରେ ବିପ୍ଳବ ଦେଖା ଦେଇ-ଥିଲା ! ଏହାକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ ! ୧- ସାମାଜିକ ବିପ୍ଳବ ଓ ୨- ବିଦେଶୀ ଶାସନରୁ ମୁକ୍ତି ପାଇଁ ବିପ୍ଳବ ।

ସେତେବେଳେ ଆମ ସମାଜରେ ଥିଲା ବାଲ୍ୟବିବାହ । ପୁରୁଣାକୁ ଧରିରଖିବା ଜିଦ୍, ନିଶ ନରଖିବା, ଲୁଙ୍ଗି ନପିନ୍ଧିବା ଇତ୍ୟାଦି କୁସଂସ୍କାର । ଗୋଦାବରୀଶ ମହାପାତ୍ରଙ୍କ "ନୀଳମାଷ୍ଟ୍ରାଣୀ" ଏକ ଶୋକାତୁର ବାଲ୍ୟବିଧବା ବ୍ରାହ୍ମଣ ଝିଅ ନୀଳର କରୁଣ ଆତ୍ମଲିପି । ଅଛୁଆଁ ହେବୁ, ନିଶ, ମୋ ନିଶ ପ୍ରଭୃତି ପଣ୍ଡିତ ନୀଳକଣ୍ଠଙ୍କ ପ୍ରବନ୍ଧ ଏହି ନିଶ ନରଖିବା, ଲୁଙ୍ଗି ନପିନ୍ଧିବା ଓ ପୁରୁଣା ଚଳଣୀ ବିରୁଦ୍ଧରେ ତୀବ୍ର ପ୍ରତିବାଦ ।

ବିଦେଶୀମାନଙ୍କ ବିରୁଦ୍ଧରେ ଯଦିଓ ପ୍ରତ୍ୟକ୍ଷ କାବ୍ୟ କବିତା ରଚିତ ହୋଇ ନଥିଲା ତେବେ ବହୁତ ଲେଖାଲେଖି ଚାଲିଥିଲା ବିଭିନ୍ନ ରାଜପୁତ କାହାଣୀ ଛଳରେ । ଉତ୍କଳର ଅତୀତ ଗ୍ରେମନ୍ଥନ କରିବା ଛଳରେ ଗୋପବନ୍ଧୁ ୧୪-୯-୧୯୨୧ ମହିଳା ସମାଜରେ କହିଥିଲେ ।

"ସହିବା ଯେ ସବୁ ଧରି ପଥରର ଛାତି ଚିରଦିନ ନଥିବ ଏ ଅମାବାସ୍ୟା ରାତି ।"

ଗୋଦାବରୀଶ ମିଶ୍ର ଲେଖିଛନ୍ତି 'ଅଭିରାମ ସିଂ କବିତାରେ, —

ସିଂହ ପିଲା ହୋଇ ଶୃଗାଳ ପରାଏ, ରହିଛୁ କୋଟରେ ନିଜ/ନିଜଗାଁ, ନିଜଗାଁ ବନସ୍ତରେ ବାଇରି ତାଣ୍ଡବ ଦେଖି ।'

ଗୋଦାବରୀଶ ମହାପାତ୍ର ଏହି ବୈପ୍ଳବିକ ଚିନ୍ତାଧାରାକୁ ଅତି ବ୍ୟଙ୍ଗାତ୍ମକ ଭାବେ ପ୍ରକାଶ କରିଛନ୍ତି । ଦେଶରେ ପୁଞ୍ଜିଭୂତ ଅତୃପ୍ତି ଅସନ୍ତୋଷ ଶ୍ବେତବର୍ଣ୍ଣଙ୍କ ବିରୁଦ୍ଧରେ ସେ ଆହ୍ୱାନ ଦେଇଛନ୍ତି—

"ଧାନ ମିଳୁନାହିଁ······ଅସନ୍ତୋଷରେ ମାଗ/ଜଳୁ ଘରଆଡରେ ଅସନ୍ତୋଷର ନିଆଁ/
ହେ ଅଭିଶପ୍ତ ଆଜି ଏତେବେଳେ ଜାଗ/ଯେତେ ଯହିଁ ଅଛ ଅଧଖିଆ ଦରଖିଆ ।"

କୁଟୀର ଶିଳ୍ପ ସପକ୍ଷରେ ଓ ଯନ୍ତ୍ର ଶିଳ୍ପର ବିରୁଦ୍ଧରେ ବିପ୍ଳବର ସ୍ୱର ସୃଷ୍ଟି କରିଛି ମହାପାତ୍ରଙ୍କ ଗଳ୍ପ "ମାଗୁଣିର ଶଗଡ଼" ।

ଅତୀନ୍ଦ୍ରିୟ ଚେତନାର ସ୍ଫୁରଣ :—

ସୁଦୂର ଗିରିକନ୍ଦରରୁ ତଟିନୀ କଳ କଳ ନିନାଦ କରି ଝରିଆସି ମିଶିଯାଏ ଉତ୍ତାଳ ତରଙ୍ଗାୟିତ ସମୁଦ୍ର ବକ୍ଷରେ । ସେହିପରି ସ୍ରଷ୍ଟାର ଇନ୍ଦ୍ରିୟାନୁଭୂତିରୁ ହିଁ ଜନ୍ମନିଏ କବିତା କିନ୍ତୁ ତା'ର ଲକ୍ଷ୍ୟ ଓ ପରିସମାପ୍ତି ଅତୀନ୍ଦ୍ରିୟବୋଧରେ ହିଁ ସଂଘଟିତ ହୋଇ-ଥାଏ । କବି ଗୋପବନ୍ଧୁ ଓ ଅନ୍ୟାନ୍ୟ ସତ୍ୟବାଦୀ ସାଧକବୃନ୍ଦ ସଂଗ୍ରାମର ରଙ୍ଗମଞ୍ଚରେ ଦେଶସେବାରେ ବ୍ରତୀ ହୋଇ ମଧ୍ୟ ବିଭୁବନ୍ଦନାକୁ ଛାଡ଼ି ପାରି ନାହାନ୍ତି । ଏ ଯୁଗର କବି ମଧ୍ୟ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ସାରଳା ଦାସ, ବଳରାମ ଦାସ ଓ ଜଗନ୍ନାଥ ଦାସଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରି ସେମାନଙ୍କର ଗୁଣ କୀର୍ତ୍ତନ କରିଛନ୍ତି । ଏହି ଆଧ୍ୟାତ୍ମିକ ଭାବଧାରା ଯୁଗୀୟଚେତନାରେ ପ୍ରତିଫଳିତ ହେବା ସ୍ୱାଭାବିକ ।

ସମାଜସେବୀ, ଦେଶପ୍ରାଣ ଗୋପବନ୍ଧୁ ଯେତେବେଳେ ସମାଜର ଶତ କଷାଘାତରେ ମଳିନ ସେତେବେଳେ ସେ ଭାଗ୍ୟକୁ ଦୋଷ ଦେଇ ତାଙ୍କର ମର୍ମାନ୍ତିକ ବେଦନାକୁ ଢ଼ାଳି ଦେଇଛନ୍ତି ବିଭୁଙ୍କ ପଦ କମଳରେ ।

"ମୁଁ ଅତି ସାମାନ୍ୟ ମୋର ସାମାନ୍ୟ କାମନା

ପୂରୁ ମାତଃ ବାକ୍ୟଦେବୀ ତୋହର ପ୍ରସାଦେ ।"

ପଣ୍ଡିତ ନୀଳକଣ୍ଠ ପ୍ରଥମେ କେତୋଟି ଇଂରାଜୀ କାବ୍ୟ କବିତାକୁ ମର୍ମାନୁବାଦ କରିବା ପରେ ପରେ ତାଙ୍କ କାବ୍ୟମାନସକୁ ସ୍ୱତଃ ବିଭୁଚେତନା ପଶି ଆସିଥିଲା । ତାଙ୍କର ଆର୍ତ୍ତବାଣୀ, ପ୍ରଶ୍ନବାଣୀ, ଭକ୍ତିବାଣୀ, ଆତ୍ମବାଣୀ, କାହାକୁ ବସିଛୁ ଗୁହିଁ, ଉପାସନା ପ୍ରଭୃତି କବିତା ଏହି ବିଭୁବୋଧ ପାଇଁ ପ୍ରସିଦ୍ଧ । ସେ ପ୍ରଶ୍ନବାଣୀରେ ଲେଖିଛନ୍ତି —

"କାହିଁ ଅଛ କାହିଁ ଅଛ, କେଉଁ ଶୂନ୍ୟଦେଶେ

ମହାସ୍ଥିତି ଅନ୍ତରାଳେ, କି ଶୂନ୍ୟ ବିକାଶେ ।"

ଶିଶୁ ସାହିତ୍ୟର ରଚୟିତା ଗୋଦାବରୀଶ ମିଶ୍ରଙ୍କ କବିତାରେ ଏହି ଅତୀନ୍ଦ୍ରିୟ ଚିନ୍ତାଧାରା ପ୍ରତିଫଳନ ଦେଖିବାକୁ ମିଳେ । ତାଙ୍କର "ଆରାଧି" "ଦୀଆସିବ ନାହିଁ" ଇତ୍ୟାଦି କବିତାରେ ଏହି ଭାବନା ସ୍ପଷ୍ଟ । ଯଥା—

"ତା ମଧ୍ୟେ ଦେଖିଲି ମୁହିଁ ଗୋ ପ୍ରୀତି ପସରା

ହସ ହସେ ଚାହୁଁଛନ୍ତି ବ୍ୟାପି ବ୍ୟୋମ ଧରା ।" - (ଦୀଆସିବ ନାହିଁ)

ଏହି ଶୂନ୍ୟ ଆକାଶ ମଧ୍ୟରେ ଭଗବାନଙ୍କର ଅସ୍ତିତ୍ୱକୁ ଅନୁଭବ କରି ପାରିଛନ୍ତି । ତାଙ୍କର ସୃଷ୍ଟିରେ ଏ ସୃଷ୍ଟି ସୁନ୍ଦରମୟ । ଏହି ସୃଷ୍ଟିରେ ବାଳକ ତଥା ଶିଶୁମାନେ ହେଉଛନ୍ତି ଗୋଟିଏ ଗୋଟିଏ ସୁମନ କଳିକା ।

ସତ୍ୟବାଦୀର ଶେଷ ରଶ୍ମି ଗୋଦାବରୀଶ ମହାପାତ୍ରଙ୍କ କବିତାରେ ଏହି ଅତୀନ୍ଦ୍ରିୟ ଚେତନା ପରୋକ୍ଷ ଭାବେ ପ୍ରତିଫଳିତ ହୋଇଛି ! ସେ ଭଗବାନଙ୍କ ସଂସାରରେ ପୁନର୍-ଜନ୍ମକୁ ବିଶ୍ୱାସ କରି ଆଶା କରିଛନ୍ତି ମୃତ୍ୟୁପରେ ବି ଏ ସମାଜର ସେବା ପାଇଁ ପୁଣି ଜନ୍ମ ନେବେ । ଏହି ଆଶାବାଦ ମଧ୍ୟ ଦେଇ ସେ ଭଗବାନଙ୍କଠାରେ ପ୍ରାର୍ଥନା କରିଛନ୍ତି ପୁନର୍ଜନ୍ମ ଲାଗି ।

ପ୍ରେମାନୁଭୂତି ଓ ଆଦର୍ଶବାଦ:—

ସତ୍ୟବାଦୀ ଯୁଗର ପ୍ରେମାନୁଭୂତିକୁ ତିନୋଟି ଭାଗରେ ବିଭକ୍ତ କରାଯାଇପାରେ ଯଥା (କ) ଦେଶ ପ୍ରେମ (ଖ) ମାନବୀୟ ପ୍ରେମ ଓ (ଗ) ପ୍ରକୃତି ପ୍ରେମ । ଏହି ପରିପ୍ରେକ୍ଷୀରେ ସତ୍ୟବାଦୀ ଯୁଗର କେତୋଟି ସାହିତ୍ୟକୃତି ବିମର୍ଷ । ସତ୍ୟବାଦୀ ଯୁଗର ପ୍ରେମାଦର୍ଶ ଥିଲା ଗମ୍ଭୀର ଓ ସମାଜ ସଚେତନ ତଥା ଅନ୍ତର୍ଦୃଷ୍ଟି ସଂପନ୍ନ । ଏହି ଆଦର୍ଶ ପ୍ରେମାନୁ-ଭୂତିର ବର୍ଣ୍ଣନା ପାଇଁ ପ୍ରେରଣା ଦେଇଛି । ରାଧାନାଥୀୟ ସାହିତ୍ୟରେ ଲୋକଚକ୍ଷୁରେ ନିନ୍ଦିତ ପ୍ରେମର ଅସଫଳ ବର୍ଣ୍ଣନା ।

ତତ୍କାଳୀନ ଯୁଗରେ କିଛି ନୂତନ ଆଲୋକପାତ କରିବା ଥିଲା ଏହି ଯୁଗୀୟ କବି ମାନଙ୍କର ଆଭିମୁଖ୍ୟ । ମନୁଷ୍ୟକୁ ମନୁଷ୍ୟ ଭାବରେ ଦେଖିବାକୁନେଇ ଏମାନେ ପ୍ରଥମେ ଦେଶମାତୃକାକୁ ବଡ଼ ବୋଲି ଭାବ ସୃଷ୍ଟି କଲେ ଦେଶାତ୍ମବୋଧକ କବିତା, କାବ୍ୟ ଆଦି । ତା'ପରେ ସୃଷ୍ଟି କଲେ ମାନବିକ ପ୍ରେମଧର୍ମର ସୁନ୍ଦର ଅଟ୍ଟାଳିକା । ଯାହା କୌଣସି ଆଘାତରେ ମଳିନ ହେବାତ ଦୂରର କଥା କାଳର କରାଳ ଗତିରେ ସେ ପ୍ରେମ ହେଉଛି କାଳଜୟୀ, ମୃତ୍ୟୁଞ୍ଜୟୀ । ଏହି ସ୍ୱର୍ଗୀୟ ପ୍ରେମର ଅବଗାହନ କଲେ ମଣିଷ ପବିତ୍ର ହୁଏ । ଏ ପ୍ରେମରେ ଦୈହିକ ମିଳନର ଆଶାନାହିଁ ଏଥିରେ ଅଛି ଶୁଭ୍ରତା ଓ ଓ ପବିତ୍ରତା । ଏହା ପଣ୍ଡିତ ନୀଳକଣ୍ଠଙ୍କ ମାୟାଦେବୀ ଓ କୁମାରସିଂହଙ୍କ ପ୍ରେମରୁ ଠିକ ଭାବେ ବାରି ହୋଇପଡେ । ଏଠି ଅଛି ମନସହି ମନ, ହୃଦୟ ସହି ହୃଦୟ ଓ ଆତ୍ମା ସହି ଆତ୍ମାର ବନ୍ଧନ । ଏ ପ୍ରେମ ସଚ୍ଚିଦାନନ୍ଦମୂର୍ତ୍ତ ଅନାବିଲ ଚିର ଶାଶ୍ୱତ ପ୍ରେମ ।

ଗୋପବନ୍ଧୁ ଓ ଅନ୍ୟାନ୍ୟ ସତ୍ୟବାଦୀ ଲେଖକଙ୍କ କୃତିରେ ଏହି ପ୍ରେମର ସ୍ୱାକ୍ଷର ଜାଜ୍ୱଲ୍ୟମାନ ।

ତତ୍ତ୍ୱଗତଭାବେ ହେଉଛି ପ୍ରକୃତ ପ୍ରେମ । ଏହି ପ୍ରକୃତ ପ୍ରେମ ଅତି ସରଳ ତରଳ ଭାବରେ ସତ୍ୟବାଦୀ ଯୁଗର ସାହିତ୍ୟରେ ପ୍ରତ୍ୟକ୍ଷମାନ ହୋଇଥାଏ । ଗୋଦାବରୀଶ ମିଶ୍ରଙ୍କର ହୃଦୟର ଅମୂଲ୍ୟମଣି, ବଚ୍ଛେଦଭରୀ, ଜଗା, ସ୍ମୃତି କଣଳସ୍ଥ, ଆଲେଖିକା ପ୍ରଭୃତିରେ ଏହା ଦେଖିବାକୁ ମିଳିଥାଏ ।

ଏ ସଂପର୍କରେ ବିଭିନ୍ନ ଉଦାହରଣ ଦିଆଯାଇପାରେ—ବିଭିନ୍ନ କବିଙ୍କ ଲେଖନୀରୁ—
ସ୍ୱଦେଶ ପ୍ରୀତି—"ସାର୍ଥକ ଜୀବନ ତାର ଏକା ସିନା!
ପରହିତେ ଜାଣ ପ୍ରାଣ (ଧର୍ମପଦ-ଗୋପବନ୍ଧୁ)

ମାନବୀୟ ପ୍ରେମ—'ଆତ୍ମା ଗୋ ପ୍ରେୟସି ତେଜି ରକ୍ତ ମାଂସ ତନୁ/ଅନୁସର
ଅନ୍ତର୍ମୁଖୀ ରହି କେତେ ଦିନୁ ।' (ପ୍ରେତାତ୍ମା ପ୍ରେମିକ–ଗୋଦାବରୀଶ ମିଶ୍ର)
'ତରୁଣ ତରୁଣୀ ପରଶ ପଲକେ/ମିଶଇ ପରଶ ଅନନ୍ତ ସୁଖ/ଗଗନ ମେଦିନୀ ନିକଟ ସେବିକା ହଣଇ ବିଜୁଳି ଚମକ ଲେଖେ' (କୋଣାର୍କେ-ନୀଳକଣ୍ଠ ଦାସ)

ପ୍ରକୃତି ପ୍ରୀତି—ଗୋଦାବରୀଶଙ୍କ ଲେଖନୀରେ ପ୍ରକୃତିବାଣୀ ଅପୂର୍ବ ଶୋଭାନେଇ ଠିଆ ହୋଇଛି । ତାଙ୍କର କବିତା କାକଳି, ପ୍ରବାସ-ପ୍ରଭାତ, ସାୟାହ୍ନେ ଅବକାଶ ଚିନ୍ତା ଇତ୍ୟାଦିରେ ଏହା ସ୍ପଷ୍ଟ ଯଥା—ଉଚ୍ଛୁଳ ପଡ଼ୁଛି ବନ ନିକୁଞ୍ଜ ସକଳ
ମୃଦୁ କଂପେ ଦୋଳୁଅଛି ପତ୍ର ଫୁଲଫଳ (କାକଳି)

## ଲୋକଗାଥାର ମାନବଧର୍ମୀ ବର୍ଣ୍ଣନା:—

ସତ୍ୟବାଦୀଯୁଗୀୟ ସାହିତ୍ୟ ଚିନ୍ତାଧାରା ହେଉଛି ଗଣମୁଖୀ ଚିନ୍ତାଧାରାର ପୁଷ୍କଳ ପରପ୍ରକାଶ । ଜୀବନ ସଂଗ୍ରାମର ଭାବଧାରାକୁ ଲୋକ ସମ୍ମୁଖରେ ପହଞ୍ଚାଇବା ହେଲା ଏହି ଯୁଗର ପ୍ରଥମ ଚିନ୍ତାଧାରା । ତେଣୁ ଏମାନେ ରୂପ ଦେଲେ ଏଇ ମାଟିର ଧୂଳି ଧୂସରିତ କୃଷକ ପୁଅର ମନମତାଣିଆ ସ୍ୱର, ତନ୍ତ୍ରୀମାନଙ୍କର ଲୁଗାବୁଣା, ବିଭିନ୍ନ ପାହାଡ଼, ନଦୀ ଓ ସର୍ବଶେଷରେ ଏକ ମାନବିକ ଆବେଦନ ଦେଇ ଲୋକ ଅନ୍ତରର ବିଶ୍ଳେଷଣ ।

ସେତେବେଳେ ମୁଖ୍ୟ କାର୍ଯ୍ୟଥିଲା ଦେଶାନୁରାଗ ସହିତ ବିଶ୍ୱ ପ୍ରୀତିକୁ ଉଜ୍ଜୀବିତ କରିବା । ତେଣୁ ଏହି ବାଣୀକୁ ସରଳ, ତରଳ, ଭାଷା ବିନ୍ୟାସ ମଧ୍ୟଦେଇ

ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ଥିଲା ପ୍ରଧାନ ଲକ୍ଷ୍ୟ । ସେଥିପାଇଁ ସେମାନେ ସମାଜର ବିଭିନ୍ନ ଲୋକ କଥା ଓ କୁସଂସ୍କାରକୁ ନେଇ ରଚନା କଲେ ସଂସ୍କାରଧର୍ମୀ ସାହିତ୍ୟ । ଜନସାଧାରଣଙ୍କ ଦୁଃଖରେ ସମଦୁଃଖୀ ହୋଇ ଏମାନଙ୍କ ପ୍ରାଣ କାନ୍ଦି ଉଠିଛି ।

ଲୋକସେବା ଥିଲା ଏହି କର୍ମୀମାନଙ୍କର ଜୀବନ ବ୍ରତ । ଏମାନେ ଥିଲେ ଦେଶର ପ୍ରକୃତ ସେବକ ଯେ କି ଲୋକମାନଙ୍କ ଦୁଃଖ ଦେଖି ଆଖିରୁ ଲୁହ ଢାଳି ସମବେଦନା ଜଣାଇ ପାରୁଥିଲେ । କାବ୍ୟ କବିତା ମାଧ୍ୟମରେ କି ଧନୀ, କି ଦରିଦ୍ର ସମସ୍ତଙ୍କ ମୁହଁରେ ହସ ଫୁଟାଇବା ଏହି କବିମାନଙ୍କର ଥିଲା ଲକ୍ଷ୍ୟ । ଏହି ସାହିତ୍ୟ ହିଁ ଗଣସାହିତ୍ୟ ବା ଜନ ସାହିତ୍ୟ । କିନ୍ତୁ ପଣ୍ଡିତ ନୀଳକଣ୍ଠଙ୍କ ପକ୍ଷରେ ସବୁ କ୍ଷେତ୍ରରେ ଏପରି ଅନୁସରଣ କରିବାରେ ଫଳପ୍ରଦ ହୋଇ ନାହାନ୍ତି । ଭାବର ଗମ୍ଭୀରତା ଓ ଉଗ୍ର କଳ୍ପନା ବିଳାସରେ ତାଙ୍କର କେତେକ କାବ୍ୟ କବିତା ବୁଢ଼ିମନ୍ତ ।

ଲୋକ ଗାଥାରେ କିପରି ଅନାବିଳ ମାନବିକ ସ୍ପର୍ଶ ଦିଆଯାଇଛି ତାର କେତୋଟି ଦୃଷ୍ଟାନ୍ତ ଦିଆଯାଇପାରେ । ମାଆ ପୁଅର ଅନାବିଳ ସ୍ନେହକୁ ଗୋଦାବରୀଶ ମିଶ୍ର ସୁଦୂର କଲିକତାରେ ରହି ମନେ ପକାଇଛନ୍ତି—

"ମାଆ ବସି ଭାବୁଥିବେ ଦୂର ପରବାସ କଥା
ଯାଅ ବାବୁ କହିଦେବେ ସେନେହେଁ ଆଉଁସି ମଥା ।" (ଯାଅ)
"ଲୁଗାରେ ହଳଦି ଲଗାଇ ଗୁହିଁଥିବେ ଜନନୀ
ପିଠାପଣା ଖାଉ ନଥିବେ ସୁଖେ ଆଜି ଭଗିନୀ ।" (କୋଣାର୍କେ)

ସମାଜର ଦୋଷ ତ୍ରୁଟି ବିରୁଦ୍ଧରେ ଗୋଦାବରୀଶ ମହାପାତ୍ର (କଣ୍ଟା ଓ ଫୁଲ)

"ଦରମାଟା ମିଳେନାହିଁ ଠିକ୍ ସମୟରେ କାହିଁ
ଠିକ୍ ସାଢେ ଦଶଟାରେ ଅଫିସ କେ ଯାଏନାହିଁ ।"

ସର୍ବୋପରି କହିବାକୁ ଗଲେ ବୁଦ୍ଧିବାଦ, ଆଦର୍ଶବାଦ, ଜାତୀୟବାଦ, ଗଣବାଦ, ମାନବବାଦ ଓ ସ୍ୱଚ୍ଛନ୍ଦତାବାଦକୁ ନେଇ ସତ୍ୟବାଦୀ ଯୁଗ ହୋଇଛି ବିଭବଶାଳୀ । ଜନମାନସରେ ଜାତୀୟତାବୋଧ ପାଇଁ ଏ ସାହିତ୍ୟ ଯୋଗାଇଛି ଅଶେଷ ପ୍ରେରଣା । ପ୍ରେମ ବର୍ଣ୍ଣନାରେ ଦେଖାଦେଇଛି ଶୁଦ୍ଧତା, ଦୃଢ଼ତା, ଆଦର୍ଶବାଦ ତଥା ପୌରୁଷର ଏକ କମନୀୟ ପରିପ୍ରକାଶ । ଏ ଯୁଗର ସାହିତ୍ୟ ହେଉଛି ଜନସାହିତ୍ୟ ବା ଗଣସାହିତ୍ୟ । ସତ୍ୟବାଦୀ କର୍ମୀଙ୍କ ଆତ୍ମୋତ୍ସର୍ଗରେ ଓଡ଼ିଆ ସାହିତ୍ୟ ହୋଇଛି ବୌଦ୍ଧିକତା ତଥା ପ୍ରାକୃତିକ ଜୀବନଧାରାର ଏକ ସମନ୍ୱୟବାଦୀ ସାହିତ୍ୟ । □□□

# ସାଂପ୍ରତିକ ଓଡ଼ିଆ ଶିଶୁ କବିତାର ଉଦ୍ଦେଶ୍ୟ ଓ ଅଭିମୁଖ୍ୟ

• ଶ୍ରୀ ସୁନାମଣି ରାଉତ

---

ଆମ ଶିଶୁସାହିତ୍ୟର ଯେଉଁ ସୁଦୃଢ଼ ପରଂପରା ରହିଛି, ତାହା ଆମଗାଁ ଅଥବା ଆପଣଙ୍କ ଗାଁମୁଣ୍ଡ ବୁଢ଼ା ବରଗଛର ଚେରଠାରୁ ଆହୁରି ପ୍ରାଚୀନ । ଏବେବି ସନ୍ଧ୍ୟାପହରେ ଆଈମା'ର ଗପ ଶୁଣିବାକୁ ଆମ ପିଲାଏ ଅଗଣା ଉପରେ ମେଳବାନ୍ଧିବାର ଦେଖାଯାଏ । ରାଜା ପୁଅ ମନ୍ତ୍ରୀ ପୁଅ କଥା, ବୁଢ଼ୀ ଅସୁରୁଣୀ କଥା, ପଶୁରାଇଜର କାହାଣୀ ଶୁଣିବାକୁ ପିଲାମାନେ କେତେ ଆଗ୍ରହ ପ୍ରକାଶ ନକରନ୍ତି ସତରେ ! "କଲୁରାବେଣ୍ଡ କଥା" କହୁ କହୁ ଆମ ଆଈବୁଢ଼ୀ ପଦଟିଏ ଯୋଡ଼ିଦିଏ —

"ଦେ' କମାର ଦେ ଦା', କାଟେ ଘାସ/ଖାଉ କାଳଗାଈ ଦଉ ଦୁଧ/ଖାଉ ମିରଗ ଦଉ ଶିଙ୍ଗ, ଖୋଳେମାଟି / ଗଢ଼ୁ କୁମ୍ଭାର କଳସୀଗୋଟି / କାଢ଼େ ପାଣି ଧୁଏ ଅଣ୍ଟ / ଧାଇଁ ଧାଇଁ ଖାଏ କଲୁରାବେଣ୍ଡ ।"

ଶିଶୁ ଏଇମିତି ସହଜ ସରଳ କଥାବସ୍ତୁକୁ ବେଶ ଭଲପାଏ । ଆଈବୁଢ଼ୀର ଏଇ ସବୁ ମନଗଢ଼ା କଥା କାହାଣୀ, କବିତା ହେଉଛି ଆମ ଶିଶୁ ସାହିତ୍ୟର ମୂଳଉତ୍ସ । ଏଗୁଡ଼ିକ ନିରର୍ଥକ ଶବ୍ଦଗୁମ୍ଫନ ମଧ୍ୟରେ ଗଢ଼ିଉଠିଥିଲେ ମଧ୍ୟ ଏହା ସରଳ ଶିଶୁପ୍ରାଣରେ ଯେଉଁ ସ୍ୱର୍ଗୀୟ ଆନନ୍ଦ ସୃଷ୍ଟି କରିଥାଏ, ତାହା ଅବର୍ଣ୍ଣନୀୟ । ପରବର୍ତ୍ତୀ ପର୍ଯ୍ୟାୟରେ ଓଡ଼ିଆ ଶିଶୁକବିତା ଦିନେଇ ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ମାର୍କଣ୍ଡ ଦାସ, ଭକ୍ତଚରଣ ଦାସ, ଦୀନକୃଷ୍ଣ ଦାସ ପ୍ରମୁଖଙ୍କ ଲେଖନୀ ସ୍ପର୍ଶରେ ପୁଷ୍ଟିଲ ହୋଇଉଠିଛି । ଶିଶୁସାହିତ୍ୟର ଧର୍ମ ଦୃଷ୍ଟିରୁ ଏଗୁଡ଼ିକ ଯଥାର୍ଥ ଶିଶୁସାହିତ୍ୟ ପଦବାଚ୍ୟ ନହେଲେ ମଧ୍ୟ ପ୍ରାଚୀନ ଶିଶୁଶିକ୍ଷା ପଦ୍ଧତିକୁ ଏମାନଙ୍କ କାବ୍ୟ, କବିତା, ଚଉପଦୀ, ଚଉତିଶା, କୋଇଲି, ବୋଲି ପ୍ରଭୃତି ରଚନାଗୁଡ଼ିକ ବୁଦ୍ଧିମନ୍ତ କରିଛି ବୋଲି କହିଲେ ଅଯୁକ୍ତି ହେବନାହିଁ । ସେହିପରି ଆଧୁନିକ ଶିଶୁସାହିତ୍ୟର ପ୍ରଗତି ଓ ପ୍ରସାର କ୍ଷେତ୍ରରେ ମଧୁସୂଦନ ରାଓ,

ନନ୍ଦକିଶୋର ବଳ, ବାଳକୃଷ୍ଣ କର, ଗୋଦାବରୀଶ, ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପ୍ରମୁଖଙ୍କ ଅବଦାନ ଆମର ପ୍ରାତଃସ୍ମରଣୀୟ, ମଧୁସୂଦନଙ୍କ ବର୍ଣ୍ଣବୋଧ, ବାଲବୋଧ, ଶିଶୁବୋଧ, ନନ୍ଦକିଶୋରଙ୍କ ନାନାବାୟାଗୀତ, ବାଲକୃଷ୍ଣଙ୍କ ଜହ୍ନମାମୁଁ, ଫୁଲଝୁଙ୍ଗୁଡ଼ି, ସପନପୁରୀ; ମଧୁକୋଷ ପ୍ରଭୃତି ପୁସ୍ତକ ଗୁଡ଼ିକ ଆମ ଶିଶୁସାହିତ୍ୟ (କବିତା)ର ବିକାଶ ପଥକୁ ସୁଗମ କରିଛି । ଏହିସବୁ ରଚନା ଗୁଡ଼ିକ ଶିଶୁର ନୈତିକ ଗୁଣର ବିକାଶ ଦିଗରେ ସହାୟ ହୋଇ ଥାଏ । ସୁନ୍ଦର ଶବ୍ଦ ସଂଯୋଜନା ଏବଂ ସାବଲୀଳ ପ୍ରକାଶ ଭଙ୍ଗୀ ମଧ୍ୟରେ ଏହିସବୁ କବିତା ଗୁଡ଼ିକ ସୃଷ୍ଟି ହୋଇଥିଲେ ମଧ୍ୟ ଏଥିରେ ଶିଶୁର ପ୍ରକୃତ ମନସ୍ତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ପରିଚୟ ମିଳେନାହିଁ । ବିଶ୍ୱପ୍ରେମ, ନୀତିଉପଦେଶ, ହାସ୍ୟରସର ମଧୁର ସମନ୍ୱୟ ଏହି ସବୁ କବିତା ଗୁଡ଼ିକୁ ପୁଷ୍ଟ କରିଛି । ବିଗତ ଦଶନ୍ଧିରେ ଓଡ଼ିଆ ଶିଶୁ କବିତାର ସୃଷ୍ଟି ଓ ବିକାଶର ପ୍ରଭୂତ ଉନ୍ନତି ସାଧିତ ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଶିଶୁମାନଙ୍କର ବୟସ କ୍ରମେ ସାଂପ୍ରତିକ ଓଡ଼ିଆ ଶିଶୁ କବିତାକୁ ମୁଖ୍ୟତଃ ତିନିଭାଗରେ ବିଭକ୍ତ କରିଯାଏ । ତାହା ହେଲା ୧) ପ୍ରାକ୍-ପ୍ରାଥମିକ ସ୍ତର(Pre-Primary Stage), ୨) ପ୍ରାଥମିକ ସ୍ତର (Frimary Stage) ୩) ମାଧ୍ୟମିକ ସ୍ତର (Secondary Stage) ।

୧) ପ୍ରାକ୍-ପ୍ରାଥମିକ ସ୍ତର (Pre-Primary Stage) :—

ଏହା ୧ବର୍ଷରୁ ୫ବର୍ଷ ଶିଶୁମାନଙ୍କ ପାଇଁ ଉଦ୍ଦିଷ୍ଟ । କାନ୍ଦିଲା ଶିଶୁକୁ ଶୁଆଇ ଦେବା ପାଇଁ ଅଥବା ଖୁଆଇ ଦେବାପାଇଁ ଓଡ଼ିଆ ଘରର ବୁଢ଼ୀମା' ବା ମା'ମାନେ ଯେଉଁ ନିରର୍ଥକ ଶବ୍ଦ ସମ୍ବଳିତ ଗୀତ ଗୁଡ଼ିକର ଆଶ୍ରୟ ନେଇଥାନ୍ତି ତାହା ହେଉଛି ଏହି ଶ୍ରେଣୀର କବିତା । ନନ୍ଦକିଶୋରଙ୍କର ବହୁ କବିତା ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଛି । ଅର୍ଥାତ ଶିଶୁକୁ ବୋଧ କରିବାପାଇଁ ଆମ ମା'ମାନେ ଗୀତ ଗାଆନ୍ତି— "ଧୋଓରେ ବାଇଆ ଧୋଓ / ଯେଉଁ କିଆରେ ବହିଲ ମାଣ୍ଡିଆ ସେଇ କିଆରିରେ ଶୋଓ ।" X X X / ବାଇଆ ମା'ଯେ ନଖାଏ କୁଣ୍ଡା ପୁଅ ଅବେଇଛି ନଂଗଳ ମୁଣ୍ଡା / ପୁଅକୁ ଖାଇଲା ହଡ଼ ମୁଣ୍ଡରେ ପିମ୍ପୁଡ଼ି ଖାଇଲା ନାଇ ମୁଣ୍ଡରେ ।

ସାଂପ୍ରତିକ ଶିଶୁ କବିତା କ୍ଷେତ୍ରରେ ଏ ବିଭାଗରେ ଯେଉଁମାନେ ଲେଖନୀ ଚାଳନା କରୁଛନ୍ତି ସେମାନଙ୍କ ମଧ୍ୟରେ ଅନନ୍ତ ପଟ୍ଟନାୟକ' ଡ଼ଃ ପ୍ରସନ୍ନକୁମାର ମିଶ୍ର ଏବଂ ମନୋରମା ମହାପାତ୍ର ଅନ୍ୟତମ ।

୨) ପ୍ରାଥମିକ ସ୍ତର (Primary Stage)—

ଏ ପ୍ରକାର କବିତା ମୁଖ୍ୟତଃ ୫ବର୍ଷରୁ ୯ବର୍ଷର ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ । ଅକ୍ଷର ଶିକ୍ଷାଠାରୁ ଆରମ୍ଭକରି ପଢ଼ି ଶିଖିବା ଯାଏ ଯେଉଁ ସମୟର ବ୍ୟବଧାନ ଥାଏ ସେଥିରେ ପିଲାମାନଙ୍କ ମାନସିକ ଅଭିବୃଦ୍ଧି ପାଇଁ ଏପ୍ରକାର କବିତା ବେଶ ଖୋରାକ୍ ଯୋଗାଇଥାଏ । ଏଥିରେ ହିତୋପଦେଶ, ପ୍ରକୃତି ମୂଳକ, ଋତୁସମ୍ବନ୍ଧୀୟ, ହାସ୍ୟ ରସ ମୂଳକ, ପୁରାଣ ଇତ୍ୟାଦି ବିଷୟ ସବୁ ସନ୍ନିବେଶିତ ହୋଇଥାଏ । ସହଜ ସୁନ୍ଦର ଶବ୍ଦ, ସରଳତରଳ ଭାବ ଏବଂ ସ୍ୱର ଲହରର ଲାଳିତ୍ୟ ମଧ୍ୟରେ ଏ ପ୍ରକାର କବିତା ଚିହ୍ନିମନ୍ତ ହୋଇଛି ।

କ) ହିତୋପଦେଶ— ପିଲାମାନେ ଦୁନିଆର ସୁଖଦୁଃଖ ଏବଂ ଭଲମନ୍ଦ ବିଷୟରେ ସଂପୂର୍ଣ୍ଣ ଅନଭିଜ୍ଞ । ବିଶେଷତଃ ଏ ବୟସର ସାନସାନ ପିଲାମାନଙ୍କୁ ଭଲମଣିଷ ହେବା ପାଇଁ ବାପା ମା' ଏବଂ ଗୁରୁଜନମାନେ ବହୁ ନୀତିଉପଦେଶ ଦେଇଥାଆନ୍ତି । ସଂପ୍ରତିକ ଶିଶୁ କବିତାରେ ମଧ ସେ ସ୍ତରର ଅନୁସରଣ ବେଶ୍ ସ୍ପଷ୍ଟ ହୋଇ ଉଠୁଛି—

ଟିକିଏ ହସ ମୁହଁରେ ଫୁଟି ମନର ବ୍ୟଥା ନିଅଇ ହରି/ଟିକିଏ ବିଷ ଦେହରେ ପଶି ଯାତନା କେତେ ଦିଅଇ ଭରି । / ଟିକିଏ କଥା ପାଇଁକି ସିନା ଦେଶଦେଶକେ ଲାଗଇ କଳି, ଟିକିଏ ନିଆଁ ଉଡ଼ିବ ଯେବେ ମହାନଗରୀ ଉଠିବ ଜଳି ।''

(ଝୁମୁକା-ରାମକୃଷ୍ଣନନ୍ଦ)

ଏପ୍ରକାର ସୃଷ୍ଟି ବହୁଳ ପରିଲକ୍ଷିତ ନହେଲେ ମଧ ଉଦୟନାଥ ଷଡ଼ଙ୍ଗୀ, ରାମକୃଷ୍ଣନନ୍ଦ ନନ୍ଦିଆ ବିହାରୀ ମହାନ୍ତି ପ୍ରମୁଖ ବୟୋଜ୍ୟେଷ୍ଠ ଶିଶୁ ସାହିତ୍ୟିକଙ୍କ ଲେଖନୀରେ ଜୀବନ୍ତ ହୋଇପାରିଛି ।

ଖ) ପ୍ରକୃତି ମୂଳକ— ଶିଶୁ ଭଲପାଏ ଆକାଶର ଚଢେଇ, କୁନିକୁନି ଛେଲିଛୁଆ, ବନାନୀର ସବୁଜଲଟାପତ୍ର, କୁଳୁକୁଳୁ ଝରଣା, ପୁନେଇର ଜହ୍ନ, ଗାଁ ମାଟିର ଫୁଲଫଳ ଆଉ ଏଇମିତି ପ୍ରକୃତିର ଅନେକ ଚଳଚଞ୍ଚଳ ପରିବେଶକୁ । ସେଇଥିପାଇଁତ ସେ ଏକୁଟିଆ

ଥିଲାବେଳେ ଉଡ଼ନ୍ତା ପ୍ରଜାପତି ଆଡ଼େ ଅଥବା ଫୁଟିଲା ଫୁଲ ଆଡ଼କୁ ଚାହିଁ ମନକୁ ମନ ଗୁଣୁଗୁଣୁ ହୁଏ— ତା' ମନ କଥା ସବୁକୁ ମୁକୁଳା ପ୍ରକୃତି ଆଗରେ ବଖାଣି ବସେ । ଶିଶୁ ସାହିତ୍ୟରେ ଏ ପ୍ରକାର ରଚନାର ଅଭାବ ନାହିଁ— ଝିଲମିଲ ଖରା ଫୁଲଫୁଲ ନାଚେ ଝିଲଝିଲ ବାଆ ଖେଳଇ/ ବାଡ଼ି ବଗିଚାରେ ଗଛଲତା ଯାର ସୁଆଦିଆ ଫଳ ଫଳଇ/ ଜାତିଜାତି ଫୁଲ ନେଇନେଇ ହୋଇ ମହମହ ଗନ୍ଧ ବାସେରେ / ମୋ ଜନମଭୂଇଁ ମା' ପରି ସେଇ ଗାଁ ମାଟି ମୋର ହୃଦେରେ । (ଗାଁ ମାଟି ମୋର ହୃଦେରେ— କ୍ଷୀରୋଦଚନ୍ଦ୍ର ପୋଥାଳ)

ଏଇମିତି ଗଣିଗଣି କବିତାର ଉଦାହରଣ ଦିଆଯାଇପାରେ ।

ଗ) ଋତୁ ସମ୍ବନ୍ଧୀୟ— ଛ'ଋତୁର ବିଭିନ୍ନ ପରିବେଶ ଶିଶୁ କବିତା ଗୁଡ଼ିକରେ ଜୀବନ୍ତ ହୋଇ ଉଠିଛି । ଗ୍ରୀଷ୍ମର ପ୍ରବଳ ଉତ୍ତାପ ମଧ୍ୟରେ, ରିମିଝିମି ବର୍ଷାର ନୃତ୍ୟଭଙ୍ଗୀରେ ଶୀତ ପ୍ରଭୃତି ଋତୁ ଗୁଡ଼ିକର ଚଳଚଞ୍ଚଳତା ମଧ୍ୟରେ ସାଂପ୍ରତିକ ଶିଶୁ କବିତା ନୂତନ ଛନ୍ଦ, ଅଭିନବ ଶୈଳୀ ଏବଂ ଶବ୍ଦର କୁହୁକ ସୃଷ୍ଟି କରିଛି ।

"ଚୁଇଁ ଚୁଇଁ ଝର ଟାଇଁଟାଇଁ ବାଜ ଝାଇଁ ଝାଇଁ ମଥା ଘୂରିଲା / ଚାହିଁ ଚାହିଁ କେତେ ହାଇଁପାଇଁ ମନ ବାସିପଖାଳକୁ ଝୁରିଲା ।"

(ଖରା- ବଟକୃଷ୍ଣ ସ୍ୱାଇଁ)

ଘ) ହାସ୍ୟରସ ମୂଳକ— ହସିବା ପିଲାମାନଙ୍କର ଏକ ସହଜାତ ପ୍ରବୃତ୍ତି । ସାଙ୍ଗସାଥୀ ମେଳରେ ଅଥବା ବାହାରର ପରିବେଶ ଭିତରୁ ହସର ବସ୍ତୁ ଖୋଜକ ପାଆନ୍ତି ସେମାନେ । ଅଜାଆଈ ପ୍ରସଙ୍ଗ, ଶଶୁର ଘରେ ଜ୍ୱାଇଁର ହଟହଟା ଇତ୍ୟାଦି ବିଷୟକୁ କେନ୍ଦ୍ର କରି ଏ ପ୍ରକାର ରଚନା ସୃଷ୍ଟି ହୋଇ ଥାଏ । "ଆଈ ଦିନେ ହାଇମାରି କଥା- ଟିଏ କହିଲେ/ ପିଲାମାନେ ବସିପଡ଼ି ଚୁପ୍ ଚାପ ପହିଲେ/ ପାଟିଚୁଣ୍ଡ କଲେ ତୁମେ ଜାଣି ଥାଆ ଗୁଲି ଯିବ ନହିଲେ / X X X / ବଲେଇକୁ ମାରିବାକୁ ଅଜା ଲୁଚି କାନ୍ଥପରେ ଚଢିଲେ/ ଗୋଡ଼ ତାଙ୍କ ଖସିଗଲା ଦୁମ୍ କରି ତଳଟାରେ ପଡ଼ିଲେ/ ଅଜାଆଈ ମଜାଦେଖି ପିଲାମାନେ ହସିହସି ଗଡ଼ିଲେ ।" (ସୁନାପିଲା)

ଏ କ୍ଷେତ୍ରରେ ଅଧ୍ୟାପକ ମହେଶ୍ୱର ମହାନ୍ତି, ବଟକୃଷ୍ଣ ସ୍ୱାଇଁ ପ୍ରମୁଖଙ୍କୁ ସ୍ମରଣ କରି ଯାଇପାରେ ।

ଙ) ପୁରାଣ ସମ୍ବନ୍ଧୀୟ :— ପୁରାଣର ବୀର ଓ ମହାପୁରୁଷମାନଙ୍କ ଜୀବନ କାହାଣୀ ଶୁଣାଇ ଆମ ପିଲାମାନଙ୍କୁ ସେଇ ଢ଼ାଞ୍ଚାରେ ଗଢ଼ିବାପାଇଁ ଆମ ଶିଶୁକବିତା ପ୍ରଚେଷ୍ଟା କରି ଆସିଛି । ବିଭିନ୍ନ ଗାଥା ଛଳରେ ଏହିସବୁ କବିତା ଗୁଡ଼ିକ ଯେ ଶିଶୁର ଗୁଣର୍ଦ୍ଧିକ ବିକାଶ ପାଇଁ କେବଳ ଖୋରାକ ଯୋଗାଇଛି ତା' ନୁହେଁ, ବରଂ ଶିଶୁ କବିତାର ପରିସରକୁ ଆହୁରି ବ୍ୟାପକ କରିଛି ।

୩) ମାଧ୍ୟମିକ ସ୍ତର (Secondary Stage)

ପିଲାମାନଙ୍କ ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେମାନଙ୍କ ମାନସିକ ଚିନ୍ତାର ବିକାଶ ସାଧିତ ହୋଇଥାଏ । ଦୁନିଆର ବହୁ ସମସ୍ୟା ସେମାନଙ୍କ ଚିନ୍ତାଧାରାକୁ ବଦଳାଇ ଦିଏ । ୯ ବର୍ଷରୁ ୧୪ ବର୍ଷ ପିଲାଏ ଏହି ଶ୍ରେଣୀଭୁକ୍ତ ଅଟନ୍ତି । ସେଇମାନଙ୍କ ପାଇଁ ଦେଶାତ୍ମ-ବୋଧକ, କିମ୍ବଦନ୍ତୀମୂଳକ ଉପାଖ୍ୟାନ, ପୁରାଣ, ବୀରତ୍ୱ ଗାଥା ଏବଂ ସାମାଜିକ ସମସ୍ୟା ଜର୍ଜରିତ ବହୁ ବିଷୟର ଅବତାରଣା କରାଯାଇଥାଏ ।

କ) ଦେଶାତ୍ମବୋଧକ :— ସରଳ ଶିଶୁପ୍ରାଣରେ ଦେଶପ୍ରୀତିର ମମତା ଭରିଦେବା ଆମ ଶିଶୁ ସାହିତ୍ୟର ଏକ କର୍ତ୍ତବ୍ୟ । ସେଇ ଦୃଷ୍ଟିରୁ ଏ ପ୍ରକାର ସୃଷ୍ଟି ଓଡ଼ିଆ ଶିଶୁସାହିତ୍ୟର ଅଭାବ ନାହିଁ ।

"ବାପୁ ରାଇଜର ଛୁଆ ଯେତେ ଆମେ/ଆସରେ କରିବା ପଣ, / ବାପୁ ପରି କାମ କରି ଏ ଜଗତେ/ରଖିବା ଦେଶର ନାମ । (ବାଘମାମୁଁ)

ଖ) ସମସ୍ୟାମୂଳକ :— ପିଲାମାନଙ୍କୁ ଆମେ ଯେତେ ପରିମାଣରେ ସରଳ ଭାବିଥାଉଁ ପ୍ରକୃତିରେ ସେମାନେ ସେତିକି ପରିମାଣରେ ସରଳ ନୁହନ୍ତି । ଅନେକ ଲକ୍ଷ୍ୟ କରିଥିବେ କେତେକ ସ୍ଥଳରେ ବଡ଼ମାନେ ଯାହା କରିବାକୁ ଚିନ୍ତା କରିପାରନ୍ତି ନାହିଁ, ତାହା ପିଲାମାନେ ଚିନ୍ତା କରିସାରିଥାନ୍ତି । ଏଥିରୁ ଅନୁମିତ ହୁଏ ପିଲାମାନଙ୍କ ଚିନ୍ତା ଶକ୍ତି ଖୁବ୍ ତୀକ୍ଷ୍ଣ ଏବଂ ପ୍ରଖର । ସେମାନଙ୍କ ଚିନ୍ତା ଭିତରେ ସମାଜର ବହୁ ସମସ୍ୟା ଉଙ୍କିମାରି ପୁଣି ଛପି ଯାଉଥାଏ । ସେଇ ଚିନ୍ତାକୁ ଉଦ୍ଭାବିତ କରାଇ ସମାଧାନର ବାଟ ଆଣିଦେବା ହେଉଛି ସଂପ୍ରତି ଶିଶୁ କବିତାର ମୁଖ୍ୟ ଆଭିମୁଖ୍ୟ । ଅନେକ ଲକ୍ଷ୍ୟ କରିଥିବେ ପିଲାମାନେ କେତେ ଉଦ୍ଭଟ ପ୍ରଶ୍ନ ସବୁ ପଚାରି ବାପା ମା' ଅଥବା ଗୁରୁଜନମାନଙ୍କୁ ବିରକ୍ତ କରିଦଅନ୍ତି । ସୂର୍ଯ୍ୟ କାହିଁକି ଉଠୁଛି, ପବନ କାହିଁକି ବହୁଛି, ଚଢ଼େଇ କାହିଁକି ଉଡ଼ୁଛି, ମାଛ କାହିଁକି ବୁଡ଼ୁଛି, ତା' ସାଥୀରେ ପଢ଼ୁଥିବା ଅନ୍ୟ ଗରିବ ପିଲାଟି କାହିଁକି

ଦୁଃଖପାଉଛନ୍ତି ଇତ୍ୟାଦି ଯାବତୀୟ ଉଦ୍ଭଟ ପରିକଳ୍ପନା ଶିଶୁର ସରଳ ମନକୁ ଉଦ୍ଧିପକାଏ । ସଂପ୍ରତି ଶିଶୁସାହିତ୍ୟରେ ସେଇ ଦୃଷ୍ଟିଭଙ୍ଗୀର କବିତାମାନ ସୃଷ୍ଟି କରାଯାଇ ଶିଶୁ ମନରେ ସମାଧାନମୂଳକ ଏବଂ ଦାୟିତ୍ୱାତ୍ମକ ଭାବ ଉଦ୍ରେକ କରାଯାଉଛି ।

ସଂପ୍ରତି ଶିଶୁକବିତା ଗୁଡ଼ିକ ସମାଜର ବହୁ ସମସ୍ୟା ଉଦ୍‌ଘାଟନ କରି ଶିଶୁର ସରଳ ମନରେ ସେଇସବୁ ସମସ୍ୟା ଗୁଡ଼ିକର ପ୍ରତିଫଳନ ସୃଷ୍ଟି କରୁଛି ଏବଂ ତା'ର ସମାଧାନ ପାଇଁ ଚେଷ୍ଟା କରୁଛି । ଏଥିରେ ଶିଶୁ ତା' ନିଜ ସମସ୍ୟା ଏବଂ ଅନ୍ୟର ସମସ୍ୟା ସଂପର୍କରେ ସଚେତନ ହୋଇ ଏକ ନୂଆ ଦୁନିଆ ଗଢ଼ିବାର ପରିକଳ୍ପନା ପୋଷଣ କରୁଛି । ପାରଂପରିକ ରଚନା ଶୈଳୀ ଏବଂ ପୁରାତନ ଭାବଧାରାକୁ ବଦଳାଇ ଏବର ଶିଶୁକବିତା ବୈଜ୍ଞାନିକ ଦୃଷ୍ଟିଭଂଗୀ ନେଇ ଶିଶୁର ମାନସିକ ଏବଂ ଚାରିତ୍ରିକ ବିକାଶ ଦିଗରେ ଯେଉଁ ଦୃଢ଼ ପଦକ୍ଷେପ ନେଇଛି ତାହା ଅତ୍ୟନ୍ତ ଆନନ୍ଦର ବିଷୟ । ଗୋଟିଏ ଶୋଷଣମୁକ୍ତ, ସୁସ୍ଥ ସମାଜ ଗଠନ କରିବାର ଚିନ୍ତା ସଂପ୍ରତି ଶିଶୁକବିତା ଗୁଡ଼ିକରେ ନୂତନ ମୋଡ଼ ସୃଷ୍ଟି କରୁଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ତେଣୁ ଆମ ଶିଶୁର ପୃଥିବୀକୁ ଆମ ପୃଥିବୀଠାରୁ ଭିନ୍ନକରି ଗଢ଼ିତୋଳିବାର ପ୍ରଚେଷ୍ଟା ଯେଉଁ ସାହିତ୍ୟ ଭିତରେ ଆତ୍ମଗୋପନ କରି ରହିଛି, ସେଇ ଶିଶୁସାହିତ୍ୟର ବିକାଶ ଓ ପ୍ରସାର ପାଇଁ ପ୍ରତ୍ୟେକ ଓଡ଼ିଆ ଥରୁଟିଏ ଚିନ୍ତାକରନ୍ତୁ !!



Poetry is "the suggestion, by the imagination of noble grounds for the noble imotions."

—John Ruskin—

# ଓଡ଼ିଆ ସାହିତ୍ୟରେ ଏକାଙ୍କିକା

• ପ୍ରସନ୍ନ କୁମାର ବସ୍ତିଆ

ମୌଳିକତା ଦୃଷ୍ଟିରୁ ଏକାଙ୍କିକା ପୂର୍ଣ୍ଣାଙ୍ଗ ନାଟକର କ୍ଷୁଦ୍ରାୟତନ ମାତ୍ର । ଏହାର ପରିସର ନିତାନ୍ତ କ୍ଷୁଦ୍ର ହୋଇଥିବାରୁ କେବଳ ମାତ୍ର ଇଙ୍ଗିତର ଅବଲମ୍ବନରେ ଏହାର ଦ୍ୱନ୍ଦ୍ୱ-ସଂଶୟ-ବିମୂର୍ତ୍ତ ଛବି ଫୁଟି ଉଠିଥାଏ । ବିଷୟବସ୍ତୁ ଦୃଷ୍ଟିରୁ ବିଗ୍ଭର କରିବାକୁ ଗଲେ ଏହା ପୂର୍ଣ୍ଣାଙ୍ଗ ନାଟକର ସମକକ୍ଷ । ଅବଶ୍ୟ କୌଣସି ଏକ ଘଟଣା, ଭାବ, ସଂସ୍କାର ବା ଜୀବନର ଖଣ୍ଡାଂଶକୁ ରୂପ ଦେବାରେ ନାଟ୍ୟ କୌଶଳ ବିସ୍ତୃତ ପରିସରରେ ହୁଏତ ସହଜ ଓ ଏକାଙ୍କିକାର ସ୍ୱଳ୍ପପରିସର ମଧ୍ୟରେ ସହଜ ନୁହେଁ । ତଥାପି କ୍ଷୁଦ୍ର ଗଳ୍ପ ନିଜ ପ୍ରକୃତିକୁ ବଜାୟ ରଖି ଉପନ୍ୟାସର ଖଣ୍ଡିତ ରୂପକୁ ପ୍ରକଟିତ କଲାଭଳି ଏକାଙ୍କିକା ପୂର୍ଣ୍ଣାଙ୍ଗ ନାଟକର ଇଙ୍ଗିତ ଜଣାଇ ପ୍ରକାଶ କରିବାରେ ବେଶ୍ ସମର୍ଥ । (ସାହିତ୍ୟ କୋଷ- ନାଟକ ପୃ-୯)

ଏକାଙ୍କିକାର ଉତ୍ପତ୍ତି ଖୁବ୍ ଅଳ୍ପ ଦିନର । ସମ୍ଭବତଃ ୧୯୦୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ "ଓଏଣ୍ଟ ଏଣ୍ଡ ଥିଏଟର"ରେ 'ଦି ମଙ୍କିଜ୍ ପ' ପଟଉତ୍ତୋଳକ ର ଆବଶ୍ୟକତା ଦୂର କଲା । ସେଥିପ୍ରତି ସମସ୍ତଙ୍କର ଉପେକ୍ଷା ଓ ଔଦାସୀନ୍ୟର ଅବସାନ ଘଟିଲା ଏବଂ ତାହା ସେହିଦିନ ଠାରୁ ଅଦ୍ୟାବଧି ଏକ ସ୍ୱତନ୍ତ୍ର କଳାତ୍ମକ ଅସ୍ତିତ୍ୱ ଯେଉଁ ସର୍ବଜନ ସ୍ୱୀକୃତ । ପଟଉତ୍ତୋଳକ ହେଲା'ଓ୍ୱାନ ଆକ୍ଟପ୍ଲେ' ବା 'ଏକାଙ୍କିକା' । ନାଟକ ଠାରୁ କୌଣସି ଗୁଣରେ ଗୌଣ ନହୋଇ ସ୍ୱତନ୍ତ୍ର କଳା ସୌଷ୍ଠବ ଓ ମୌଳିକ ଅଭିବ୍ୟଞ୍ଜନାର ଆତ୍ମ ପ୍ରକାଶ ଯେଉଁ ଏକାଙ୍କିକା କ୍ରମଶଃ ଆଧୁନିକ ମାନବ ଜୀବନରେ ଗଭୀର ରେଖାପାତ ସୃଷ୍ଟି କରିଛି ।

ଏକାଙ୍କିକାର ଉଦ୍ଭବ ଓ ବିକାଶ ସଂପର୍କରେ କେତେକ ନାଟ୍ୟ ସମାଲୋଚକ ମତ ଦିଅନ୍ତି ଏହା ପ୍ରାଚୀନ ସଂସ୍କୃତ ନାଟ୍ୟ ସାହିତ୍ୟର ଶାଖା ପ୍ରଶାଖା ମଧ୍ୟରୁ ଅନ୍ୟତମ । ଭାଣ, ଇହାମୃଗ, ଅଙ୍କ, ବିଥି ଏବଂ ପ୍ରହସନ ଏକାଙ୍କ ରୂପକ ବୋଲି ସାହିତ୍ୟ ଦର୍ପଣକାର ବିଶ୍ୱନାଥ କବିରାଜ ଉଲ୍ଲେଖ କରିଛନ୍ତି । ସଂସ୍କୃତ ସାହିତ୍ୟର ସମାଲୋଚକ ଡାଃ କୀଥ୍ ମଧ୍ୟ ଏହି 'ଅଙ୍କ'କୁ ଏକାଙ୍କିକା ପର୍ଯ୍ୟାୟଭୁକ୍ତ କରିଛନ୍ତି ।

ଆଲଙ୍କାରିକ ବିଶ୍ୱନାଥ କବିରାଜ 'ଅଙ୍କ'ର ସ୍ୱରୂପ ନିର୍ଦ୍ଦେଶ ସମ୍ପର୍କରେ ଉଲ୍ଲେଖ କରନ୍ତି—"ଅଙ୍କରେ ନାୟକର ଚରିତ୍ର ସ୍ପଷ୍ଟ ହେବା ବାଞ୍ଛନୀୟ । ଏହା ରସ ଓ ଭାବପୂର୍ଣ୍ଣ ହେବା ଆବଶ୍ୟକ ଏବଂ ଗୂଢ଼ାର୍ଥକ ଶବ୍ଦ ଏଥିରୁ ବର୍ଜିତ ହେବା ଆବଶ୍ୟକ । ଏଥିରେ ଛୋଟ ଛୋଟ ଚୂର୍ଣ୍ଣକ (ସମାସ ବିହୀନ ଗଦ୍ୟ)ର ପ୍ରୟୋଗ କରିବା ଭଲ । ଏହା ବହୁ-କାର୍ଯ୍ୟଯୁକ୍ତ ହୋଇ ନଥିବ କିମ୍ବା ବୀଜର ଉପସଂହାର ମଧ୍ୟ ହେଉ ନଥିବ । ଏହା ନାନା ପ୍ରକାର ବିଧାନ ଯୁକ୍ତହେବ କିନ୍ତୁ ପଦ୍ୟର ବ୍ୟବହାର ସଂକ୍ଷିପ୍ତ କରାଯିବ ଯାହା ଅନେକ ଦିନରେ ସିଦ୍ଧହୋଇଛି, ତାହା ଏକ ଅଙ୍କରେ ପ୍ରକାଶ ନକରିବା ଭଲ । ନାୟକ ସର୍ବଦା ସନ୍ନିହିତଥାଇ, ଏକାଧିକପାତ୍ର ପରିବୃତ୍ତ ହୋଇ ରହିବ ।"

(ସାହିତ୍ୟ ଦର୍ପଣ- ବିଶ୍ୱନାଥ କବିରାଜ)

'ଏକାଙ୍କିକା'ର ଏହି ସ୍ୱରୂପ ଭିତ୍ତିରେ ଆଲୋଚନା କଲେ ସଂସ୍କୃତ ନାଟକରେ ସେଇ ଅନ୍ତର୍ଦ୍ୱନ୍ଦ୍ୱ ଏବଂ ସଂଘର୍ଷ, ମାନସିକ ପ୍ରକ୍ରିୟାର ସେଇ ବିଶ୍ଳେଷଣ ମିଳେନାହିଁ । ଯାହା ଆଧୁନିକ ଏକାଙ୍କିକାର ପ୍ରାଣ ସ୍ୱରୂପ । ଆଧୁନିକ ଏକାଙ୍କିକା ଏବଂ ସଂସ୍କୃତ ଏକା-ଙ୍କିକା ମଧ୍ୟରେ ପ୍ରଧାନ ପାର୍ଥକ୍ୟ ହେଉଛି ଚରମ ପରିଣତି ଓ ପ୍ରକୃତି ଚିତ୍ର ସଂପର୍କରେ । ଆଧୁନିକ ହିନ୍ଦୀ ଚଳଚିତ୍ରର ନାୟକ ତୁଲ୍ୟ ଜନ୍ମ-ମରଣ ରହିତ ହୋଇ ବିଜୟର ସ୍ଥିର ସିଦ୍ଧାନ୍ତକୁ ଆଖିଆଗରେ ରଖି ସଂସ୍କୃତ ଏକାଙ୍କିକାର ନାୟକ ଅଗ୍ରସର ହେଉଥିବାରୁ ଏହା ଆଧୁନିକ ଏକାଙ୍କିକାର ବାସ୍ତବତା ନିକଟରେ ପରାଜୟ ସ୍ୱୀକାର କରେ; କାରଣ ଯେଉଁ ପରିବେଶରେ ଯେତେବେଳେ ଯାହା ଘଟିବାର ଥାଏ ତାହାହିଁ ଘଟେ ଆଧୁନିକ ଏକାଙ୍କିକାରେ । ତେଣୁ ଆଧୁନିକ ଏକାଙ୍କିକା ସଂସ୍କୃତ ସାହିତ୍ୟରୁ ଉଦ୍ଭୁତ ନହୋଇ ଆଙ୍ଗିକ ଦୃଷ୍ଟିକୋଣରୁ ଇଂରାଜୀ ସାହିତ୍ୟର ଅଧିକ ନିକଟବର୍ତ୍ତୀ ବୋଲି ସ୍ୱୀକାରିବାକୁ ଯାଇ ଡ଼ାଃ ଏସ୍. ପି. ଖତ୍ରୀ କହନ୍ତି— "ଏକାଙ୍କୀ ଇଂରାଜୀ ସାହିତ୍ୟର ଏକ ନବୀନ ଅବଦାନ । କେତେକ ଆଲୋଚକ ଏକାଙ୍କୀର ଉଦ୍‌ଗମ ସଂସ୍କୃତରୁ ହୋଇ ପାରିଛି ବୋଲି କହନ୍ତି । କିନ୍ତୁ ଏକାଙ୍କୀ ଯେତେବେଳେ ବିଂଶ ଶତାବ୍ଦୀରୁ ଆରମ୍ଭ ହେଲା ସେତେବେଳେ କୁହାଯାଇ ପାରେଯେ, ଏହା ସଂସ୍କୃତ ଅପେକ୍ଷା ଇଂରାଜୀ ଦ୍ୱାରା ଅଧିକ ପ୍ରଭାବିତ ।" (ନାଟକ କୀ ପରଖ ପୃ-୨୭୧)

ଏକାଙ୍କିକାକୁ ବିଶ୍ୱ ଦରବାରରେ ସ୍ୱତନ୍ତ୍ର କଳାରୂପେ ସମ୍ମାନ ଦେବା କ୍ଷେତ୍ରରେ ୟୁରୋପର 'ଲିଟିଲ୍ ଥିଏଟର' ଆନ୍ଦୋଳନର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଫ୍ରାନ୍ସରେ ପ୍ରଥମେ

"ଥିଏଟର ଲିବ୍ରେ" ଆରମ୍ଭ ହୁଏ ୧୮୮୭ ଖ୍ରୀଷ୍ଟାବ୍ଦରେ । ତାର ଅନୁସରଣରେ ଲଣ୍ଡନରେ "ଇଣ୍ଡିପେଣ୍ଡେଣ୍ଟ ଥିଏଟର" (୧୮୯୧) ଓ ଡବ୍‌ଲିନ୍‌ରେ "ଆବେ" ନାମରେ ତାହା ଆତ୍ମପ୍ରକାଶ କରେ । ଏହି ଆନ୍ଦୋଳନ ଏକାଙ୍କିକାର ବିକାଶ ପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରେ ।

ନାଟକ ଭଳି ଏକାଙ୍କିକାକୁ ମଧ୍ୟ ବିଷୟବସ୍ତୁ ଦୃଷ୍ଟିକୋଣରୁ ବହୁଧା ବିଭକ୍ତ କରାଯାଇ ପାରେ । ଯଥା — ସାମାଜିକ, ଐତିହାସିକ, ପୌରାଣିକ, ଲୋକଶ୍ରୁତିମୂଳକ, ସମସ୍ୟାଧର୍ମୀ, ପ୍ରଗୃତିଧର୍ମୀ, ମନୋବିଶ୍ଳେଷଣାତ୍ମକ, ହାସ୍ୟରସମୂଳକ, ବ୍ୟଙ୍ଗାତ୍ମକ, ବ୍ୟଞ୍ଜନାତ୍ମକ, ରହସ୍ୟଧର୍ମୀ ଇତ୍ୟାଦି ।

ନାଟ୍ୟୋତ୍କଣ୍ଠାକୁ ମୁଖ୍ୟ ଉପଜୀବ୍ୟ ରଖି ବର୍ଣ୍ଣନା ପରିବର୍ତ୍ତେ ବ୍ୟଞ୍ଜନାକୁ ପ୍ରାଧାନ୍ୟ ଦେଇ ସ୍ୱଳ୍ପ ପରିସର ମଧ୍ୟରେ ଯଥାସମ୍ଭବ ଅନାବଶ୍ୟକ ଅଙ୍ଗ ପରିହାର ପୂର୍ବକ ପରିମିତ ଚରିତ୍ର ଓ ଗୋଟିଏ ଅଙ୍କ ମାଧ୍ୟମରେ ଯୁଗପତ୍ ସୂଚନା, ପ୍ରବାହ ଓ ଉତ୍କର୍ଷ ଆଦି ମଧ୍ୟରେ ଦ୍ରୁତଗତିରେ କ୍ରମଶଃ ଚରମ ପରିଣତି ବା ଶୀର୍ଷବିନ୍ଦୁରେ ପହଞ୍ଚିବା ହିଁ ସାର୍ଥକ ଏକାଙ୍କିକାର ମୂଳଲକ୍ଷ୍ୟ । ଏହାର କେତୋଟି ବିଶିଷ୍ଟ ଉପାଦାନ ଉପରେ ସଂକ୍ଷିପ୍ତ ଆଲୋକପାତ କରାଯାଉଛି ।

ଘଟଣା :—

ଘଟଣା ବା ବିଷୟବସ୍ତୁ ହେଉଛି ଏକାଙ୍କିକାର ଶରୀର । ମନନ ହେଉଛି ତାର ପ୍ରାଣ । ଚରିତ୍ର ହେଉଛି ତାର ହୃଦୟ । ତେଣୁ ସର୍ବପ୍ରଥମେ ଏକାଙ୍କିକା ପାଇଁ ଗୋଟିଏ ଘଟଣାର ଆବଶ୍ୟକତା ରହିଛି । ସେ ଘଟଣା ହୁଏତ ସାଧାରଣ ବାସ୍ତବ ଚିତ୍ର ହୋଇ ଥାଇପାରେ ନଚେତ୍ କାଳ୍ପନିକ ବି ହୋଇ ଥାଇପାରେ । ମାତ୍ର ସାହିତ୍ୟ ଚିରକାଳ ପାଇଁ କଳ୍ପନାର ପ୍ରଲେପରେ ସତ୍ୟ-ଶିବ-ସୁନ୍ଦରର ରୂପ ପ୍ରକାଶ କରି ଆସିଛି । ତେଣୁ ଖାଣ୍ଟି ସୁନାରେ ଖାଦ ମିଶିଲେ ତାହା ଯେପରି ଉଜ୍ଜ୍ୱଳ ହୋଇ ଉଠେ, ତଦ୍ରୂପରି କୌଣସି ଏକ ସାଧାରଣ ଘଟଣାରେ କଳ୍ପନାର ପ୍ରଲେପ ଆଦୌ ଉପେକ୍ଷଣୀୟ ନୁହେଁ ।

ଚରିତ୍ର :—

ସମାଜରେ ଯାହାକିଛି ଘଟେ ତାହାର ମୂଳରେ ରହିଛି ଏଇ ଚରିତ୍ର ବା ବ୍ୟକ୍ତି । ତେଣୁ ଏକାଙ୍କିକାର ବିଷୟବସ୍ତୁ ନିର୍ବାଚନ ପରେ ଚରିତ୍ରର ଆବଶ୍ୟକତା ଅନୁଭୂତ ହୁଏ । ଏକାଙ୍କିକାର ସୀମିତ ପରିସର ଦୃଷ୍ଟିରୁ ଚରିତ୍ରଗୁଡ଼ିକ ସଜିସ୍ୱ ହେବା ଆବଶ୍ୟକ । ଚରିତ୍ର

ନିର୍ବାଚନ ସଂକ୍ରାନ୍ତରେ "ଆରିଷ୍ଟଟଲ୍" ତାଙ୍କର "ପୋଏଟିକ୍ସ" ଗ୍ରନ୍ଥରେ ଯାହା ମତ ଦିଅନ୍ତି ତାର ସାରମର୍ମ ହେଲା ଏକାଙ୍କିକାର ଚରିତ୍ର 'ସତ୍ୟତା', 'ଔଚିତ୍ୟ', 'ବାସ୍ତବ' ଓ 'ସଂଗତି' ଯୁକ୍ତ ହୋଇଥିବା ବାଞ୍ଛନୀୟ ।

ସଂଳାପ :—

ବାସ୍ତବ ଓ ନାଟକୀୟ ହେବା ସଙ୍ଗେ ସଙ୍ଗେ ଚରିତ୍ର ଓ ପରିବେଶ ଅନୁକୂଳ ଶବ୍ଦ ବିନ୍ୟାସ ଓ ଭାଷା ମାଧ୍ୟମରେ ସଂଳାପ ପ୍ରକାଶ ପାଇଥାଏ । 'ଏଗ୍ରି'ଙ୍କ ମତ ହେଲା "ସଂଳାପ ଚରିତ୍ର, ପୃଷ୍ଠଭୂମି ଓ ଘଟଣାକୁ ବ୍ୟକ୍ତ କରିବା ପାଇଁ ଏକ ଅପରିହାର୍ଯ୍ୟ ଅବଲମ୍ବନ । ସଂଳାପ ଭାବୀଘଟଣାକୁ ମଧ୍ୟ ସୂଚାଇ ଥାଏ । ପ୍ରତ୍ୟେକ ଚରିତ୍ର ତାର ନିଜସ୍ୱ ସଂଳାପ ବ୍ୟବହାର କରିବା ଉଚିତ ।"

ଦ୍ୱନ୍ଦ୍ୱ :—

ଦ୍ୱନ୍ଦ୍ୱ ବିନା ଏକାଙ୍କିକାର ସ୍ଥିତି ଅସମ୍ଭବ । କାରଣ ଦ୍ୱନ୍ଦ୍ୱ ନଥିଲେ ସଂଘର୍ଷ ନାହିଁ ଆଉ ସଂଘର୍ଷ ନଥିଲେ ଏକାଙ୍କିକାର ଅସ୍ତିତ୍ୱ ନାହିଁ । ଦର୍ଶକଙ୍କୁ ମୁଗ୍ଧ ଚକିତ ଓ ବିସ୍ମୟାଭିଭୂତ କରିବା ହେଉଛି ଦ୍ୱନ୍ଦ୍ୱର କାର୍ଯ୍ୟ । ସାଧାରଣ ବିଷୟବସ୍ତୁକୁ ଯଦି ଦ୍ୱନ୍ଦ୍ୱପୂର୍ଣ୍ଣ ଭାବରେ ଉପସ୍ଥାପନା କରାଯାଏ ତେବେ ଦର୍ଶକ ପୂର୍ଣ୍ଣତୃପ୍ତି ଲାଭକରେ । ଏଣୁ ଦ୍ୱନ୍ଦ୍ୱ ହିଁ ଏକାଙ୍କିକାର ପ୍ରାଣ ।

ଯଦିଓ ଓଡ଼ିଆ ଏକାଙ୍କିକାର ସୃଷ୍ଟି ଖୁବ୍ ଅଳ୍ପଦିନର ତଥାପି ଏହା ଯେ ଓଡ଼ିଆ ସାହିତ୍ୟରେ ବର୍ତ୍ତମାନ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିନେଇଛି ଏଥିରେ ସନ୍ଦେହ କରିବାର ଅବକାଶ ଆଉନପାରେ ଏବଂ ବିଶେଷତଃ ବିଂଶ ଶତାବ୍ଦୀର ମଧ୍ୟଭାଗ (୧୯୫୦)ରୁ ବୃଦ୍ଧିଶୀଳ ଭାବରେ ଓଡ଼ିଆ ଏକାଙ୍କିକା ରଚନା କ୍ଷେତ୍ରରେ ଏକ ଉମ୍ମୂଳ ଆନ୍ଦୋଳନ ସୃଷ୍ଟି ହୋଇଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଅବଶ୍ୟ ୧୯୩୯ ମସିହାରେ ପ୍ରଥମେ କଲିକତା ବେତାରକେନ୍ଦ୍ରରୁ ଓଡ଼ିଆ ଏକାଙ୍କିକାର ପ୍ରଚାର ହୋଇ-ଥିଲା । ମାତ୍ର ସେତେବେଳେ ସମାଜରେ ତାର ପ୍ରଭାବ ଅନୁଭୂତ ହୋଇ ପାରିନଥିଲା ।

ରାମଶଙ୍କର ରାୟ ଓଡ଼ିଆ ଏକାଙ୍କିକାର ଜନକ ବା ପଥପ୍ରଦର୍ଶକ ଏବଂ ଅଶ୍ୱିନୀ କୁମାର ଘୋଷ, କୃଷ୍ଣପ୍ରସାଦ ବସୁ, ଲକ୍ଷ୍ମୀକାନ୍ତ ମହାପାତ୍ର, ମାୟାଧର ମାନସିଂ ପ୍ରଭୃତି ଏହାର ପାଳକ ।

କବିଚନ୍ଦ୍ର କାଳୀପ୍ରସନ୍ନ (୧୮୯୭) ଯଦିଓ ନାଟକ ରଚନା କ୍ଷେତ୍ରରେ ପ୍ରଶଂସା ଲାଭ କରିଛନ୍ତି ତଥାପି ତାଙ୍କର ଏକାଙ୍କିକା 'ନଟୀରମୁକ୍ତ' ଓ 'ମଧ୍ୟମ' ମଧ୍ୟ ତାଙ୍କୁ

ଓଡ଼ିଆ ଏକାଙ୍କିକା ଜଗତରେ ସ୍ମରଣୀୟ କରିରଖିଛୁ । କବିଚନ୍ଦ୍ର ଡକ୍‌ଟର କାଳୀଚରଣ ପଟ୍ଟନାୟକ(୧୮୯୮)ଙ୍କର 'ପଞ୍ଚରଙ୍ଗ' ଓ 'ଷଡ଼ରସ' ଦୁଇଖଣ୍ଡି ପ୍ରକାଶିତ ଏକାଙ୍କିକା ସଂକଳନ । ତନ୍ମଧ୍ୟରୁ 'ଯୁଗଯୋଗୀ', 'ଜୀବନ-ତର୍ପଣ', 'କଳଙ୍କ କେମା', ପୋଷ୍ୟପୁତ୍ର', 'ପ୍ରତିନିଧି', 'ନୂଆ ବୂଢ଼ୀଆ', 'ଦଳବେହେରା', 'ଶ୍ରୀପଞ୍ଚମୀ', ଓ 'ଛନପତି' ଆଦି ଏକାଙ୍କିକା ପାଠକଙ୍କର ସ୍ୱାଗତ ଯୋଗ୍ୟ ହୋଇପାରିଛୁ । ଯଦିଓ ତାଙ୍କୁ ଏକାଙ୍କିକା ନାଟକର ମର୍ଯ୍ୟାଦା ଦେଇପାରି ନାହିଁ ତଥାପି ସାମାଜିକ, ଐତିହାସିକ, ପୌରାଣିକ କଥାବସ୍ତୁ ଅବଲମ୍ବନରେ ରଚିତ ଏକାଙ୍କିକାରେ ତାଙ୍କ ଭାଷାର ଲାଳିତ୍ୟ, ସଂଳାପର ସ୍ୱାଭାବିକତା ପ୍ରଶଂସନୀୟ ।

ହରେକୃଷ୍ଣ ମହତାବ (୧୮୯୯) ବିଶେଷତଃ ଐତିହାସିକ ରୂପେ ପରିଚିତ ତଥାପି ତାଙ୍କର ୧୦ଟି ଏକାଙ୍କିକା-ସମ୍ବଳିତ 'ଯୁଗସଂକେତ' (୧୯୬୩) ବେଶ୍ ଯୁଗଧର୍ମୀ ହୋଇଛୁ । ଏଥିରେ ବିଭିନ୍ନ ସ୍ୱାଦର ପୌରାଣିକ, ଐତିହାସିକ ଓ କାଳ୍ପନିକ ଏକାଙ୍କିକାର ସମାବେଶ ଘଟିଛୁ ।

କାଳିନ୍ଦୀ ଚରଣ ପାଣିଗ୍ରାହୀ (୧୯୦୧)ଙ୍କର ଏକାଙ୍କିକା ସୃଷ୍ଟି ଖୁବ୍ କମ୍ । ତଥାପି ଗୋଟିଏ ଶିଳ୍ପୀର ବାସ୍ତବ କରୁଣ ଚିତ୍ର ଦେବାକୁ ଯାଇ 'ଶିଳ୍ପୀର ସ୍ୱପ୍ନ' ଏକାଙ୍କିକାଟି ପାଠକ ଓ ଦର୍ଶକ ମନରେ ପ୍ରଭାବ ପକାଇଥାଏ । ଏତଦ୍‌ବ୍ୟତୀତ 'ପ୍ରିୟଦର୍ଶୀ' ଓ 'ପଦ୍ମିନୀ' ଏକାଙ୍କିକା ମଞ୍ଚସ୍ଥ ହୋଇ ବେଶ୍ ଆଦୃତ ଲାଭ କରିଛୁ ।

ଶ୍ରୀମମତୀ ସରଳା ଦେବୀ (୧୯୦୪)ଙ୍କର 'ପଞ୍ଚପ୍ରଦୀପ' ଏକାଙ୍କିକା ସଞ୍ଚୟନ ପାଞ୍ଚଟି ସାର୍ଥକ ଏକାଙ୍କିକାର ସମାହାର । ତାଙ୍କର ବହୁ ଏକାଙ୍କିକା ବେତାର କେନ୍ଦ୍ରଦ୍ୱାରା ପ୍ରସାରିତ । ଶ୍ରୀ ରତ୍ନାକର ରୂପକାର (୧୯୧୪)ଙ୍କର 'ଜୁଆରଭଟ୍ଟା' ଏକାଙ୍କିକା ସଂକଳନଟି ବେଶ୍ ସରସ ସୁନ୍ଦର ଓ ତନ୍ମଧ୍ୟରୁ "ସ୍ୱର୍ଗରେ ସମାଜବାଦ" (୧୯୫୯) ଏକ ନୂତନ ସ୍ୱାଦରଏକାଙ୍କିକା ।

ଶ୍ରୀ ପ୍ରାଣବନ୍ଧୁଙ୍କର (୧୯୧୪) ଓଡ଼ିଆ ଏକାଙ୍କିକା ଜଗତରେ ଜଣେ ଯୁଗପ୍ରବର୍ତ୍ତକ । ତାଙ୍କର ୨ଖଣ୍ଡି ଏକାଙ୍କିକା ସଂକଳନ ମଧ୍ୟରୁ "ଏକାଙ୍କିକା" (୧୯୫୪) ଅନ୍ୟତମ ସଂକଳନ । ତାଙ୍କର 'ଶ୍ୱେତପଦ୍ମ' ଏକାଙ୍କିକା ଭାରତୀୟ ଲଳିତକଳା ଏକାଡେମୀଦ୍ୱାରା ପୁରସ୍କୃତ । ଏତଦ୍‌ବ୍ୟତୀତ 'ଦୂରପାହାଡ଼', 'ଶିଶୁ', 'ସନ୍ଧ୍ୟାଆସରର ଭୂତ' 'କିଛି ନାହିଁ ସେଥିରେ', 'ପାଗଳ ଜନତାର ବାହାରେ', ଏକ ଏକ ସାର୍ଥକ ଏକାଙ୍କିକା । ନାମକରଣ ତଥା ବିଷୟ ବସ୍ତୁ ନିର୍ବାଚନ ଦୃଷ୍ଟିରୁ ଏଗୁଡ଼ିକ ସାର୍ଥକ ସୃଷ୍ଟି । ଫ୍ରଏଡ଼ୀୟ ତତ୍ତ୍ୱ ସଙ୍ଗେ ସଙ୍ଗେ ସନସ୍ତତ୍ତ୍ୱର ମଧୁର ସ୍ପର୍ଶରେ ତାଙ୍କର ଏକାଙ୍କିକ ଚିତ୍ରକିମନ୍ତ ଏବଂ

ଭାଷାର ସହଜ ସରଳ ସ୍ୱାଭାବିକତା ତାଙ୍କର ପ୍ରତ୍ୟେକ ସୃଷ୍ଟିର ବୈଶିଷ୍ଟ୍ୟ । ଗୋପାଳ ଶ୍ରେଷ୍ଠରାୟ (୧୯୧୮)ଙ୍କର ଏକାଙ୍କିକା ରଚନା ମଧ୍ୟରୁ ବେଣୀବନ୍ଧନ, ଅପରାଜେୟ, ଗୃହ-ବୋଧୂ, ବଉଳା, ଅଭିଳାଷ, ବନନାସିକା, ବାନ୍ଧବୀ ଆଦି ଲୋକପ୍ରିୟ । ତାଙ୍କ ଏକାଙ୍କିକା ସାଧାରଣ ପଲ୍ଲିଜୀବନର ନିତିଦିନିଆ ଶ୍ରେଷ୍ଠ ଶ୍ରେଷ୍ଠ କଥାକୁ କେନ୍ଦ୍ରକରି ସୃଷ୍ଟ । ତାଙ୍କ ଏକାଙ୍କିକା ପାଠକକୁ ବେଳାଏ ହସାଏ ବା ଅସରାଏ କନ୍ଦାଇ ପକାଏ । ଏ ଦିଗରେ ଆକାଶବାଣୀ ତାଙ୍କୁ ଯଥେଷ୍ଟ ସୁଯୋଗ ଯୋଗାଇ ଆସିଛି ।

ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା (୧୯୨୨)ଙ୍କର ଏକାଙ୍କିକା ପରିମାଣ ଦୃଷ୍ଟିରୁ ହୁଏତ ବିପୁଳ ନୁହେଁ ତଥାପି ତାଙ୍କର'କେନ୍ଦ୍ର ଓ ପରିଧି'(୧୯୫୭) ଓଡ଼ିଆ ଏକାଙ୍କିକା କ୍ଷେତ୍ରରେ ଏକ ଯାତ୍ରାସ୍ତମ୍ଭ । ମନୋରଞ୍ଜନ ଦାସ (୧୯୨୩) ଙ୍କ ପ୍ରଧାନ ଲକ୍ଷ୍ୟଥିଲା, ଶଗଡ ଗୁଳାକୁ ପରି-ହାର କରି ନୂଆ ଗୁଳା ବା ରାସ୍ତା ସୃଷ୍ଟିକରିବା । 'ନାଗ୍ନି'(୧୯୦୫) ଓ 'ଶ୍ରେଷ୍ଠ ନାଟକ' ପ୍ରଭୃତି ଏକାଙ୍କିକା ଗୁଡ଼ିକରେ ସେ ମନସ୍ତତ୍ତ୍ୱର ବିଶ୍ଳେଷଣ ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି ଓ ଗତାନୁଗତିକତା ପରିହାର କରିଛନ୍ତି । ବଳିଷ୍ଠ ସଂଳାପ ସଂଯୋଜନରେ ମଧ୍ୟ ସେ ଜଣେ ସଚେତନ ଶିଳ୍ପୀ । ତାଙ୍କ ରଚିତ ଏକାଙ୍କିକା ମଧ୍ୟରୁ 'ସେତୁ' 'ଅବବାହିକାର ସ୍ୱପ୍ନ', 'ମହାସମୁଦ୍ର', 'ସ୍ୱପ୍ନ' 'ନାଗ୍ନି', 'ଅନଶନ' 'ଅତିମାନବ', ''ଅପ୍ରତିହତ'', ଫଲ୍‌ଗୁ ଆଦି ଉଲ୍ଲେଖ ଯୋଗ୍ୟ । ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର (୧୯୨୫)ଙ୍କ ୬ଟି ଏକାଙ୍କିକା ସମ୍ବଳିତ 'ସତ୍ୟାଗ୍ରହୀ' (୧୯୬୨), ସଂଶୋଧନ (୧୯୬୦), ଗୃହକୋଣଠାରୁ ଦୂରେ (୧୯୬୨), ପ୍ରଭୃତି ଏକାଙ୍କିକା ସଞ୍ଚୟନ ପ୍ରକାଶିତ ।

ରାଜକିଶୋର ରାୟଙ୍କ ଏକାଙ୍କିକା ଆଲୋଚନାବେଳେ କୌଣସିପ୍ରକାରେ ବାଦ ଦିଆଯାଇ ନପାରେ । ସମାଜର ଦଳିତ, ପତିତ, ଅବହେଳିତ ମାନବ ଗୋଷ୍ଠୀର ସେ ନିଛକ ଚିତ୍ର ଦେଇଛନ୍ତି ଓ କଳାବଜାରୀମାନଙ୍କୁ ଲେଖନୀ ମାଧ୍ୟମରେ ନିର୍ଭିକ ଭାବରେ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି । ତାଙ୍କର ୫ଟି ଏକାଙ୍କିକା ସମ୍ବଳିତ 'ପଞ୍ଚପଲ୍ଲବ' ୧୯୬୨ ମସିହାରେ ପ୍ରକାଶିତ ଏବଂ ତତ୍‌ସନ୍ନିବେଶିତ 'କଳିଙ୍ଗ ଶିଳ୍ପୀ' ଏକାଙ୍କିକାଟି ବେଶ୍ ହୃଦୟସ୍ପର୍ଶୀ । ତାଙ୍କର ଅପୂର୍ବ ଭାଷାବିନ୍ୟାସ ଓ ନାଟକୀୟ ସଂଳାପ ପାଠକ ମନରେ ଗଭୀର ରେଖାପାତ କରିଥାଏ ।

ଏତଦ୍‌ବ୍ୟତୀତ ଆହୁରି ଶତାଧିକ ନାଟ୍ୟକାର ରହିଛନ୍ତି ଯେଉଁମାନେ କି ଆଗାମୀ ଦଶନ୍ଧିରେ ଏକାଙ୍କିକାକୁ ନୂତନ ସ୍ୱାଦର ଦେଇ ପାରିଛନ୍ତି । ଅନ୍ୟାନ୍ୟ ଭାଷାର ଏକାଙ୍କିକା ଠାରୁ ଓଡ଼ିଆ ଏକାଙ୍କିକାକୁ ଏମାନେ ଉଚ୍ଚତର ସ୍ଥାନରେ ଅଧିଷ୍ଠିତ କରିବାର ଶକ୍ତି ସେମାନେ ପରୀକ୍ଷା କରୁଛନ୍ତି । □□

# ଓଡ଼ିଆ ପତ୍ରିକା ସାହିତ୍ୟର ଆଦିପର୍ବ : ଏକ ଅଧ୍ୟୟନ

(ଉନ୍ମେଷକାଳରୁ ୧୯୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ)

● କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିଥିଲେ ସୁଦ୍ଧା ୧୮୧୭ ପାଇକ ବିଦ୍ରୋହପରେ ଇଂରେଜ ରାଜତ୍ୱ ବିସ୍ତାର ଲାଭ କରିଥିଲା । ୧୮୩୫ ମସିହାରେ ଲର୍ଡ଼ ମାକ୍‌ଲେଙ୍କ ଶିକ୍ଷାନୀତି ସମଗ୍ର ଭାରତ-ବର୍ଷରେ ପ୍ରଚଳିତ ହୋଇଥିଲା । ୧୮୩୮ ମସିହାରେ ଖ୍ରୀଷ୍ଟିୟାନ ମିଶନାରୀ ଆନୁକୂଲ୍ୟରେ ଓଡ଼ିଶାରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା ଲାଭ-କଲା । ଫଳତଃ ପତ୍ରପତ୍ରିକାର ବିକାଶ ପାଇଁ ପଥ ପରିଷ୍କାର ହୋଇଗଲା । ବିଶେଷତଃ ୧୮୬୬-ନଅଙ୍କ ଦୁର୍ଭିକ୍ଷର ଲୋମହର୍ଷଣକାରୀ ପରିବେଶ ମଧ୍ୟରେ ସମାଜ ସଂସ୍କାର ଓ ପ୍ରଚଳିତ ମୂଲ୍ୟବୋଧ ପରିବର୍ତ୍ତିତ ହୋଇ ପାରମ୍ପରିକ ପ୍ରାଚୀନ ସାହିତ୍ୟର କ୍ରମ-ତିରୋଧାନ ଓ ଆଧୁନିକ ସାହିତ୍ୟର କ୍ରମ-ଆବିର୍ଭାବରେ 'ଓଡ଼ିଆ ପତ୍ରିକା ସାହିତ୍ୟ'ର ବିକାଶ ଘଟିଛି ।

'କୁଜିବରପତ୍ର' ମରହଟ୍ଟା ରାଜତ୍ୱ କାଳରେ ଓଡ଼ିଶାରୁ ପ୍ରକାଶ ପାଇଥିଲା । ଏହାର ପ୍ରଚାରକଥିଲେ ଜଣେ ଓଡ଼ିଆ ସାଧୁ ପୁରୁଷ । କଟକ ନିକଟବର୍ତ୍ତୀ ପଦ୍ମପୁର ଗ୍ରାମରେ ତିଆରି ହେଉଥିବା 'ହରତାଳ' କାଗଜରେ ହାତ ଲେଖା ଏହି ପତ୍ରିକାଟି ହାଟ, ମେଳା ଓ ଖ୍ରୀଷ୍ଟୀୟାନ ସଂହତି ପ୍ରଭୃତିରେ ପ୍ରକାଶ ପାଉଥିଲା । ଏଥିରେ ଧର୍ମନୀତି, ରାଜନୀତି, ସମାଜନୀତି ଦେଶର ସ୍ୱାସ୍ଥ୍ୟ, ଶିକ୍ଷା, ଶିଳ୍ପ, କୃଷି, ବାଣିଜ୍ୟ, ସଂଗୀତ, ନାନା ଶାସ୍ତ୍ରତତ୍ତ୍ୱ ସମ୍ବନ୍ଧରେ ଚର୍ଚ୍ଚା ଓ ଆଲୋଚନା ହେଉଥିଲା । ୧୮୩୮ ମସିହାରେ ସାଧୁ ସୁନ୍ଦର ଦାସଙ୍କ ଦେହତ୍ୟାଗପରେ ଏହି ପତ୍ରିକାଟିର ପ୍ରକାଶନ ବନ୍ଦ ହୋଇ ଯାଇଥିଲା ।

ଖ୍ରୀଷ୍ଟିୟାନ୍ ମିଶନାରୀମାନେ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ନିମିତ୍ତ କଟକ ଓ ବାଲେଶ୍ୱରରେ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରିଥିଲେ । ୧୮୪୯ ମସିହାରେ ରେଭରେଣ୍ଡ ଡବ୍ଲ୍ୟୁ ସି. ଲେସି. (Revl. W. C. Lacey)ଙ୍କ ସମ୍ପାଦନାରେ 'ଜ୍ଞାନାରୁଣ' ପ୍ରକାଶ

ପାଇଥିଲା । ମାତ୍ର ଅଧିକ ଖର୍ଚ୍ଚ ହେତୁ ଏହାର ଶୀଘ୍ର ବିଲୟ ଘଟିଥିଲା । ୧୮୫୬ ଖ୍ରୀଷ୍ଟାବ୍ଦରେ ଅନ୍ୟଏକ ଖ୍ରୀଷ୍ଟିୟାନ ମିଶନାରୀ ପତ୍ରିକା 'ପ୍ରବୋଧ ଚନ୍ଦ୍ରିକା' ପ୍ରକାଶ ପାଇଥିଲା । ସାହିତ୍ୟ ଚେତନା ଦୃଷ୍ଟିରୁ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏହାର ୧୮୫୬ ସାଲ 'ଜାନୁୟାରି ସଂଖ୍ୟା ୧'ରେ ଉଲ୍ଲେଖ ଅଛି— ଏ ପୁସ୍ତକ ଗ୍ରହଣ କରିବାକୁ କାହାର ଇଚ୍ଛା ହେଲେ ସେ କଟକ ସହର ନିବାସୀ ଶ୍ରୀଯୁକ୍ତ ଲେସି ସାହେବଙ୍କ ନିକଟକୁ ଚିଠି ଲେଖିଲେ ନତୁବା ସ୍ୱୟଂ ସାକ୍ଷାତ କଲେ ବାଞ୍ଛିତ କରିପାରିବେ । ମାସକୁ ମାସ ନୂତନ ନୂତନ କରି ଛପା ହେବ । ମୂଲ୍ୟ ଖଣ୍ଡକୁ ଦଶପଇସା ଲେଖାଏ । X X X କୌଣସି ବିଶେଷ ଧର୍ମର ପ୍ରଚାର ଏ ପୁସ୍ତକର ଅଭିପ୍ରାୟ ନୁହଇ । ଏ ସକାଶେ ତାହା ଆପଣା ଆପଣା ଗୃହରେ ଗ୍ରହଣକରି ପାଠକଲେ କାହାର ଇଷ୍ଟଧର୍ମ ହାନିହେବ ଏ ପ୍ରକାର ଶଙ୍କା କେହି ନକରିବେ । ଏହାପରେ ୧୮୬୧ ମସିହାରେ ଖ୍ରୀଷ୍ଟିୟାନ୍ ଭର୍ଣ୍ଣାକୁଲାର ସୋସାଇଟି ତରଫରୁ 'ଅରୁଣୋଦୟ' ନାମକ ଏକ ମାସିକ ପତ୍ରିକା ପ୍ରକାଶ ପାଇଥିଲା । ଏହା ତିନିବର୍ଷ ଅର୍ଥାତ୍ ୧୮୬୪ ମସିହା ପର୍ଯ୍ୟନ୍ତ ପ୍ରକାଶ ପାଇଥିଲା ।

୧୮୬୫ ଜୁଲାଇ ମାସରେ କଟକରେ 'କଟକ ପ୍ରିଣ୍ଟିଙ୍ଗ୍ କମ୍ପାନି'ଙ୍କ ମୁଦ୍ରଣାଳୟ ପ୍ରତିଷ୍ଠା କରାଯାଇଥିଲା । ପୁନଶ୍ଚ ନଅଙ୍କଦୁର୍ଭିକ୍ଷ ସମୟରେ ୪ । ୮ । ୧୮୬୬ରେ କଟକର ଆଲେମଚାନ୍ଦ ବଜାରରୁ 'ଉତ୍କଳଦୀପିକା' ପ୍ରକାଶ ପାଇଥିଲା । ଏହାର ସଂପାଦକ ଥିଲେ କର୍ମଯୋଗୀ ଗୌରୀଶଙ୍କର । ଏହାର ପ୍ରଥମ ସଂଖ୍ୟା ଏ ପର୍ଯ୍ୟନ୍ତ ମିଳିନାହିଁ । ଦ୍ୱିତୀୟ ସଂଖ୍ୟା (ଉତ୍କଳ ଦୀପିକା ଭାଗ-୧, ତା ୧୧ରିଖ ଅଗଷ୍ଟ ସନ ୧୮୬୬ ମସିହା ସଂଖ୍ୟା-୨) 'ରେ ଉଲ୍ଲେଖ ଅଛି- କଟକ ଦୁର୍ଭିକ୍ଷ ନିବାରଣ କମେଟି ଏହି ଉତ୍କଳ ଦୀପିକା ସହର କଟକ ଆଲେମ୍ ଚାନ୍ଦ ବଜାର କଟକ ପ୍ରିଣ୍ଟିଙ୍ଗ୍ କମ୍ପାନିର ପଥର ଛାପାରେ ମୁଦ୍ରିତ ହୋଇ ପତ୍ରିକାର ଅଧିକାରୀଙ୍କ ସକାଶେ ପ୍ରଚାର କରାଗଲା । ଏଥିରେ ଓଡ଼ିଶାର ସାମାଜିକ, ରାଜନୀତିକ,ଆର୍ଥନୀତିକଚିତ୍ର ରୂପାୟିତ ହେଉଥିଲା । ସହଯୋଗିତା କରିଥିଲେ ବିଚିତ୍ରାନନ୍ଦ ଦାସ, ଜଗମୋହନଲାଲ, ଭଗୀରଥ ଷାଠିଆ ପ୍ରମୁଖ ମନୀଷୀ ଗଣ । ଊନବିଂଶ ଶତାବ୍ଦୀର ପତ୍ର ପତ୍ରିକା ପର୍ଯ୍ୟାୟରେ ଉତ୍କଳଦୀପିକା ଓଡ଼ିଶାର ଅର୍ଦ୍ଧଶତାବ୍ଦୀର ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । ସେତେବେଳେ ସମ୍ବାଦପତ୍ର କହିଲେହିଁ 'ଦୀପିକା'କୁ ବୁଝାଉଥିଲା ।

"ଖ୍ରୀଷ୍ଟିୟାନ୍ ମିଶନାରୀମାନଙ୍କ ଉଦ୍ୟମରେ କେତେଖଣ୍ଡ ଖ୍ରୀଷ୍ଟିୟାନ୍ ଧର୍ମଗ୍ରନ୍ଥ ଇଂରେଜୀରୁ ଅନୁବାଦିତ ହୋଇ ପ୍ରକାଶିତ ହୋଇଥିଲା । ସ୍କୁଲ ସଂଖ୍ୟା ଅଳ୍ପଥିବାରୁ

ଆଧୁନିକ ଧରଣର ପାଠ୍ୟପୁସ୍ତକ ରଚନା ଦିଗରେ ଅତିକ୍ଷୀଣ ଉଦ୍ୟମ ହୋଇଥିଲା । ଏ ଦିଗରେ ମଧ୍ୟ ପାଦ୍ରି ସାହେବମାନେ ଅଗ୍ରଣୀ ହୋଇଥିଲେ । କେତେଖଣ୍ଡି ବଂଗଳା ପାଠ୍ୟପୁସ୍ତକ ଅନୁଦିତ ହୋଇ ବ୍ୟବହୃତ ହେଉଥିଲା । ସରକାର ବହୁ ସଂଖ୍ୟାରେ ପାଠ୍ୟପୁସ୍ତକ ଛପାଇକରି ବିଦ୍ୟାଳୟମାନଙ୍କୁ ଯୋଗାଉଥିଲେ । ଗ୍ରାମର ଘୃଣ୍ଟଶାଳୀମାନଙ୍କରେ ପ୍ରାଚୀନଶୈଳୀରେ ଶିକ୍ଷା ପ୍ରଚଳିତ ଥିଲା । ସଂସ୍କୃତ ପଣ୍ଡିତ ଓ ଅବଧାନମାନଙ୍କ ହସ୍ତରେ ଶିକ୍ଷା ରହିଥିଲା କହିଲେ ଚଳେ । ଏହିଂଶରେ ମାସିକ ସାପ୍ତାହିକ ପ୍ରଭୃତି ପତ୍ର-ପତ୍ରିକା ବେଶୀ ସଂଖ୍ୟାରେ ନଥିଲା । ଯେଉଁଗୁଡ଼ିକ ପ୍ରକାଶ ପାଇଥିଲା ସେଗୁଡ଼ିକ ବେଶୀ-ଦିନ ତିଷ୍ଠିପାରି ନଥିଲା । ନଅଙ୍କ (ଖ୍ରୀ ୧୮୬୬)ର ଭୀଷଣ ଦୁର୍ଭିକ୍ଷରେ ଓଡ଼ିଶା ଜନ-ସାଧାରଣଙ୍କର ଚକ୍ଷୁ ଉନ୍ମୀଳିତ ହୋଇଗଲା । ଲୋକଙ୍କ ମଧ୍ୟରେ ଆଧୁନିକଶୈଳୀର ଶିକ୍ଷା ପ୍ରତି ଆଗ୍ରହ ଜାଗ୍ରତ ହୋଇ ଇଂରେଜୀର ବୃଦ୍ଧି ପାଇଲା । ଏହା ଫଳରେ କ୍ରମେ ପତ୍ରପତ୍ରିକା କାବ୍ୟକବିତାଙ୍କ ଗ୍ରନ୍ଥ ଓ ପାଠ୍ୟପୁସ୍ତକର ସଂଖ୍ୟା ବୃଦ୍ଧି ପାଇଲା । ମୁଦ୍ରଣ ଯନ୍ତ୍ରର ସଂଖ୍ୟା ମଧ୍ୟ ବର୍ଦ୍ଧିତ ହେଲା । ଓଡ଼ିଶାର ଲୋକଙ୍କ ପ୍ରାଣରେ ନୂତନ ଉନ୍ମାଦନା ନୂତନ ଚେତନା ଜାଗ୍ରତ ହେବାରୁ ସବୁ କ୍ଷେତ୍ରରେ ଉନ୍ନତିର ଲକ୍ଷଣ ଦେଖାଗଲା ।

'ସମ୍ବାଦବାହିକା' (ପ୍ରାଥମିକ ନାମ 'ବୋଧଦାୟିନୀ' ଓ 'ବାଲେଶ୍ୱର ସମ୍ବାଦ ବାହିକା') ୧୮୬୮ ଜୁଲାଇ ମାସରେ ବାଲେଶ୍ୱରରୁ ପ୍ରକାଶ ପାଇଥିଲା । ଏହାର ଆଦ୍ୟ ସମ୍ପାଦକ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ । ପରବର୍ତ୍ତୀକାଳରେ ଫକୀର ମୋହନ ସେନାପତିଙ୍କ ସମ୍ପାଦନାରେ ଏହା ପ୍ରକାଶ ପାଇଥିଲା । ୧୮୬୮ ଖ୍ରୀଷ୍ଟାବ୍ଦ ଜୁଲାଇରୁ ୧୮୭୧ ଜୁନ୍ ପର୍ଯ୍ୟନ୍ତ ମାସିକ ପତ୍ରିକା ଭାବରେ, ୧୮୭୧ ଜୁଲାଇରୁ ୧୮୭୭ ଖ୍ରୀଷ୍ଟାବ୍ଦ ଡ଼ିସେମ୍ବର ୧୬ ତାରିଖ ପର୍ଯ୍ୟନ୍ତ ପାକ୍ଷିକ ଭାବରେ ଓ ୧୮୭୮ ସାଲ ଜାନୁୟାରୀ ୩ ତାରିଖଠାରୁ ସାପ୍ତାହିକ ଭାବରେ ପ୍ରକାଶ ପାଇଥିଲା । ଓଡ଼ିଶାର ସାଂସ୍କୃତିକ ଜାଗରଣରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା । ୧୮୬୯ ଜାନୁୟାରୀରେ ଓଡ଼ିଶାର ପ୍ରଥମ ଇଂରେଜୀ ପତ୍ରିକା 'କଟକ ଆର୍ଗସ୍' ପ୍ରକାଶ ପାଇଥିଲା । ଏହାପରେ ୧୮୬୯ ଫେବୃୟାରୀ ୧୬ ତାରିଖ ମଙ୍ଗଳବାର କଟକ ସୋସାଇଟି ତରଫରୁ 'ଉତ୍କଳ ହିତୈଷିଣୀ' ପ୍ରକାଶ ପାଇଥିଲା । ଏହାର ସମ୍ପାଦକ ଥିଲେ କାଳିପଦ ବାନାର୍ଜୀ । ଏହା ଏକ ପାକ୍ଷିକ ପତ୍ରିକା । ୧୮୬୯ ଖ୍ରୀଷ୍ଟାବ୍ଦ ଫେବୃଆରୀ ୨୨ ତାରିଖ ସୋମବାର ଦିନ 'କଟକଷ୍ଟାର' ପତ୍ରିକା ପ୍ରକାଶ ପାଇଥିଲା । 'କଟକଷ୍ଟାର ସମ୍ବାଦପତ୍ରରେ ୧୮୬୯ ଜୁଲାଇ ପ୍ରଥମ ସପ୍ତାହର ସଂଖ୍ୟାରେ ଇଂରେଜୀରେ ଉମାଚରଣ ହାଲଦାର୍ ଖଣ୍ଡିଏ ସୁଦୀର୍ଘ ପତ୍ର

ପ୍ରକାଶ କରିଥିଲେ । ତାର ଉଦ୍ଦେଶ୍ୟ ହେଲା, ବଙ୍ଗଳା ଅକ୍ଷରରେ ଉତ୍କଳ ଭାଷା ପୁସ୍ତକ ଓ ସମ୍ବାଦପତ୍ରାଦି ମୁଦ୍ରିତ ହେବ; ଏହାଦ୍ୱାରା ବଙ୍ଗଳା ଓ ଉତ୍କଳ ଉଭୟ ପ୍ରଦେଶର ଲୋକେ ସହଜରେ ଓଡ଼ିଆ ଭାଷା ଉତ୍ତମରୂପେ ଓ ସହଜରେ ଶିକ୍ଷା କରିପାରିବେ । ଉତ୍କଳ ଦୀପିକା ଭାଗ ୪, ସଂଖ୍ୟା ୩୯, ତା୨୫-୯-୧୮୬୯ରେ ଏହାର ପ୍ରତିବାଦ କରି-ଥିଲା । ୧୮୬୯ ଖ୍ରୀଷ୍ଟାବ୍ଦ ନଭେମ୍ବର ୭ ତାରିଖ ମଙ୍ଗଳବାର ଦିନ 'କଟକ ଷ୍ଟାଣ୍ଡାର୍ଡ' ପତ୍ରିକା, 'ଉତ୍କଳ ଶୁଭକରୀ' ପତ୍ରିକା ୧୮୬୯ ଖ୍ରୀଷ୍ଟାବ୍ଦ ନଭେମ୍ବର ୮ ତାରିଖରେ ପ୍ରକାଶ ପାଇଥିଲା । ଏହା ଏକ ବ୍ରାହ୍ମଧର୍ମ ପ୍ରଚାରମୂଳକ ପତ୍ରିକା । ଏହାର ସମ୍ପାଦକ ଥିଲେ ତ୍ରିଲୋକ୍ୟନାଥ ମୁଖୋପାଧ୍ୟାୟ ।

୧୮୭୦ ମସିହା ମେ ମାସ ୪ଠାର ତାରିଖରେ ହୋଇଥିବା କଲିକତାର ଏସିଆଟିକ ସୋସାଇଟି ବୈଠକରେ ଘମାଘୋଟ ଆଲୋଚନାରେ ଅଂଶ ଗ୍ରହଣ କରି ତଦାନୀନ୍ତନ ଭାରତ ବିଖ୍ୟାତ ଐତିହାସିକ ରାଜେନ୍ଦ୍ରଲାଲ ମିତ୍ର ଦୀର୍ଘ ୧୭ ପୃଷ୍ଠା ବ୍ୟାପୀ ଏକ ପ୍ରବନ୍ଧ ପାଠ କରିଥିଲେ । ସେଥିରେ ଓଡ଼ିଆ ଭାଷାକୁ ବଙ୍ଗଳାର ଉପଭାଷା ବୋଲି ସେ ଚିତ୍ରଣ କରିଥିଲେ ।

୧୮୭୦ରେ କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟ 'ଓଡ଼ିଆ ସ୍ୱତନ୍ତ୍ର ଭାଷାନୟ' ନାମକ ଖଣ୍ଡିଏ ବଂଗଳା ବହି ଲେଖି ପ୍ରଚାର କରିଥିଲେ । ଓଡ଼ିଆ ଓ ବଂଗଳା ଭାଷା ଏକ ଥିବାର ପ୍ରତିପାଦନ କରି ଓଡ଼ିଆ ଭାଷାର ଆବଶ୍ୟକତା ନାହିଁ ବୋଲି ପ୍ରଚାର କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । କାନ୍ତିଚନ୍ଦ୍ର ଭଟ୍ଟାଚାର୍ଯ୍ୟଙ୍କ 'ଓଡ଼ିଆ ସ୍ୱତନ୍ତ୍ର ଭାଷାନୟ' ଗ୍ରନ୍ଥର ସମା-ଲୋଚନା ତତ୍କାଳୀନ ସ୍କୁଲଇନସ୍‌ପେକ୍ଟର ଭୂଦେବ ମୁଖୋପାଧ୍ୟାୟଙ୍କ ଦ୍ୱାରା 'ଏଡୁକେସନ୍ ଗେଜେଟ୍' ପ୍ରକାଶ ପାଇଥିଲା । ଭାଷାବିତ୍ ବିମ୍‌ସ ସାହେବ (John Beams) ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସମ୍ବନ୍ଧରେ ମତପ୍ରକାଶ କରିଥିଲେ । 'ଉତ୍କଳ ହିତୈଷିଣୀ'ରେ ବଂଗଭାଷା ସପକ୍ଷରେ ମତପ୍ରକାଶ ପାଇଥିବାରୁ 'ଉତ୍କଳ ଦୀପିକା' ତୀବ୍ର ବିରୋଧ କରିଥିଲେ । ୧୮୭୧ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସରେ 'କଟକ ଜନକ୍ଲ' ପ୍ରକାଶ ପାଇଥିଲା । ୧୮୭୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସରେ 'ଆଗ୍ରସ୍ୱାନୀ' ପତ୍ରିକା ପ୍ରକାଶ ପାଇଥିଲା । ଏ ପତ୍ରିକାର ସମ୍ପାଦକ ଥିଲେ ରେଭେରଣ୍ଡ ଜେ. ଫିଲିପ୍‌ସ ।

୧୮୭୩ ଜାନୁୟାରୀ ମାସରେ 'ଉତ୍କଳ ଦର୍ପଣ' ପତ୍ରିକା ବାଲେଶ୍ୱର ଉତ୍କଳ ପ୍ରେସରୁ ପ୍ରକାଶ ପାଇଥିଲା । ଏହାର ପୃଷ୍ଠପୋଷକ ଓ ପରିଚାଳକ ଥିଲେ

କୁମାର ବାହାଦୂର ବୈକୁଣ୍ଠନାଥ ଦେ । ଉତ୍କଳ ଦୀପିକା ୨୧ । ୧୧ । ୧୮୭୨ରେ ବିଜ୍ଞାପନ ପ୍ରକାଶ ପାଇଥିଲା— ଆମ୍ଭେମାନେ 'ଉତ୍କଳ ଦର୍ପଣ' ନାମକ ଖଣ୍ଡେ ମାସିକ ସନ୍ଦର୍ଭ ପ୍ରକାଶ କରିବାକୁ ମନସ୍ଥ କରିଅଛୁ । ଉତ୍କଳ ସାହିତ୍ୟର ଉନ୍ନତି ବିଧାନ, ଉତ୍କଳୀୟ ସାମାଜିକ ରୀତି ସଂଶୋଧନ,ଏହି ପତ୍ରିକାର ମୁଖ୍ୟ ଉଦ୍ଦେଶ୍ୟ ଅଟେ । ଏଣୁକରି ଏଥିରେ ଶିକ୍ଷା, ସାହିତ୍ୟ, ବିଜ୍ଞାନ, ସଙ୍ଗୀତ, ରାଜକୀୟ, ସାମାଜିକ ଓ ନୀତି ସମ୍ବନ୍ଧୀୟ ପ୍ରସ୍ତାବମାନ ପ୍ରକାଶିତ ହେବ । ଏହା ପ୍ରଥମ ଓଡ଼ିଆ ସାହିତ୍ୟ ପତ୍ରିକା(ଡ଼କ୍ଟର ବଂଶୀଧର ମହାନ୍ତି 'ପ୍ରବୋଧଚନ୍ଦ୍ରିକାକୁ' ପ୍ରଥମ ଓଡ଼ିଆ ସାହିତ୍ୟ ପତ୍ରିକା ଭାବରେ ଉଲ୍ଲେଖ କରିଛନ୍ତି) ଏଥିରେ କବିବର ରାଧାନାଥଙ୍କ 'ଲେଖାବଳୀ', 'ମେଘଦୂତ' 'ଇତାଲୀୟ ଯୁବା' 'ବିବେକୀ', 'କାଳିଦାସ କାବ୍ୟ', 'ପବନ' ଇତ୍ୟାଦି ମଧୁସୂଦନ ରାଓଙ୍କ 'ଶ୍ମଶାନ', 'ନିଶିଥଚିନ୍ତା', 'ନବାସିତର ବିଳାପ', 'ବୃଦ୍ଧଦେବ', 'ଅଯୋଧ୍ୟା ପ୍ରତ୍ୟାଗମନ', 'ସୃଷ୍ଟି' 'ଉଲ୍‌କାପିଣ୍ଡ' 'ଶାସନ ପ୍ରଣାଳୀ', 'ଚନ୍ଦ୍ର ଓ ତାରା', 'ପିତୃଭକ୍ତି', 'ପ୍ରଣୟର ଅଦ୍ଭୁତ ପରିଣାମ' ଇତ୍ୟାଦି ପ୍ରକାଶ ପାଉଥିଲା । ଚତୁର୍ଭୁଜ ପଟ୍ଟନାୟକ ଏହାର ଅନ୍ୟତମ ଉଦ୍ୟୋକ୍ତା ଥିଲେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଭାଷାରେ- 'ଉତ୍କଳ ଦର୍ପଣହିଁ ଅଧୁନିକ ଉତ୍କଳ ସାହିତ୍ୟର ଆଦ୍ୟଲେଖକମଣ୍ଡଳୀ ପ୍ରସ୍ତୁତ କରିଅଛି । ଡ଼କ୍ଟର ନଟବର ସାମନ୍ତରାୟଙ୍କ ମତରେ 'ଉତ୍କଳ ଦର୍ପଣ' ୧୮୭୩ ଜାନୁୟାରୀରୁ ପ୍ରଥମେ ମାସିକ, ୧୮୭୫ ଜାନୁୟାରୀରୁ ପାକ୍ଷିକ ସମ୍ବାଦ ପତ୍ରରେ ପରିଣତ ହୋଇ ୧୮୮୫ ଡ଼ିସେମ୍ବର ବେଳକୁ ବନ୍ଦ ହୋଇ-ଯାଇଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ସୁଧାକର ପଟ୍ଟନାୟକ ଓ ପ୍ରିୟରଂଜନ ସେନଙ୍କ ମତରେ ୧୮୭୭ରେ ଏହା ପାକ୍ଷିକ, ୧୮୭୯ରେ ସାପ୍ତାହିକ ହୋଇଥିଲା । ଏ ପତ୍ରିକାର ବିଲୟକାଳ ପ୍ରିୟରଂଜନ ସେନ ୧୮୮୪, ରାମଚନ୍ଦ୍ର ମିଶ୍ର ୧୮୮୫ ଓ ମୃତ୍ୟୁଂଜୟ ରଥ ୧୮୮୭ଉଲ୍ଲେଖ କରିଛନ୍ତି । 'ଉତ୍କଳପୁତ୍ର' ୧୮୭୩ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୬ତାରିଖ ବୁଧବାର ଠାରୁ କଟକରୁ ପ୍ରକାଶ ପାଇଥିଲା । ଏହାର ପ୍ରତିଷ୍ଠାତା ଓ ସମ୍ପାଦକ ପ୍ୟାରିମୋହନ ଆଚାର୍ଯ୍ୟ । ଏହା ଏକ ବିଶିଷ୍ଟ ସମାଲୋଚନା ପତ୍ରିକା । ଏହା ପ୍ରଥମେପାକ୍ଷିକ ସମ୍ବାଦପତ୍ର ଓ ପରେ ସାପ୍ତାହିକ ହୋଇଥିଲା । ପଣ୍ଡିତ ଗୋବିନ୍ଦରଥଙ୍କ କେତେ ଲେଖା ଏ ପତ୍ରି-କାରେ ପ୍ରକାଶ ପାଇଥିଲା । ଭଗବତ୍‌ ଭକ୍ତି ପ୍ରଦାୟିନି' ପତ୍ରିକା ପାକ୍ଷିକ ୧୮୭୩ ଅଗଷ୍ଟ ମାସରେ କ୍ଷୀରୋଦନାଥ ମିତ୍ରଙ୍କ ସଂପାଦନାରେ ପ୍ରକାଶ ପାଇଥିଲା । ୧୮୭୩ ନଭେମ୍ବର୨୫ ତାରିଖ ଶନିବାରଠାରୁ ଦୀନନାଥ ବନ୍ଦୋପାଧ୍ୟାୟଙ୍କ ସମ୍ପାଦନାରେ କଟକ ପ୍ରିଣ୍ଟିଙ୍ଗ୍‌ ଯନ୍ତ୍ରାଳୟରୁ 'ସ୍ୱଦେଶୀ' ପ୍ରକାଶ ପାଇଥିଲା । ଡ଼କ୍‌ଟର ନଟବର ସାମନ୍ତରାୟଙ୍କ ମତରେ ୧୮୭୪ ଖ୍ରୀଷ୍ଟାବ୍ଦ ଏପ୍ରିଲ୍‌ ମାସରେ ମାସିକ ପତ୍ରିକା 'ଶିକ୍ଷକ' ବାଲେଶ୍ୱରରୁ ପ୍ରକାଶ

ପାଇଥିଲା । ସୁଧାକର ପଟ୍ଟନାୟକ, ଚନ୍ଦ୍ରଶେଖର ମହାପାତ୍ରଙ୍କ ମତରେ (୧୮୭୩ ଖ୍ରୀଷ୍ଟାବ୍ଦ) ଏହାର ସମ୍ପାଦକ ଥିଲେ ଭକ୍ତକବି ମଧୁସୂଦନ ରାଓ । ୧୮୭୪ ମେ ମାସରେ ବାଲେଶ୍ୱରରୁ 'ଧର୍ମବୋଧିନୀ' (Dharmabodhini) ପ୍ରକାଶ ପାଇଥିଲା । ଏହାର ଜନ୍ମଦାତା ଓ ପ୍ରଧାନ ପୃଷ୍ଠପୋଷକ ଭକ୍ତକବି ମଧୁସୂଦନ ରାଓ । ଏହା ଏକ ବ୍ରାହ୍ମଧର୍ମ ପ୍ରଚାର ମୂଳକ ପତ୍ରିକା । (ଚନ୍ଦ୍ରଶେଖର ମହାପାତ୍ରଙ୍କ ମତରେ ଏହାର ପ୍ରକାଶ ସମୟ ୧୮୭୩) । ୧୮୭୪ ଅଗଷ୍ଟ ମାସରେ ବାଲେଶ୍ୱର ପ୍ରିଣ୍ଟିଙ୍ଗ କମ୍ପାନୀରୁ ଉତ୍କଳ ସଂସ୍କାରକ, ୧୮୭୪ ସେପ୍ଟେମ୍ବର ମାସରେ ପୁରୀ ଭକ୍ତ ପ୍ରଦାୟିନୀ ଯନ୍ତ୍ରାଳୟରୁ ମାସିକ ପତ୍ରିକା 'ଚନ୍ଦ୍ରିକା' (ପୁରୁଷୋତ୍ତମଚନ୍ଦ୍ରିକା) ପ୍ରକାଶ ପାଇଥିଲା ୧୮୭୬ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସରୁ ଗଂଜାମର ବ୍ରହ୍ମପୁରଠାରୁ ଖ୍ରୀଷ୍ଟିୟାନ ମଣ୍ଡଳୀଙ୍କଦ୍ୱାରା ଇଂରାଜୀ, ତେଲୁଗୁ ଓ ଓଡ଼ିଆ ଲେଖାକୁନେଇ 'ସ୍ୱଦେଶୀ' ପ୍ରକାଶ ପାଇଥିଲା । ୧୮୭୭ ନଭେମ୍ବର ମାସରେ ଅସାମୟିକ ଧର୍ମକେତୁ' ୧୮୭୭ରେ ବ୍ରହ୍ମପୁରରୁ 'ବାର୍ତ୍ତାଲହରୀ' ପ୍ରକାଶ ପାଇଥିଲା ।

୧୮୭୮ ଖ୍ରୀଷ୍ଟାବ୍ଦରେ କଟକରୁ ମାସିକ ପତ୍ରିକା 'ଉତ୍କଳ ମଧୁପ' ପତ୍ରିକା ପ୍ରକାଶ ପାଇଥିଲା । ଏହି ପତ୍ରିକା ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ପଟ୍ଟନାୟକଙ୍କ ସମ୍ପାଦନାରେ କଟକ ପ୍ରିଣ୍ଟିଙ୍ଗ କମ୍ପାନୀ ତରଫରୁ ପ୍ରକାଶ ପାଇଥିଲା । ଏହି ପତ୍ରିକାରେ ମଧ୍ୟଯୁଗୀୟ କାବ୍ୟକୃତ ପ୍ରକାଶ ପାଇଥିଲା । ଏହା ଓଡ଼ିଶାର ଦ୍ୱିତୀୟ ସାହିତ୍ୟ ପତ୍ରିକା । (ଡକ୍ଟର ଶ୍ରୀନିବାସ ମିଶ୍ରଙ୍କ ମତରେ ଏହି ପତ୍ରିକା ଉତ୍କଳ ସଭାର ମୁଖପତ୍ର ଓ ଏହାର ସମ୍ପାଦକ ଗୋପାଳ ଚରଣ ଦତ୍ତ) ରାମଶଙ୍କର ରାୟ ଏହାର ଯଥାର୍ଥ ପ୍ରବର୍ତ୍ତକ ଓ ପରିଚାଳକ ଥିଲେ । 'ସୌଦାମିନୀ' ଉପନ୍ୟାସ ଏଥିରେ କ୍ରମଶଃ ପ୍ରକାଶ ପାଇଥିଲା । ୧୮୮୦ରେ ଏହି ପତ୍ରିକା ଲୋପ ପାଇଥିଲା । ପଣ୍ଡିତ ମୃତ୍ୟୁଞ୍ଜୟ ରଥ କହନ୍ତି—୧୮୭୯ ମସିହାରେ କଟକ ଗଭର୍ଣ୍ଣମେଣ୍ଟଙ୍କ ଉତ୍କଳାନୁବାଦକ କାର୍ଯ୍ୟାଳୟରୁ ରାଜକୀୟ ବାର୍ତ୍ତା ସମ୍ବଳିତ 'ଓଡ଼ିଆ ଗେଜେଟ୍' ପ୍ରଚାରିତ ହୋଇଥିଲା । କିନ୍ତୁ ଏହା ପ୍ରଥମ ପ୍ରକାଶ ନୁହେଁ ବୋଲି ପ୍ରମାଣ ମିଳେ । ୧୮୫୧ରେ ଶ୍ରୀଯୁକ୍ତ କଲ୍‌ବିନ୍ ସାହେବଙ୍କ ଅମଳରେ ଏହା ପ୍ରକାଶିତ ହୋଇଥିଲା । (୧୦) ୧୮୭୯ ମସିହାରେ 'ମୟୂରଭଞ୍ଜ' ପାକ୍ଷିକ ପତ୍ରିକା ହରପ୍ରସାଦ ଦାସଙ୍କ ସମ୍ପାଦନାରେ ପ୍ରକାଶ ପାଇଥିଲା । ୧୮୭୯ରେ ବାରିପଦାର 'ମୟୂରଭଞ୍ଜ' ଦ୍ୱିଭାଷୀ ଇଂରାଜୀ, ଓଡ଼ିଆ ପତ୍ରିକା ପ୍ରକାଶ ପାଇଥିଲା । (ଚନ୍ଦ୍ରଶେଖର ମହାପାତ୍ରଙ୍କ ମତରେ ୧୮୮୧), ୧୮୮୦ ଖ୍ରୀଷ୍ଟାବ୍ଦ ଏପ୍ରିଲ୍ (ବୈଶାଖ) ମାସରେ କଟକରୁ 'କୋହିନୁର'

ପତ୍ରିକା ପ୍ରକାଶ ପାଇଥିଲା । ୧୮୮୦ରେ ପୁରୀରୁ 'ପୁରୁଷୋତ୍ତମ ଦୀପିକା' ପ୍ରକାଶ ପାଇଥିଲା । ୧୮୮୨ରେ ବାଲେଶ୍ୱରରୁ 'ପ୍ରଜାବନ୍ଧୁ' ପ୍ରକାଶ ପାଇଥିଲା । ୧୮୮୨ ଏପ୍ରିଲ୍ ମାସରେ ପୁରୀ ପ୍ରିଣ୍ଟିଙ୍ଗ୍ କମ୍ପାନୀରୁ ସାପ୍ତାହିକ 'ପୁରୁଷୋତ୍ତମ ପତ୍ରିକା' ପ୍ରକାଶ ପାଇଥିଲା । ଏହାର ସମ୍ପାଦକଥିଲେ ହରିଧନ ଘୋଷ । ଡକ୍ଟର ନଟବର ସାମନ୍ତ ରାୟଙ୍କ ମତରେ ୧୮୮୩ ଜୁନମାସରେ ମିଶନାରୀ ପତ୍ରିକା 'ତାରକା' ପ୍ରକାଶ ପାଇଥିଲା । (ସୁଧାକର ପଟ୍ଟନାୟକ 1885ରେ ଓ ମୃତ୍ୟୁଞ୍ଜୟ ରଥ 1384ରେ 'ତାରକା ପ୍ରକାଶ ପାଇଥିବା ଉଲ୍ଲେଖକରିଛନ୍ତି) । ସେପ୍ଟେମ୍ବର ମାସରେ ଭବଗ୍ରାହୀ ଦାସଙ୍କ ସମ୍ପାଦନାରେ କଟକ ମିଶନ ଯନ୍ତ୍ରାଳୟରୁ 'ସେବକ' ପ୍ରକାଶ ପାଇଥିଲା । ଏହାର ପରିଚାଳକ ଥିଲେ 'ସେବକ ସଙ୍ଘ' । (ପଣ୍ଡିତ ମୃତ୍ୟୁଞ୍ଜୟରଥ ଓ ସୁଧାକର ପଟ୍ଟନାୟକ ମତରେ ୧୮୮୩ରେ କଟକ ମିଶନ ପ୍ରେସ୍‌ରୁ ସେବକସଙ୍ଘ ପରିଚାଳନାରେ ଚତୁର୍ଭୁଜ ପଟ୍ଟନାୟକଙ୍କ ସମ୍ପାଦନାରେ 'ସଂସ୍କାରକ' ପ୍ରକାଶ ପାଇଥିଲା) । ୧୮୮୭ରେ ସଂସ୍କାରକ ଓ 'ସେବକ'ପାର ବାସୁଦେବ ସୁଚଲଦେବଙ୍କ ଆନୁକୂଲ୍ୟରେ ପ୍ରକାଶ ପାଇଥିଲା । ଏଥିରେ ରାଧାନାଥ, ମଧୁସୂଦନ, ଫକୀରମୋହନ, ଚନ୍ଦ୍ରମୋହନ ମହାରଣା, ବିଶ୍ୱନାଥ କର, ନୀଳମଣି ବିଦ୍ୟାରତ୍ନ ପ୍ରଭୃତିଙ୍କ କବିତା, ପ୍ରବନ୍ଧ ଓ ସମାଲୋଚନା ପ୍ରକାଶ ପାଇଥିଲା । (ଡକ୍ଟର ନଟବର ସାମନ୍ତରାୟ ଓ ରାମଚନ୍ଦ୍ର ମିଶ୍ରଙ୍କ ମତାନୁଯାୟୀ ସଂସ୍କାରକ ୧୮୮୪ ଖ୍ରୀଷ୍ଟାବ୍ଦ ଅକ୍ଟୋବରରେ ପ୍ରକାଶ ପାଇଥିଲା) । ଏହା ପ୍ରଥମେ ମାସିକ ଓ ପରେ ସାପ୍ତାହିକ ହୋଇଥିଲା । ୧୮୮୪ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସରେ ବାଲେଶ୍ୱରରୁ 'ଧୂମକେତୁ' ପ୍ରକାଶ ପାଇଥିଲା । ଏହା ଏକ ମାସିକ ସାହିତ୍ୟ ପତ୍ରିକା । ଏହାର ପରିଚାଳକ ଶ୍ରୀଯୁକ୍ତ ଦ୍ୱାରକାନାଥ ଦାସ ଓ ଶିବନାରାୟଣ ନାୟକ ପ୍ରଭୃତି । ୧୮୮୪ ଖ୍ରୀଷ୍ଟାବ୍ଦ ନଭେମ୍ବର ମାସରେ 'ନବସମ୍ବାଦ' ମାସିକ ପତ୍ରିକା ପ୍ରକାଶ ପାଇଥିଲା । ୧୮୮୫ରେ କଟକରୁ ମାସିକ 'ପ୍ରଦୀପ' ପ୍ରକାଶ ପାଇଥିଲା । ଏହାର ଲେଖକ ଓ ଉଦ୍ୟୋକ୍ତା ସାଧୁଚରଣ ରାୟ, ବୈକୁଣ୍ଠନାଥ ଦତ୍ତ, ଶରତଚନ୍ଦ୍ର ମୁଖୋପାଧ୍ୟାୟ,ମୃଗାଙ୍କଧର ରାୟଚୌଧୁରୀ, ଭୂପତିନାଥ ବସୁ । ଭକ୍ତକବି ମଧୁସୂଦନ ରାଓଙ୍କ 'ଅକାଶଦ୍ରୁତ' ପ୍ରଦୀପରେ ପ୍ରଥମେ ପ୍ରଥମେ ପ୍ରକାଶ ପାଇଥିଲା । 1385 ଏପ୍ରିଲମାସରେ 'ହରିଭକ୍ତି ପ୍ରଦାୟିନୀ' ପ୍ରକାଶ ପାଇଥିଲା । 1886 ଜାନୁୟାରୀରେ ବାରିପଦାରୁ 'ବ୍ୟବସାୟୀ' ପ୍ରକାଶ ପାଇଥିଲା । ଏହା କୃଷି, ଶିଳ୍ପ, ବାଣିଜ୍ୟ ବିଷୟକ ପତ୍ରିକା । 1836 ଏପ୍ରିଲରେମାସିକ 'ତାରକା' ଓ 'ଶୁଭବାର୍ତ୍ତା' ପ୍ରକାଶ ପାଇଥିଲା । 1886ରେ ଓଡ଼ିଶା ଷ୍ଟୁଡେଣ୍ଟସ' କେନ୍ଦ୍ରାପଡାରୁ

ପ୍ରକାଶ ପାଇଥିଲା । ଏହା ଏକ ଇଂରାଜୀ ମାସିକ ସମ୍ବାଦପତ୍ର । ଏହାର ସମ୍ପାଦକଥିଲେ ଲକ୍ଷ୍ମୀନାରାୟଣ ଦାସଗୁପ୍ତ । 1886ରେ କଟକରୁ ମାସିକ ପତ୍ରିକା 'ଶିକ୍ଷାବନ୍ଧୁ' ପ୍ରକାଶ ପାଇଥିଲା । ଏ ପତ୍ରିକାର ପ୍ରବର୍ତ୍ତକ ଭକ୍ତକବି ମଧୁସୂଦନ ରାଓ । ଏହି ପତ୍ରିକାରେ ସାଧୁଚରଣ ରାୟ, ବିଶ୍ୱନାଥ କର, ବିଜୟ ଚନ୍ଦ୍ର ମଜୁମ୍‌ଦାର, ଶ୍ୟାମ ସୁନ୍ଦର ନନ୍ଦଙ୍କ ଲେଖା ପ୍ରକାଶ ପାଇଥିଲା ।

"ନବ ସମ୍ବାଦ ପତ୍ରିକା 1887ସାଲ ଜାନୁୟାରୀ 23ତାରିଖଠାରୁ ଶ୍ରୀଯୁକ୍ତ ନାଥ ବସୁଙ୍କ ସମ୍ପାଦନାରେ ପ୍ରଥମେ କଟକରୁ ଆତ୍ମପ୍ରକାଶ କରିଥିଲା । X X X ଏହି ପତ୍ରିକାର ଶିରୋନାମାରେ ମୁଦ୍ରିତ ହେଉଥିଲା— ସତ୍ୟମେବ ଜୟତେ ନାନୃତମ୍ ତସ୍ମିନ୍ ପ୍ରୀତ-ସ୍ତସ୍ୟ ପ୍ରିୟକାର୍ଯ୍ୟ ସାଧନଂ ଚ ତଦୁପାସନ-ମେବ' । ସେତେବେଳେ ଦୈନିକ ପତ୍ରିକା କେହି କଳ୍ପନା ସୁଦ୍ଧା କରିପାରୁନଥିଲେ । ଏହି ସାପ୍ତାହିକ ପତ୍ରିକାଟି ଧର୍ମନୀତି,ରାଜନୀତି, ସମାଜନୀତି, ସାହିତ୍ୟ, ଦର୍ଶନ, ବିଜ୍ଞାନାଦି ବିଷୟରେ ଆଲୋଚନାକରି ଦେଶର ସେବା କରିବେ ବୋଲି ଘୋଷଣା କରିଥିଲେ । X X X 'ନବସମ୍ବାଦ' ପ୍ରଥମକାଗ ପ୍ରଥମ ସଂଖ୍ୟାରେ ନିଜର ଲକ୍ଷ୍ୟ ଘୋଷଣା କରି ଲେଖିଥିଲେ— ସୁପ୍ତ ଉତ୍କଳରେ ଗମ୍ଭୀର ନିଦ୍ରାଭଙ୍ଗ କରି ଲକ୍ଷ ଲକ୍ଷ ନରନାରୀଙ୍କ ନୟନକୁ ଚମତ୍କୃତ କରି ନବୀନ ଭାବରେ, ନବତେଜରେ "ନବ ସମ୍ବାଦ" ପୃଥିବୀରେ ପ୍ରଚାରିତ ହେଲା । ଆଜିଠାରୁ ଉତ୍କଳର ରାଜନୈତିକ, ଧର୍ମନୈତିକ ଓ ସାମାଜିକ କ୍ଷେତ୍ରରେ ଧୀରେ ଧୀରେ ଭୀଷଣ ସଂଘର୍ଷର ସୂତ୍ରପାତ ହେଲା ।' X X X ଯୁଗକବି ପଲ୍ଲୀକବିର ଆଭିମୁଖ୍ୟ ନେଇ 'ନବସମ୍ବାଦ' ଶୀର୍ଷକ ଏକ କବିତା ପ୍ରକାଶ ପାଇଥିଲା— 'ଶୁଣନରେ ନବସମ୍ବାଦ ବାରେ ହେବ ଶ୍ରବଣ / ନବଯୁଗ ବିଭୂ ବିଧାନେ ଆସୁଅଛି ବହନ । ଇତ୍ୟାଦି ।" 1837 ଖ୍ରୀଷ୍ଟାବ୍ଦ ଏପ୍ରିଲରେ ଲଳିତ ମୋହନ ଚକ୍ରବର୍ତ୍ତୀଙ୍କ ସଂପାଦନାରେ 'ସାମ୍ୟବାଦୀ' ପ୍ରକାଶ ପାଇଥିଲା । ଏହାଏକ ମାସିକ ସମ୍ବାଦ ପତ୍ରିକା । ଏଥିରେ ଧର୍ମ, ନୀତିଶିକ୍ଷା ପ୍ରଭୃତି ପ୍ରକାଶ ପାଇଥିଲା 1887ରେ 'ଉତ୍କଳ ସେବକ' ପ୍ରକାଶ ପାଇଥିଲା ।

'ଓଡ଼ିଆ ଓ ନବସମ୍ବାଦ' 1888ସାଲ ଜାନୁୟାରୀ ପହିଲାରୁ ପ୍ରକାଶ ପାଇଥିଲା । ଏହାର ପ୍ରଥମ ସଂଖ୍ୟା ଜାନୁୟାରୀ ଚାରିତାରିଖରୁ ପ୍ରକାଶ ପାଇଥିଲା । ଏହି ପତ୍ରିକାରେ ରାଧାନାଥ, ମଧୁସୂଦନ, ରାମନାରାୟଣ ଲାଲ, ରୁଦ୍ରନାରାୟଣ ଷଡ଼ଙ୍ଗୀ ପ୍ରଭୃତି ଲେଖକ ଲେଖନୀ ଚାଳନ କରିଥିଲେ । ଏହି ପତ୍ରିକାରେ ମୟୂରଭଞ୍ଜ ରାଜାଙ୍କ ତରଫରୁ ଏକ ନିବେଦନ ପ୍ରକାଶ କରାଯାଇ ସେଥିରେ ଲେଖାଥିଲା— 'ଯଦି ଉତ୍କଳବାସୀ କୃତବିଦ୍ୟ

ଧର୍ମ ଓ ମଧ୍ୟବିତ୍ତ ସମ୍ପ୍ରଦାୟ ଦେଶୀୟ ସାହିତ୍ୟ ଓ ମାତୃଭାଷାର ଉନ୍ନତି ନିମନ୍ତେ ଯତ୍ନ-ବାନ ହୁଅନ୍ତି, ତେବେ କି ଆଜି ଏହାର ଅବସ୍ଥା ଏତେଦୂର ଶୋଚନୀୟ ହୋଇଥାନ୍ତା । 'ସଂସ୍କାରକ' 'ଓଡ଼ିଶାପାଟ୍ରିଅଟ୍'ରେ ପରିଣତ ହୋଇ ୧୮୮୮ମସିହାରେ ପ୍ରକାଶ ପାଇଥିଲା । ୧୮୮୮ମସିହା ଅକ୍‌ଟୋବରମାସରେ କଟକ ଉକ୍‌ଟୋରିଆ ପ୍ରେସ୍‌ରୁ ମାସିକ 'ଆଶା' ପ୍ରକାଶ ପାଇଥିଲା । ଏହାର ସମ୍ପାଦକ ଥିଲେ ସାଧୁ ଚରଣ ରାୟ । ଏହା ବ୍ରହ୍ମ-ସମାଜ ଦ୍ୱାରା ପରିଚାଳିତ ହେଉଥିଲା । ଏଥିରେ ମଧୁସୂଦନ ରାଓଙ୍କ ପ୍ରବନ୍ଧ, କବିତା, ସଙ୍ଗୀତ ପ୍ରକାଶ ପାଇଥିଲା । ବିଶ୍ୱନାଥ କରଙ୍କ 'ସ୍ୱାଧୀନ ଚିନ୍ତା' 'ପ୍ରତଜ୍ଞାବଳି' 'ମହାତ୍ମା' 'ମ୍ୟାଟସିନି' ପ୍ରବନ୍ଧ ପ୍ରକାଶ ପାଇଥିଲା । ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର 'ଓଡ଼ିଶା ପତ୍ରିକା' ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି—'ଆଶା' ୧୮୯୨ଖ୍ରୀଷ୍ଟାବ୍ଦରେ କଟକରୁ ପ୍ରକାଶ ପାଇଥିଲା । ଏହା ପ୍ରଥମ ନାରୀ ପତ୍ରିକା । ଏହାର ସମ୍ପାଦିକା ରେବା ରାୟ । 'ଉତ୍କଳ ଦୀପିକା' ଏହି ପତ୍ରିକାର ପ୍ରାପ୍ତି ସ୍ୱୀକାର କରି ଲେଖିଲେ— 'ଆଶା'ର ଲେଖା ଆଶାପ୍ରଦ । ଆଶାକରୁ ଏହା ସ୍ତ୍ରୀ ମଣ୍ଡଳୀରେ ଆଦୃତ ହେବ । ସମ୍ପାଦିକା ଆଶାର ଭାଷା ଆହୁରି ସରଳ କରିବେ ।"

୧୮୮୮ରେ 'କଟକ ସମାଚାର' ପତ୍ରିକା ପ୍ରକାଶ ପାଇଥିଲା । ୧୮୮୯ସାଲ ମେ ମାସ ୪ତାରିଖରୁ କଟକ ଉକ୍‌ଟୋରିଆ ପ୍ରେସ୍‌ରୁ ସପ୍ତାହିକ 'ଦୀପକ' ପ୍ରକାଶ ପାଇଥିଲା । ଏହି ବର୍ଷ କଟକର 'ସାହିତ୍ୟ ସମ୍ମିଳନୀ' ନାମକ ଅନ୍ୟ ଏକ ପତ୍ରିକା ପ୍ରକାଶ ପାଇ-ଥିଲା । 'ସମାଲୋଚନା' ପତ୍ରିକା ମଧ୍ୟ ଏହି ବର୍ଷ ପ୍ରକାଶ ପାଇଥିଲା ।

୧୮୮୯ଖ୍ରୀଷ୍ଟାବ୍ଦ ମେ ମାସ ୩୦ତାରିଖରୁ ଜଗନ୍ନାଥ ବଲ୍ଲଭ ପ୍ରେସ୍‌ରୁ, ବାମଣ୍ଡାରୁ 'ସମ୍ବଲପୁର ହିତୈଷିଣୀ' ପ୍ରକାଶ ପାଇଥିଲା । ଏହା ଏକ ସମ୍ବାଦପତ୍ର । ମାତ୍ର ଏହାର ସାହିତ୍ୟିକ ଓ ଇତିହାସ ଚେତନାର ଅବଦାନ ଅବିସ୍ମରଣୀୟ । ଏହାର ଆଦ୍ୟ ସମ୍ପାଦକ ନୀଳମଣି ବିଦ୍ୟାରତ୍ନ । ଏଥିରେ ରାଧାନାଥ, ଚନ୍ଦ୍ରମୋହନ ମହାରଣା, କପିଳେଶ୍ୱର ଶର୍ମା, ଶଶିଭୂଷଣ ରାୟ, ଫକୀର ମୋହନ ସେନାପତି, ବିଶ୍ୱନାଥ କର, ଗଙ୍ଗାଧର ମେହେର, ଦାମୋଦର ମିଶ୍ର ପ୍ରଭୃତିଙ୍କ ଲେଖା ପ୍ରକାଶ ପାଇଥିଲା । ବିଶ୍ୱନାଥ କରଙ୍କ 'ହିତବାଦଗୀତ 'ସାଧନା ଓ ସିଦ୍ଧି', 'ସାହିତ୍ୟଚର୍ଚ୍ଚା', 'ସାହିତ୍ୟ ଓ ସମାଲୋଚନା', 'କବିଉପେନ୍ଦ୍ରଭଞ୍ଜ' 'ଶିକ୍ଷା', 'ପୁରାତନ', 'ବାଲ୍ୟଶିକ୍ଷା' ଇତ୍ୟାଦି ପ୍ରବନ୍ଧ ଏହିପତ୍ରିକାରେ ପ୍ରକାଶ ପାଇଥିଲା । ଡକ୍ଟର ନଟବର ସାମନ୍ତରାୟଙ୍କ ଭାଷାରେ— "ଯେଉଁମାନେ ଆଧୁନିକ ଓଡ଼ିଆ ସାହିତ୍ୟର ଶୈଶବାବସ୍ଥାରେ ତାକୁ ବଞ୍ଚାଇ ରଖିପାରିଥିଲେ ସେମାନଙ୍କ ମଧ୍ୟରେ

ସେମାନଙ୍କ ମଧ୍ୟରେ 'ହିତୈଷିଣୀ' କେବଳ ଅଗ୍ରଗଣ୍ୟ ନୁହେଁ, ସର୍ବ ପ୍ରଧାନ ମଧ୍ୟ । ୧୮୯୨ ସାଲର ଆରମ୍ଭରୁ ୧୮୯୪ ସାଲ ଶେଷ ପର୍ଯ୍ୟନ୍ତ ଏହି ପତ୍ରିକାଟି ରାଧାନାଥଙ୍କୁ ରକ୍ଷା କରିବାକୁ ଯାଇ ଯଥାର୍ଥରେ ଆଧୁନିକ ଓଡ଼ିଆ ସାହିତ୍ୟକୁହିଁ ବଞ୍ଚାଇ ରଖିପାରିଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ 'ହିତୈଷିଣୀ'ର ଏ ଅବଦାନ ଚିରଦିନ ଜାଜ୍ୱଲ୍ୟମାନ ହୋଇ ରହିଥିବ, ଏଥିରେ ସନ୍ଦେହ ନାହିଁ ।"

୧୮୯୧ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ପୃଷ୍ଠପୋଷକତା ଲାଭକରି ବାରିପଦାରୁ 'ଉତ୍କଳ ପ୍ରଭା' ମାସିକ ପତ୍ରିକା ଓ ସମାଲୋଚନା ପ୍ରକାଶ ପାଇଥିଲା । ଏହାର ସମ୍ପାଦକ 'ଚୈତନ୍ୟ ପ୍ରସାଦ ଗୁପ୍ତ' । ପ୍ରଥମ ବର୍ଷର ଗୋଟିଏସଂଖ୍ୟାରେ ରାଧାନାଥଙ୍କ 'ଚିଲିକା' ପ୍ରକାଶ ପାଇଥିଲା । ଦ୍ୱିତୀୟ ବର୍ଷରେ 'ମହାଯାତ୍ରା' କ୍ରମଶଃ ପ୍ରକାଶ ପାଇଥିଲା । ମଧୁସୂଦନ ରାଓଙ୍କ 'ଋଷିପ୍ରାଣେ ଦେବାବତରଣ' ରାମ ଶଙ୍କର ରାୟଙ୍କ 'ବିବାସିନୀ', ଫକୀରମୋହନ ସେନାପତିଙ୍କ 'ଜନ୍ମଭୂମି', 'ପ୍ରାର୍ଥନା', 'ଯୋସେଫାଇନ୍', 'ଜୀବନ ନଦୀ', 'ନିଦାଘ ନିଶୀଥ ସ୍ୱପ୍ନ', 'ବିରସ ରଙ୍ଗିଣୀ' ଇତ୍ୟାଦି କବିତା, ଲାଲ ରାମନାରାୟଣଙ୍କ 'କବି ଉପେନ୍ଦ୍ର ଭଞ୍ଜ', 'ଭଞ୍ଜକାବ୍ୟ ସମାଲୋଚନା', ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ 'ମହାଭାରତର ଆଂଶିକ ଗଦ୍ୟାନୁବାଦ', ବିଶ୍ୱନାଥ କରଙ୍କ 'ମହାସ୍ତୋତ୍ର', 'ରାକ୍ଷସଲୀଳା', 'ସ୍ତ୍ରୀଶିକ୍ଷା', 'ସ୍ୱାଧୀନତା', 'ଅନନ୍ତ ପ୍ରେମ' ପ୍ରଭୃତି ଚନ୍ଦ୍ରମୋହନ ମହାରଣାଙ୍କ ଖଣ୍ଡିଗିରି କବିତା ଏବଂ ଗଙ୍ଗାଧର ମେହେର, ବିଜୟଚନ୍ଦ୍ର ମଜୁମଦାର, ଗଣପତି ଦାସ ପ୍ରଭୃତିଙ୍କ ଲେଖା ପ୍ରକାଶ ପାଇଥିଲା । ଏ ପତ୍ରିକାର ପ୍ରଥମ ସଂଖ୍ୟା ପ୍ରଥମ ପୃଷ୍ଠାରେ ଉଲ୍ଲେଖଥିବା ଉକ୍ତିକୁ ଉଦ୍ଧାର କରି ପ୍ରିୟରଂଜନ ସେନ୍ ଲେଖିଛନ୍ତି—The Oriyas have no such Literature, and so the Society of Utkal has no means of drogress. To supply this want, tne Utkal-Prabha has entered the field.

1892 ଖ୍ରୀଷ୍ଟାବ୍ଦରେ ମଧୁସୂଦନ ରାଓଙ୍କ ସମ୍ପାଦନାରେ ବ୍ରାହ୍ମ ନାମକ ବ୍ରାହ୍ମଧର୍ମ ପ୍ରଚାର ମୂଳକ ପତ୍ରିକା ପ୍ରକାଶ ପାଇଥିଲା । 1892 ସାଲ ଜୁଲାଇ ମାସରେ ଭକ୍ତିତତ୍ତ୍ୱ ପ୍ରକାଶ ପାଇଥିଲା । 1893 ସାଲ ଅଗଷ୍ଟ ୧୭ ତାରିଖ (ଗୁରୁବାର) କଟକରୁ ଇନ୍ଦ୍ରଧନୁ ଓ ୧୮୯୩ ସାଲ ସେପ୍ଟେମ୍ବର ୧୭ ତାରିଖ

(ଶନିବାର) ବାମଣ୍ଡାରୁ ବିଜୁଳି ପ୍ରକାଶ ପାଇଥିଲା । ବିଜୁଳିରେ ଗୋପାଳ ବଲ୍ଲଭ ଦାସଙ୍କ 'ତାରକା ସଂହାର' କାବ୍ୟ ରାମଶଙ୍କରଙ୍କ (ଅପୂର୍ଣ୍ଣ) ଉନ୍ମାଦିନୀ ଉପନ୍ୟାସ, ମଧୁସୂଦନଙ୍କ କେତେକ ଚତୁର୍ଦ୍ଦଶପଦୀ କବିତା ପ୍ରକାଶ ପାଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ଇନ୍ଦ୍ରଧନୁ ଓ ବିଜୁଳି'ର ସ୍ଥାନ ଅବିସ୍ମରଣୀୟ । ଭଂଜ-ରାଧାନାଥଙ୍କୁ କେନ୍ଦ୍ରକରି ସୃଷ୍ଟି ହୋଇଥିବା ସାହିତ୍ୟିକ ବିବାଦ ପରବର୍ତ୍ତୀ କାଳରେ ଆଲୋଚନାର ରାଜପଥ ପ୍ରସ୍ତୁତ କରିନେଇ-ଥିଲେ । 1894ଖ୍ରୀଷ୍ଟାବ୍ଦରେ କଟକ ନଗର ରାସ୍ତ ପ୍ରେସରୁ ମାସିକ ପତ୍ରିକା 'ଉତ୍କଳ ଚନ୍ଦ୍ରିକା' ପ୍ରକାଶ ପାଇଥିଲା । ଏହା ବ୍ରାହ୍ମଧର୍ମ ପ୍ରଚାର ମୂଳକ ପତ୍ରିକା । ଏହାର ସମ୍ପାଦକ ଡକ୍ଟର ରାମକୃଷ୍ଣ ସାହୁ । ୧୮୯୭ ମସିହା ଅଗଷ୍ଟ ମାସରେ କଟକ ରାସ୍ତ ପ୍ରେସରୁ ମାସିକ 'ଉତ୍କଳ ବନ୍ଧୁ' ପ୍ରକାଶ ପାଇଥିଲା । ଏହାର ସମ୍ପାଦକ ବ୍ରଜବନ୍ଧୁ ମିଶ୍ର । ୧୮୯୭ ମସିହାରେ କଟକ ମିସନ୍ ପ୍ରେସ୍‌ରୁ ଖ୍ରୀଷ୍ଟିୟାନ୍ ମାସିକ ପତ୍ରିକା 'ପ୍ରଭାତତାରା' ପ୍ରକାଶ ପାଇଥିଲା । ଏହା ଏକ ଖ୍ରୀଷ୍ଟ ଧର୍ମ ପ୍ରଚାର ମୂଳକ ପତ୍ରିକା । ୧୮୯୭ ମସିହାରେ ପାରଳାଖେମୁଣ୍ଡି ଗଜପତି ପ୍ରେସ୍‌ରୁ ଶ୍ୟାମସୁନ୍ଦର ରାଜଗୁରୁଙ୍କ ସମ୍ପାଦନାରେ ଗଂଜାମ-ନିଉଜ୍ (Ganjam News) ଇଂରାଜୀ ପତ୍ରିକା ପ୍ରକାଶ ପାଇଥିଲା ।

୧୮୯୭ ମସିହା ଜାନୁଆରୀ ମାସରେ ମାସିକ ସାହିତ୍ୟ ପତ୍ରିକା 'ଉତ୍କଳ ସାହିତ୍ୟ' ପ୍ରକାଶ ପାଇଥିଲା । ଶ୍ରୀନିବାସ ମିଶ୍ରଙ୍କ ଭାଷାରେ -"ଯୁଗାବସାନରେ ଊନବିଂଶ ଶତାବ୍ଦୀକୁ ଶୁଭବିଦାୟ ଓ ଆଗତ ପ୍ରାୟ ବିଂଶ ଶତାବ୍ଦୀକୁ ସମ୍ବର୍ଦ୍ଧନା ଜଣାଇ ତାହାର ଜୀବନର ନବଆଶା ଆକାଂକ୍ଷା ଓ ଆଦର୍ଶକୁ ବାଣୀମୂର୍ତ୍ତି ଦେବା ନିମନ୍ତେ 'ଉତ୍କଳ ସାହିତ୍ୟ' ପତ୍ରିକା ପ୍ରକାଶିତ ହୋଇଥିଲା । କଟକ ହିନ୍ଦୁ ବାଳିକା ବିଦ୍ୟାଳୟର ଶିକ୍ଷକ ଶ୍ରୀ କୃଷ୍ଣ-ପ୍ରସାଦ ଚୌଧୁରୀ ଏହାର କାର୍ଯ୍ୟାଧ୍ୟକ୍ଷ, ବିଶ୍ବନାଥ କର ଏହାର ସମ୍ପାଦକ ଥିଲେ ।" ଏହି ପତ୍ରିକାରେ ବିଶ୍ବନାଥ କର, ଚନ୍ଦ୍ରମୋହନ ମହାରଣା, ନନ୍ଦକିଶୋର ବଳ, ଦାମୋ-ଦର କର, କୃଷ୍ଣପ୍ରସାଦ ଚୌଧୁରୀ, ଶ୍ୟାମସୁନ୍ଦରନନ୍ଦ, ବୈତାଳି କର, ମୃତ୍ୟୁଞ୍ଜୟ ରଥ, ରାଜମୋହନ ବସୁ, ମଧୁସୂଦନ ଦାସ, ଶ୍ୟାମସୁନ୍ଦର ରାଜଗୁରୁ ପ୍ରମୁଖ ଲେଖା ପ୍ରକାଶ କରୁଥିଲେ । ପ୍ରିୟରଞ୍ଜନ ସେନ୍‌ଙ୍କ ମତରେ-'The Utkal sahitya has came forward in the hope of functioning in a representative capacity for both ancient and modern literature.'

୧୮୯୮ ମସିହା ଜୁନ୍ ମାସରେ 'ଓଡ଼ିଶା ଟାଇମସ୍' ପ୍ରକାଶ ପାଇଥିଲା । ୧୮୯୯ ମସିହା ଜୁନ୍ ମାସରେ ବ୍ରହ୍ମପୁରରୁ 'ଗଞ୍ଜାମ ଓ ଓଡ଼ିଆ ହିତବାଦିନୀ' ପ୍ରକାଶ ପାଇଥିଲା । ଏହି ପତ୍ରିକା ପ୍ରଥମେ ମାସିକ ଓ ପରବର୍ତ୍ତୀ କାଳରେ ସାପ୍ତାହିକ ହୋଇଥିଲା । ଏହାର ସମ୍ପାଦକ ପ୍ରଥମେ ରଙ୍ଗାଗ୍ରହ୍ଟ୍ଲ ଗୁନ୍ଧିପ୍ପା ଶାସ୍ତ୍ରୀ ଓ ପରେ ପଣ୍ଡିତ ଗଦାଧର ବିଦ୍ୟାଭୂଷଣ ଥିଲେ । ୧୯୦୦ ମସିହା ମାର୍ଚ୍ଚ ମାସରେ ବାମଣ୍ଡାର ରାଜଧାନୀ ଦେବଗଡ଼ରୁ 'ଆଲୋଚନା' ପତ୍ରିକା ପ୍ରକାଶ ପାଇଥିଲା । ଏହାର ସମ୍ପାଦକ ଥିଲେ ଜଳନ୍ଧର ଦେବ ।

ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତିଷ୍ଠା ଲାଭକରି ସାରିଥିଲା । ଉତ୍କଳ ସାହିତ୍ୟ ପତ୍ରିକାର କାର୍ଯ୍ୟାଧ୍ୟକ୍ଷ 'କୃଷ୍ଣ ପ୍ରସାଦ ଚୌଧୁରୀ' ଓଡ଼ିଆ ଭାଷାପ୍ରତି ଦୃଷ୍ଟିପାତକରି ଲେଖିଥିଲେ—"++ଭାଷାତତ୍ତ୍ୱ କ୍ଷେତ୍ରରେ ଓ ରାଜଦ୍ୱାରରେ ବର୍ତ୍ତମାନ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସୁପ୍ରତିଷ୍ଠିତ । ପୁଣି ସକଳ ବିଷୟ ବିବେଚନାକରି ଦେଖିଲେ ଏହାମଧ୍ୟ ପ୍ରତିପନ୍ନ ହେବଯେ ଗତ ତିରିଶି ବର୍ଷ ମଧ୍ୟରେ ଅନ୍ୟାନ୍ୟ ପ୍ରାଦେଶିକ ଭାଷା ତୁଳନାରେ ଓଡ଼ିଆ ଭାଷାର ଉନ୍ନତିର ଗତି ନିତାନ୍ତ ହେୟନୁହେଁ । ବଙ୍ଗଳାର ମାଇକେଲ, ଈଶ୍ୱରଚନ୍ଦ୍ର, ଅକ୍ଷୟ କୁମାର, ହେମଚନ୍ଦ୍ର, ବଙ୍କିମଚନ୍ଦ୍ର, ରବିନ୍ଦ୍ର ନାଥ ପ୍ରଭୃତି ସାହିତ୍ୟରଥୀ ମାନଙ୍କର ପୂର୍ଣ୍ଣାବତାର ଉତ୍କଳ ସାହିତ୍ୟ କ୍ଷେତ୍ରରେ ଭୂମିଷ୍ଠ ହୋଇ ନଥିଲେ ସୁଦ୍ଧା ରାଧାନାଥ, ମଧୁସୂଦନ, ଫକୀର ମୋହନ, ରାମଶଙ୍କର, ପ୍ୟାରୀ ମୋହନ ପ୍ରଭୃତି ସାହିତ୍ୟ ସେବକ ମାନଙ୍କର ଆସନ ଉତ୍କଳ ସାହିତ୍ୟର କୌଣସି କ୍ଷେତ୍ରରେ ଅଳ୍ପ ସମ୍ମାନଜ ନୁହେଁ ।"

ବିଂଶ ଶତାବ୍ଦୀର ଆଧୁନିକ ଓଡ଼ିଆ ସାହିତ୍ୟର କ୍ରମବିକାଶରେ ଉତ୍କଳ ସାହିତ୍ୟ ମୁକୁର, ସତ୍ୟବାଦୀ, ସହକାର, ସମାଜ, ଯୁଗବାଣୀ, ନବଭାରତ, ଡଗର, ଜହ୍ନମାମୁଁ, ଆଧୁନିକ, ଝଙ୍କାର, ନବଜୀବନ, ଆସନ୍ତାକାଲି, ପ୍ରଜାତନ୍ତ୍ର, ମାତୃଭୂମି, ନବରବି, କୋଣାର୍କ, ସପ୍ତର୍ଷି ପ୍ରଭୃତି ପତ୍ରିକାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସମାଜ ଗଠନର ଦାୟିତ୍ୱ ପତ୍ର ପତ୍ରିକା ଉପରେ କେତେକାଂଶରେ ନିର୍ଭରଶୀଳ । ଧର୍ମ ସଂସ୍କାର, ପ୍ରାଚୀନ ସାହିତ୍ୟର ପୁନରୁଦ୍ଧାର, ଆଧୁନିକ ସାହିତ୍ୟର ଭୂମ୍ୟୋବିକାଶ, ଆଧୁନିକ ଉପନ୍ୟାସ, ନାଟକ, ଗଳ୍ପ, କବିତା ଓ ସମାଲୋଚନାର ଆରମ୍ଭ ଓ ବିକାଶ ପତ୍ରିକା ସାହିତ୍ୟ ମାଧ୍ୟମରେ ଗତିଶୀଳ । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସରେ ଓଡ଼ିଆ ପତ୍ର ପତ୍ରିକାର ଅବଦାନ ଅବିସ୍ମରଣୀୟ ।



# ମୋ କଥା............

ଓଡ଼ିଆ ଜାତିର ଗର୍ବ ଗୌରବ, ସାହିତ୍ୟ ସଂସ୍କୃତିର ପ୍ରାଣ ପ୍ରତିଷ୍ଠାତା ଜଗତ୍‌ପତି ଜଗନ୍ନାଥଙ୍କ ଚରଣକମଳରେ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଅର୍ପଣ କରିବା ସଙ୍ଗେ ସଙ୍ଗେ ଆମ ବିଭାଗର ଏକ ସଂକ୍ଷିପ୍ତ ବିବରଣ ପ୍ରଦାନ କରୁଛି ।

ଓଡ଼ିଆ ଭାଷା ଓ ସାହିତ୍ୟର ସର୍ବାଙ୍ଗୀଣର ଉନ୍ନତି ସାଧନର ଲକ୍ଷ୍ୟ ନେଇ ଏ ବିଭାଗ ଜନ୍ମ ନିଏ ୧୯୬୯ ଜୁଲାଇ ମାସରେ । ଅଧ୍ୟୟନ, ଅଧ୍ୟାପନା, ଗବେଷଣା, ଅନ୍ୱେଷଣ ମଧ୍ୟରେ ଗତି କରି ଆଜି ଏହା ଦଶମ ବର୍ଷୀୟ କଳମୁଖର କିଶୋରଟିଏ । ପଶ୍ଚାତରେ ଧୂଳିମ୍ଳାନ ଅତୀତ ଆଉ ସମ୍ମୁଖରେ ଆଶା ଆକାଂକ୍ଷାର ଭବିଷ୍ୟତ । ଏହାର ମଧ୍ୟରେ ଛଳ ଛଳ କୈଶୋର ତା'ର ଗତିମୁଖର ।

ବର୍ତ୍ତମାନ ଏହାର ଛାତ୍ରଛାତ୍ରୀ ସଂଖ୍ୟା (ଦୁଇଶ୍ରେଣୀ)-୧୬୮ । ବିଭାଗୀୟ ମୁଖ୍ୟ ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର କୃଷ୍ଣଚରଣ ସାହୁ, ଡକ୍ଟର ବାସୁଦେବ ସାହୁ, ଡକ୍ଟର ଆଶୁତୋଷ ପଟ୍ଟନାୟକ, ଡକ୍ଟର ନିତ୍ୟାନନ୍ଦ ଶତପଥୀ, ଅଧ୍ୟାପକ ବୈଷ୍ଣବଚରଣ ସାମଲ ଓ ସାହିତ୍ୟାଚାର୍ଯ୍ୟ ଶଙ୍କର ମୋହନ ଦାସ, ଏହାର ଅଧ୍ୟାପନା ଦାୟିତ୍ୱରେ ଅଛନ୍ତି ।

ଅଧ୍ୟୟନ, ଅଧ୍ୟାପନା, ଗବେଷଣା ବ୍ୟତୀତ ସଂକଳନ ଓ ସଂରକ୍ଷଣ (ପୋଥି, ତାମ୍ରପତ୍ର, ଶିଳାଲେଖ), ଶୁଦ୍ଧ ସଂସ୍କରଣ ଓ ସମ୍ପାଦନା (ପୋଥି), ସଂଗ୍ରହ (ଲୋକ ପ୍ରଚଳିତ ସାହିତ୍ୟିକ ଓ ଐତିହାସିକ ଉପାଦାନ), ଅନୁବାଦ (ଅଣ ଓଡ଼ିଆ କ୍ଲାସିକ୍ ଗ୍ରନ୍ଥ) ଆଦି ଦ୍ୱାରା ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ସାଧନ ଏହାର ଲକ୍ଷ୍ୟ ।

ପାଠଚକ୍ର ମାଧ୍ୟମରେ ସୃଷ୍ଟିଶୀଳ ପ୍ରତିଭାକୁ ପ୍ରୋତ୍ସାହିତ କରିବା ଏହାର ଅନ୍ୟତମ ଲକ୍ଷ୍ୟ । ଚଳିତ ବର୍ଷର ପାଠଚକ୍ର କାର୍ଯ୍ୟକାରୀ ସମିତି ନିମ୍ନ ପ୍ରକାରରେ ଗଠିତ ହୋଇଛି—

ସମ୍ପାଦକ-ଶ୍ରୀ ଅଜୟ କୁମାର ମିଶ୍ର, ସହ-ସମ୍ପାଦକ-ଶ୍ରୀ ରଜନୀ ରଂଜନ ଦାସ, ପୁସ୍ତକ ରକ୍ଷୀ-ଶ୍ରୀ ମଳୟ କୁମାର ଦାଶ, ସହ ପୁସ୍ତକ ରକ୍ଷୀ-ଶ୍ରୀ ନିରଂଜନ ଗୋଚ୍ଛାୟତ, ସାଂସ୍କୃତିକ ସମ୍ପାଦିକା-କୁମାରୀ ସବିତା ସାମନ୍ତରାୟ; ସହ ସାଂସ୍କୃତିକ ସମ୍ପାଦକ-

ଶ୍ରୀ ଧ୍ରୁବଚରଣ ସେଠୀ । ପାଠଚକ୍ର ସଭାପତି ଡକ୍ଟର ବଂଶୀଧର ମହାନ୍ତି ଓ ଉପ ସଭାପତି ତଥା ଉପଦେଷ୍ଟା ଡ଼କ୍ଟର କୃଷ୍ଣଚରଣ ସାହୁଙ୍କ ତତ୍ତ୍ୱାବଧାନରେ ପାଠଚକ୍ରର ସମସ୍ତ କାର୍ଯ୍ୟାବଳୀ ସୁଚାରୁରୂପେ ପରିଚାଳିତ ହୋଇଯାଇଛି ।

ଚଳିତ ବର୍ଷର ବିଭିନ୍ନ ପାଠଚକ୍ର ଆଲୋଚନାରେ ଔପନ୍ୟାସିକ ଗୋପୀନାଥ ମହାନ୍ତି, ପ୍ରାଧ୍ୟାପକ ଚନ୍ଦ୍ରଶେଖର ରଥ, ଡକ୍ଟର ଦେବେନ୍ଦ୍ର ମହାନ୍ତି, ପ୍ରଫେସର ପ୍ରହ୍ଲାଦ ପ୍ରଧାନ, ଡକ୍ଟର କୃଷ୍ଣପ୍ରସାଦ ମିଶ୍ର, ପ୍ରାଧ୍ୟାପକ ଯତୀନ୍ଦ୍ରମୋହନ ମହାନ୍ତି ପ୍ରମୁଖ ବିଶିଷ୍ଟ ସାହିତ୍ୟିକମାନେ ଯୋଗଦାନ କରି ସେମାନଙ୍କର ଚିନ୍ତାଶୀଳ ମନ୍ତବ୍ୟ ପ୍ରଦାନ କରିଥିଲେ । ପାଠଚକ୍ର ଆନୁକୂଲ୍ୟରେ ଚଳିତ ବର୍ଷ ଗଳ୍ପ, କବିତା, ପ୍ରବନ୍ଧ, ବକ୍ତୃତା ଓ ସଙ୍ଗୀତ ପ୍ରତିଯୋଗିତା ଆୟୋଜିତ ହୋଇ କୃତୀ ଛାତ୍ର ଛାତ୍ରୀମାନଙ୍କୁ ପୁରସ୍କାର ପ୍ରଦାନ କରାଯାଇଛି ।

ପ୍ରାଚୀରପତ୍ର "ବାଣୀଲିପି"ର ଉଦ୍ଦେଶ୍ୟ ଛାତ୍ରଛାତ୍ରୀଙ୍କ ପ୍ରଚ୍ଛନ୍ନ ପ୍ରତିଭାର ବିକଚ ବିକାଶ ସାଧନ । ମାତ୍ର ଆମର ସାଂସ୍କୃତିକ ସମ୍ପାଦିକା ଯେପରି ଭାବେ ଏହାକୁ ନିଜର ସମ୍ପତ୍ତି ଭ୍ରମରେ ବ୍ୟକ୍ତିଗତ କୁତ୍ସାର ମୁଖପତ୍ର ମନେ କରିଛନ୍ତି ତାହା ଅତ୍ୟନ୍ତ ପରିତାପର ବିଷୟ । ସମ୍ଭବତଃ ଏହାରି ମାଧ୍ୟମରେ ଭବିଷ୍ୟତରେ ଅଚ୍ୟୁତାନନ୍ଦ ଦାସ ('ଦୁର୍ମୁଖ' ସମ୍ପାଦକ) ଙ୍କର ପ୍ରସିଦ୍ଧି ଅର୍ଜନ କରିବାର ସ୍ୱପ୍ନ ସେ ଦେଖିଲେଣି କିନ୍ତୁ ସତରେ କ'ଣ "ଗ୍ରାମ ଶୃଗାଳ କି ହୋଇବ ସିଂହ ???" ପାଠଚକ୍ର ପାଠାଗାର ଦୁର୍ଦ୍ଦଶା ମଧ୍ୟ ତତୋଽଧିକ । ସଦାସର୍ବଦା ପାଠାଗାରର ରୁଦ୍ଧ ପ୍ରକୋଷ୍ଠ ମଧ୍ୟରେ ପୁସ୍ତକରକ୍ଷୀ ମହାଶୟ "ସବୁଜ ସ୍ୱପ୍ନ"ରେ ହୋଇଛନ୍ତି ମସ୍‌ଗୁଲ । ଚଳିତ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଦୁଇ ହଜାର ରୁ ଅଧିକ ପୁସ୍ତକ ଆମ ପାଠାଗାର ପାଇଁ ଯୋଗାଇ ଦେଇଥିଲେ ମଧ୍ୟ ପୂର୍ବାପର ଅଧିକାଂଶ ମୂଲ୍ୟବାନ ପୁସ୍ତକ ଅଦୃଶ୍ୟ-ଗୃହ-ପର୍ଯ୍ୟଟନ-ଅଭିଯାନ ଆରମ୍ଭ କରି ଦେଇଥିଲେ । ସମ୍ଭବତଃ ଏ ପର୍ଯ୍ୟନ୍ତ ସେମାନଙ୍କର ପ୍ରତ୍ୟାବର୍ତ୍ତନ ହୋଇନାହିଁ ବା ପ୍ରତ୍ୟାବର୍ତ୍ତନର ଆଶା ମଧ୍ୟ ନାହିଁ । ପରବର୍ତ୍ତୀ ଛାତ୍ର ଛାତ୍ରୀ ତଥା ପୁସ୍ତକରକ୍ଷୀ ଏ ବିଷୟରେ ସଚେତନ ହେବା ଉଚିତ୍ ।

ଚଳିତବର୍ଷ ଡକ୍ଟର ଆଶୁତୋଷ ପଟ୍ଟନାୟକଙ୍କ ଅଧକ୍ଷତାରେ କପିଳାସ ବଣଭୋଜି ଏକ ସ୍ମରଣୀୟ ସ୍ମୃତି । ପୁରାଣ ପ୍ରସିଦ୍ଧ ଶୈବପୀଠ କପିଳାସରେ କ୍ଷୁଧିତ ଅପରାହ୍ଣକୁ ସମ୍ବଳ କରି ପର୍ବତ ଆରୋହଣରେ ଛାତ୍ରବନ୍ଧୁମାନେ ବିଶେଷ କରି ଛାତ୍ରୀ-ବନ୍ଧୁମାନେ ଯଥେଷ୍ଟ ପଟୁତା ପ୍ରଦର୍ଶନ କରି ବହୁ ଧୈର୍ଯ୍ୟସହ ପ୍ରତ୍ୟାବର୍ତ୍ତନ ପରେ ଯେଉଁ ମୃଦୁମଧୁର ଭର୍ତ୍ସନା ଶୁଣାଇଥିଲେ ତାହା କପିଳାସ ଯାତ୍ରାର ଶୀର୍ଷତମ ସାଫଲ୍ୟ ବହନ କରିଥିଲା ।

ବିଭାଗୀୟ ସାଫଲ୍ୟ— ଓଡ଼ିଆ ସାହିତ୍ୟର ଉନ୍ନତି ସାଧନରେ ଚାରିଗୋଟି ସୃଜନଶୀଳ ପତ୍ରିକା—"ଶ୍ରୀ ଜଗନ୍ନାଥ" "ତ୍ରିଜ୍ଞା" "ଅଭିମନ୍ୟୁ ସ୍ମରଣୀକା" "ଇସ୍ତାହାର" ଯଥାକ୍ରମେ ଡକ୍ଟର ବଂଶୀଧର ମହାନ୍ତି, ଡକ୍ଟର କୃଷ୍ଣଚରଣ ସାହୁ, ଡକ୍ଟର ଅଶ୍ୱିନୀକୁମାର ପଟ୍ଟନାୟକ, ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସଂପାଦନାରେ ପ୍ରକାଶ ପାଉଛି ।

ଏ ପର୍ଯ୍ୟନ୍ତ କେବଳ ଗୋଟିଏ ବର୍ଷ ବ୍ୟତୀତ ଅନ୍ୟ ସବୁ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ଆସିଛି । ଏତଦ୍‌ବ୍ୟତୀତ ସମସ୍ତ ପ୍ରାଧ୍ୟାପକଙ୍କ ଅଧୀନରେ ପୂର୍ଣ୍ଣସଂଖ୍ୟାରେ ଗବେଷକ ଗବେଷଣା କାର୍ଯ୍ୟ କରି ଆସୁଛନ୍ତି ।

ଛାତ୍ରଛାତ୍ରୀଙ୍କ କୃତିତ୍ୱ—ଶ୍ରୀ ଭୁବନାନନ୍ଦ ସାହୁ, ଉତ୍କଳ ସମିତି ପ୍ରବନ୍ଧ ପ୍ରତିଯୋଗିତା ୧୯୭୮-୭୯, ୧୯୭୯-୮୦ ମସିହାର ପ୍ରଥମ ପୁରସ୍କାର ବିଜେତା । ଶ୍ରୀ ସୁନାମଣି ରାଉତ "ଅର୍ଦ୍ଧେନ୍ଦୁ ବଲ୍ଲଭ ମହାନ୍ତି ସ୍ମାରକୀ" ପ୍ରତିଯୋଗୀତା, ଆନ୍ତଃ ମହାବିଦ୍ୟାଳୟ "ଗିରିଜାଶଙ୍କର ସ୍ମାରକୀ" ପ୍ରବନ୍ଧ ପ୍ରତିଯୋଗୀତା, "ମହତାବ୍ ଜୟନ୍ତୀ କମିଟି" ଆୟୋଜିତ ପ୍ରବନ୍ଧ ପ୍ରତିଯୋଗୀତା ଓ ଆନ୍ତଃ ଛାତ୍ରାବାସ (ବାଣୀ-ବିହାର) କବିତା ପ୍ରତିଯୋଗୀତାରେ ପ୍ରଥମ ସ୍ଥାନ ଲାଭ କରିଛନ୍ତି । ଶ୍ରୀ ରାଉତ ଚଳିତ ବର୍ଷ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ ଆନୁକୂଲ୍ୟରେ ବ୍ରହ୍ମପୁରଠାରେ ଆୟୋଜିତ ନିଖିଳ ଉତ୍କଳ ଶିଶୁ ଲେଖକ ସମ୍ମିଳନୀରେ ପ୍ରତିନିଧିତ୍ୱ କରିଛନ୍ତି । କୁମାରୀ ଚିନ୍ମୟୀ ମହାପାତ୍ର ପ୍ରଥମ ଛାତ୍ରୀ ନିବାସର ପତ୍ରିକା ସଂପାଦିକା ତଥା ସାରସ୍ୱତ ପ୍ରତିଯୋଗୀତାରେ "ଶ୍ରେଷ୍ଠ ସାହିତ୍ୟିକା" । ସେ ମଧ୍ୟ ଆନ୍ତଃ ଛାତ୍ରାବାସ କବିତା ପ୍ରତିଯୋଗୀତାରେ ଦ୍ୱିତୀୟ ସ୍ଥାନ ଲାଭ କରିଛନ୍ତି । କୁମାରୀ ରୁକ୍ମିଣୀ ସାହୁ ଗତବର୍ଷର ଶ୍ରେଷ୍ଠ ଅଭିନେତ୍ରୀ ଏବଂ ଚଳିତ ବର୍ଷର ଦ୍ୱିତୀୟ ଛାତ୍ରୀନିବାସର "ଶ୍ରେଷ୍ଠ ସାହିତ୍ୟିକା" । ଶ୍ରୀ କୃଷ୍ଣଚନ୍ଦ୍ର ଷଡ଼ଙ୍ଗୀ "ଅର୍ଦ୍ଧେନ୍ଦୁ ବଲ୍ଲଭ ମହାନ୍ତି ସ୍ମାରକୀ" ପ୍ରତିଯୋଗୀତା ଓ "ନୀଳଶୈଳ" ଆନୁକୂଲ୍ୟରେ ଆୟୋଜିତ, ଗଳ୍ପ, କବିତା ପ୍ରବନ୍ଧ ପ୍ରତିଯୋଗୀତା (ପ୍ରତ୍ୟେକ) ର ପ୍ରଥମ ପୁରସ୍କାର ବିଜେତା । କୁମାରୀ ସବିତା ମହାନ୍ତି "ପଦ୍ମଚରଣ ସ୍ମୃତି" କବିତା ପ୍ରତିଯୋଗୀତାର ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି ।

ଚଳିତ ବର୍ଷ ଉତ୍କଳ ବିଶ୍ୱବିଦ୍ୟାଳୟର ଆନ୍ତଃ ବିଭାଗ ଏକାଙ୍କ ନାଟକ ପ୍ରତି-ଯୋଗୀତାରେ ଆମ ବିଭାଗ ତୃତୀୟ ସ୍ଥାନ ଅଧିକାର କରିଛି । ସର୍ବୋପରି ଆମ ବିଭାଗ ପାଇଁ ଏକ ସୌଭାଗ୍ୟ ଏହି ଯେ ଦୀର୍ଘ ପାଞ୍ଚ/ଛଅ ବର୍ଷ ପରେ ପୁନର୍ବାର ପାଠଚକ୍ର

ପ୍ରବନ୍ଧାବଳୀ ଆତ୍ମପ୍ରକାଶ ଲାଭ କରିବାର ସୁଯୋଗ ପାଇ ପାରିଛୁ । ସେଥିପାଇଁ ସମସ୍ତ ଛାତ୍ରଛାତ୍ରୀଙ୍କ ତରଫରୁ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଶାସନିକ ଅଫିସର, ବିଭାଗୀୟ ମୁଖ୍ୟ ଡକ୍ଟର ବଂଶୀଧର ମହାନ୍ତି ଉପଦେଷ୍ଟା ଡକ୍ଟର କୃଷ୍ଣଚରଣ ସାହୁ ଏବଂ ପୂଜ୍ୟ ସଂପାଦକ ମଣ୍ଡଳୀ ନିକଟରେ ମୋର କୃତଜ୍ଞତା ଜ୍ଞାପନ କରୁଛୁ । ପତ୍ରିକା ପ୍ରକାଶନରେ ମୋର ବନ୍ଧୁମାନଙ୍କ ସାହାଯ୍ୟ ମଧ୍ୟ ଅବିସ୍ମରଣୀୟ । ବହୁ ବାଧାବିଘ୍ନ ବଶତଃ ପତ୍ରିକାଟି ସଂପୂର୍ଣ୍ଣ ଦୋଷରହିତ ହେବା ସମ୍ଭବ ହୋଇ ପାରିନାହିଁ । ସେ ପାଇଁ ମୁଁ ଆପଣମାନଙ୍କ-ଠାରୁ କ୍ଷମା ମାଗି ନେଉଛୁ ।

ସଂସାର ରୂପକ ରଙ୍ଗମଞ୍ଚରେ ଆମେ ଜଣେ ଜଣେ ଅଭିନେତା । ଅଭିନୟ ପାଇଁ ରଙ୍ଗମଞ୍ଚରେ ପ୍ରବେଶ ଯେପରି ଅପରିହାର୍ଯ୍ୟ ଅଭିନୟ ପରେ ପ୍ରସ୍ଥାନ ମଧ୍ୟ ସେହିପରି ଅନିବାର୍ଯ୍ୟ । ମାତ୍ର ପ୍ରବେଶ—ପ୍ରସ୍ଥାନର ମଧ୍ୟବର୍ତ୍ତୀ ସମୟରେ ଆମେ ଯଦି ରଙ୍ଗମଞ୍ଚର ବାହାର ଓ ଭିତର ମଧ୍ୟରେ ଯୋଗସୂତ୍ର ରକ୍ଷା ନ କରି ପାରୁ...........ତାହାହେଲେ ............ ? ? ଏ ଅଭିନୟ କ'ଣ ବାସ୍ତବ ନା ଛଳନା......... ? ? ?

ଅଜୟ କୁମାର ମିଶ୍ର
ପରିଚାଳନା ସଂପାଦକ

*—*